# ହିଡ଼ମାଟି

ଲେଖକ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

କଲ୍ୟାଣୀୟାସୁ···

ବୀଣା,

ଆଜି ତୋ ପାଳି। ତୋ ବାହାଘରକୁ ମୁଁ ସେଇ ଦୁଇଧାଡ଼ି କବିତା ଲେଖି ପଠାଇଥିଲି। ତୁ ଲେଖିଥିବୁ କବିଙ୍କର କବିତା ଭଲ ଶସ୍ତା କାଗଜରେ ଖାଲି ଠକି ଦେଲେ। ତୁ କଣ ବୁଝିବୁ କବିତା ଧାଡ଼ିଏ ଭିତରେ କେତେ ଅନ୍ତରଙ୍ଗତା ଥାଏ—ମୋର ଡର ହେଉଥିଲା ସେଦିନ।

କିନ୍ତୁ ବର୍ଷକର ପରେ ତୋର ପହିଲି ଚିଠି ଖଣ୍ଡ ସେ ଡର ମୋର ଭାଙ୍ଗି ଦେଇଛି। ତୁ ତାର ମୂଲ ବୁଝିଥିବୁ—ଆଉ ଏ ଉପନ୍ୟାସ ତୋତେ ଦେବାବେଳେ ସେଇ ଭରସା ମୁଁ ରଖିଛି।

ତୁ ଲେଖିଥିଲୁ, ତୋ ଶାଶୁଘରେ ପାଠୋଇ ବୋହୂଙ୍କ ସମ୍ବନ୍ଧରେ ଯେଉଁ ଧାରଣା ତୋର ଆଚରଣରେ ସେ ଧାରଣା ଭାଙ୍ଗି ଯାଉଛି। ତା ପରେ ପରେ ମୁଁ ଯେତେବେଳେ ଦେଖିଲି, ତୁ ପାଠପଢ଼ି ମଧ୍ୟ ଗୋଟିଏ ଚମତ୍କାର ମଧ୍ୟବିତ୍ତ ଗୃହିଣୀ—ରାନ୍ଧିବା ବାଢ଼ିବା ଅଧ ଘରର ସବୁ ଝଞ୍ଜଟ ବହାଇବାରେ ତୋର ନିପୁଣତା ମୋତେ ଆନନ୍ଦ ଦେଲା। ଏ ବହିଟି ତେଣୁ ତୋର ପାଇବା କଥା। ନୁହେଁ ?

କାହିଁକି ଜାଣୁ। ସେ ବଡ଼ କରୁଣ କଥା। ମୋ ଜୀବନକୁ ମୁଁ ଗଢ଼ିଛି—ଗଢ଼ୁଛି—ଯେଉଁ ଟିକିଏ ସାମାନ୍ୟ ଅଭିଜ୍ଞତା ମୋ

ଶେଷକୁ ମୋ ଦେହରେ ମାଖି ହୋଇ ଯାଇଛୁ ତାକୁ ଧୋଇ ଗୋଟିଏ ନିହାତି ନୂଆ ରୂବା ଗରବ ମଲ ମୂର୍ତ୍ତିଅ ଆକାର ଦେବାକୁ । ଏ ଯୁଦ୍ଧରେ ମୁଁ ଯେ କଣ ହରେଇଛି ଆଜି ସେ କଥା କହିଲେ ଛାତି ଫାଟି ପଡ଼ିବ । ନାକରୁ ରକ୍ତ ଝରି ପଡ଼ିବ ।

ତୁ କହୁଥିଲୁ ଜିଦ୍ ଥିଲା—ପାଠ ପଢ଼ା ତୋ ବଂଶର ଆଭିଜାତ୍ୟ । ତୁ ଯେଉଁଠି ଜନ୍ମ ହେଲୁ ସେଠାର ଆଭିଜାତ୍ୟ ମଧ୍ୟ ତୋର ବାପ ଘରର ଅନୁରୂପ । କିନ୍ତୁ ତୋର ଶକ୍ତି ଅଛି ତୁ ସବୁ ଅବସ୍ଥାରେ ଆପଣାକୁ ସୁଖୀ କରିପାରୁ । ମୋର ଈର୍ଷା ହେଉଛି ତୋ ପ୍ରତି । କାରଣ ସେଥିପାଇଁ ମୋତେ ଯୁଦ୍ଧ କରିବାକୁ ପଡ଼ୁଛି ।

ସେଇ ଯୁଦ୍ଧରେ 'ମୁଁ କଣ ହରାଇଲି ଜାଣିଛୁ' କାହିଁକୁ ନାହିଁ ତ ? ହରେଇଛି ଅନେକ—ଆଉ ପାଇଛି ଯାହା—ଉଃ—ସେ ତ କହିବାର ନୁହେଁ ।

ଏହି ଶିକ୍ଷିତ ଅଭିଜାତ ଗୋଷ୍ଠୀ କେବଳ ଗରିବ ଅଶିକ୍ଷିତଙ୍କ ଦ୍ୱାରା ଶୋଷଣ କରନ୍ତି ନାହିଁ—ସେମାନେ ତାଙ୍କୁ ପ୍ରତି ବଦଳରେ ଯାହା ଦିଅନ୍ତି ସେ ଅତ୍ୟନ୍ତ ନିର୍ମମ ।

ଦିନ ଆସିବ—ଏହାର ପ୍ରତିକ୍ରିୟା ହେବ । ନିଶ୍ଚୟ ହେବ । ହୁଏତ ଶିକ୍ଷିତ ଶୋଷକ ଓ ଅଶିକ୍ଷିତ ଉତ୍ପାଦକଙ୍କ ଭିତରେ ଏକ ସଂଘର୍ଷ ହୋଇ ପାରେ । ସେ ସଂଘର୍ଷର ଆଭାସ ମାତ୍ର ଦେଇଛି ଏ ଉପନ୍ୟାସରେ ।

ତୋ ଭଳି ପାଠୋଇ ଝିଅ ଯଦି ଏଇ ଗରିବଙ୍କ ଶ୍ରେଣୀକୁ ଖସି ଆସି, ଆଳସ୍ୟକୁ ମହତ୍ତ୍ୱ ଦେବା ବଦଳରେ ଶ୍ରମକୁହିଁ ସମ୍ମାନ ମନେ ନ କରନ୍ତି ତେବେ ଭବିଷ୍ୟତ ସମାଜ ଯେ କେତେ କଦାକାର ହେବ ତାର କଳ୍ପନା ମୁଁ କରିପାରୁ ନାହିଁ ।

ସେ ଅବସ୍ଥା ଭଗବାନ କରନ୍ତୁ—ନ ଅସୁ । ସେଥିପାଇଁ ମୋର ସଂଗ୍ରାମ—ଖାଲି କଲମରେ ନୁହେଁ—କଳ୍ପନାରେ ନୁହେଁ—ଦେହରେ—ଢ଼ାମରେ ମଧ୍ୟ ।

ଏ ଯୁଦ୍ଧରେ ମୁଁ କେତେ ଲୋକଙ୍କର ସ୍ନେହ ହରେଇଛି—କେତେ ଭାଇ ଭଉଣୀ ମା ମାଉସୀଙ୍କର ମମତା ହରେଇଛି—ସମାଜରେ ସମ୍ମାନ ହରାଇଛି—ରାଜନୀତିରେ ମର୍ଯ୍ୟାଦା ହରାଇଛି—କଳା ଓ ସାହିତ୍ୟର ଛାଇ ନ ହରାଇଲେ ମଧ୍ୟ ଶିଥିଳ ହେଇ ଆସୁଛି—ମନର ଶାନ୍ତି ହରାଇଛି—ସର୍ବଶେଷ ନ ହେଲେ ମଧ୍ୟ ସବୁଠାରୁ ଅତି ମର୍ମନ୍ତୁଦ ହେଇଛି—ମୋ ର ସ୍ୱାସ୍ଥ୍ୟ ହାନି । ବୋଧ-ହୁଏ ପରମାୟୁ ମଧ୍ୟ କମିଯାଇଛି । ସମସ୍ତେ ଚିତ୍କାର କରି କହୁଛନ୍ତି—ଗରିବର—ଶ୍ରମଜୀବୀର ସ୍ଥାନ ନାହିଁ ସଂସାରରେ ।

ସବୁକୁ ହରାଇ ମୁଁ ପାଇଛି ଉଗ୍ର ବାପ ଓ ଚିର ଦୁଃଖିନୀ ବାପ ମାଙ୍କର ଆଖିର ଲୁହ—ତମ ସମସ୍ତଙ୍କର ଅବମାନନା ଗରିବ ବୋଲି ।

ଅଭ ନଗାଟା ଏ କଥା କହି ପାରିବ ନାହିଁ । କାରଣ ସମାଜ ତାକୁ ଭଲ ଆଖିରେ ନ ଦେଖି ପାରେ । ତଥାପି କହୁଦେବ ବୋଲି ଲୋଭ ହେଉଛି । ଦୁନିଆ ଜାଣୁ—ଗରିବ ହେବାର ପାପ ମଣିଷକୁ କେଉଁ ରସାତଳକୁ ନିଏ—ଅଃ— !

ଯିଏ ଧନେ ମୋତେ ଏଇ ନିଃସଙ୍ଗ ଜୀବନର କୋମଳତା ନେଇ ହାତ ଧରି ଚାଲିବାକୁ ଉତ୍ସାହ କରିଥିଲା—ସେ ମୋତେ ଦେଇ ପାଇଛି ଚିର ଦିନ ମନେ ପକାଇବାକୁ—ଗୋଟାଏ ଅଣ-ନଶ୍ୱର ବିଶ୍ୱାସଘାତକତା । ସେ ବିଶ୍ୱାସରେ କିଛି ଦେଇ ନାହିଁ—ଦେଇଛି ତାର ବଡ଼ଲୋକୀ—ଅଭିଜାତ୍ୟ । ଆମର ଦାରିଦ୍ର୍ୟତାକୁ ହାତ ପାତି ନେଇଛି ।

ଗରବ ବଡ଼ଲୋକର ମେଳ ଅସମ୍ଭବ—ଅସମ୍ଭବ ସିଣା ।
ମୁଁ ସ୍ନେହ ଦେଇ ମମତ ଦେଇ ବଡଲୋକଙ୍କୁ ମୋ ସ୍ତରକୁ ଖସାଇ ପାରିନାହିଁ । ପାରୁନାହିଁ । ତଥାପି ବେଳେ ବେଳେ ଆଶା ହେଉଛି । ସେ ଆଶା ଯେମିତି ମରଣର ଅନ୍ଧାର ଭିତରେ ଯାଇ ମୋତେ ଭରସା ଦେଉଛି—ମୋର ସାଥି ହେବ ବୋଲି । ସତେ କଣ ହେବ ?

ମହଗଲେ କେତେ କଥା ଛୁଉଁ ଯାନ୍ତା । ଗରବ ଗୁଣ୍ଡାଙ୍କ ମଧ୍ୟ କେତେ ବଡ଼ ବଡ଼ ରହିଯାନ୍ତେ । କିନ୍ତୁ ତା କଣ ହୁଏ । ଗରବ ଅଛନ୍ତି ବୋଲି ବଡ଼ଲୋକ ଅଛନ୍ତି ।

ସେ ଗରବ ନିଃସ୍ୱ ବୋଲି ଅଜ ଦେବତା ପୂଜା ପାଉଛନ୍ତି ଅନ୍ୟ ମନ୍ଦିରରେ । ସେଂ ପୂଜାର ହୋମ କୁଣ୍ଡରେ ମୋ ରକ୍ତ କଣ ଜଳୁ ନାହିଁ !

କିନ୍ତୁ ମୋତେ ସେଥିରୁ ଅନନ୍ଦ ମିଳୁ ନାହିଁ କାହିଁକି ? ମୋତେ କିଏ ଦେବ ?

ନା, ଅଉ ପାରୁନାହିଁ । ଥୋଡେ ଡୋଟେ କଲ୍ୟାଣ କର ରହିଲି ।

ଢାର

ଖାଇ

ସେଦିନ ଦିଅାଲି।

ଶ୍ରାଦ୍ଧ ସରିଗଲା। ଶୁକ୍ର ପଇଁଆ ଖାଡ଼ିରେ ପୂର୍ବ ପୁରୁଷଙ୍କ ସରଗ ବାଟକୁ ଆଲୁଅ କରି ଘରେ ଆସି ଦେଖିଲା, ଗୃହଆଡେ ଅନ୍ଧାର। ଅନ୍ଧାରରେ ବସି ରତନୀ ଝିଅକୁ ଦୁଧ ଦେଉଛି। ଝିଅଟା କେଁ କେଁ ହଉଥିଲା, ଢୁଳି ପଡ଼ିଛି ଏଇ ଦଣ୍ଡେ ହେଲା।

ଶୁକ୍ରର ଫଁ କିନା ନିଶ୍ୱାସ ଛାଡ଼ି ବସି ପଡ଼ିଲା।

'ତେଲ ନାହିଁ?'

'ଛଅଟା କିଏ ତେଲ ବରଷେ ଜାଳନ୍ତି କି?' ରତନୀ ଜବାବ ଦେଲା।

'ପଖାଳ ଅଛି?'

'ରାତି ଅଧରେ କି ପଖାଳ? ଆଜି ପରା ଶ୍ରାଦ୍ଧ! ପିଣ୍ଡ ଭାତରୁ—'

'କ'ଣ ନଗେଇ ଖାଇବ? ପିଆଜ ଅଛି?'

'ନା।'

'ଲୁଣ?'

'ଅଛି, ଅଲ୍ପନାକୁ।'

'ତୁ ଖାଇବୁ ନାହିଁ?'

'ତମେ ଖାଇସାରି ଆଗ।'

ଛୁଆଟା ପୁଣି କାନ୍ଦି ଉଠିଲା । 'ଦଶ ଛୁଆ !' କହି ରତ୍ନମା ବିତୃଷ୍ଣ ହେଲା ଥିଲେ ଛୁଆଟାକୁ । ଥନରେ ଆଉ କ୍ଷୀର ନାହିଁ ।

ବାବୁଘର ଭୂଇଁ ବାଣ ଫୁଟି ସରଗ ଉପରକୁ ଉଠି ଚାଲିଗଲା । ରତ୍ନମାର ମନେ ହେଲା, ତା' ଛାତିରୁ ଯେମିତି ନିଆଁ ଝୁଲିଖଣ୍ଡେ ଖସିପଡ଼ି ଲିଭିଗଲା ଥିଲେ !

ବାବୁଘରେ ସେଦିନ ମଙ୍ଗଳା ଶିରାଧରେ କେତେ ଖିଆପିଆ କେତେ ଉଚ୍ଛବ, ବଡ଼ଘର ପିଲାଏ କେତେ ଫୁଲ ଝରି, ଚନ୍ଦ୍ର ଉଦଆ, ଫଟ ଫଟି, ଚନ୍ଦ୍ରଉଦଆ ଭୂଇଁ ଫଟକା, ଢାଲ ଫଟକା, ଇଂରଜୀ ଫଟକା ଫୁଟେଇ ଚାଲି ଯାଉଛନ୍ତି । ଗାଁ ଟୋକାଏ ମିଳି ଭୂଇଁ ଚମ୍ପା ଲଗେଇ ଦେଲେ । ନିଆଁଟା ଯାଇ ପଧାନ ଘର ପିଣ୍ଡାରେ ପଡ଼ିଲା । ଦଉଡ଼ି ଯାଇ ସମସ୍ତେ ଲିଭାଇ ଦେଲେ—ଚାଲ ଓଲାର ପଟେଇଲେ—ନଇଲେ ଦଣ୍ଡେକେ ସବୁ ଶେଷ ହେଇ ଯାଇଥାନ୍ତା ।

ଆଉ ଗାଁରେ ହେଉଥିଲା କାଳୀ ପୂଜା । 'କାଳିପୁର' ବୋଲି ନାଆଁ ତାକ୍ ଗାଆଁର । ଅନେକ ଅଡ଼ୁ ଲୋକ ଆସନ୍ତି । ଯାତରା ଲାଗେ—ଦୋକାନ ବସେ । ଚାରିପାଞ୍ଚ ଦିନ କାଳ ଲଗାତାର୍, ଲୋକ ଲାଗିଥାନ୍ତି—ଯାତ୍ରୀ ଭିଡ଼ । ଏମିତ ବଡ଼ କାଳୀ ଆଉ କେଉଁଠି ହେବାର କେହି ଦେଖି ନାହିଁ ।

ବ୍ରାହ୍ମଣ ମିଶ୍ରଘର ଯେଉଁବର୍ଷ ପହିଲି ଜମିଦାରୀ କିଣିଲେ, ସେ ବର୍ଷ ମିଶ୍ରଙ୍କ ମା କହିଲେ, ବାପ ବ୍ରାହ୍ମଣ କୋଉ କାଳେ ରଜା ହୁଏ ନାହିଁ । କଥାରେ କହନ୍ତି ବ୍ରାହ୍ମଣ ରଜା, ଖଣ୍ଡ ପରଜା । ଆମ ଗୋଷ୍ଠରେ ରଜା ହେବାର ନାହିଁ । ସଜୂତ ଆମକୁ ସଇବ ନାହିଁ । ତୁ ଜମିଦାରୀ କିଣିବାକୁ ମନ କଲୁରୁ ପୁଅ ବେମାର ପଡ଼ିଲା । କହିବ

ବ ନାହିଁ ମା କାଳୀ ଜାଣନ୍ତି, ଜମିଦାରୀ କଣିଲ୍ କଣିଲ୍ ଅଜ ରଖ୍ ନା—ବଳ ଦେ ।

ଭଗବାନ ମିଶ୍ରେ ମାଙ୍କୁ ଭାରି ଖାତିର କରନ୍ତି । ନିତି ମିନାନ ସାରି ପୂଜା ବଢ଼େଇ ମାଙ୍କୁ ଦଣ୍ଡବତ୍ କରି ତା ପରେ ଯାଇ ଭୁଣ୍ଡରେ ଯାହା ଦବାର୍ ଦେବେ । ନ ହେଲେ ନାହିଁ । ମାଙ୍କ କଥାକୁ ସେ ଏବେ ଏଡ଼ ଦେବେ କେମିତି ? ତେଣେ ଜମିଦାରୀ ବି ତ ଛାଡି ହେଉ ନାହିଁ । ଏତେ ସଦରରେ କଣିଛନ୍ତି । ଜମିଦାର ହେଇଛନ୍ତି । ଜମିଦାରୀ ନ ଥାଇ ଜମିଦାର ହେବେ କେମିତି ?

ପଞ୍ଚନାହାକ ପଡାର ଲୋକେ କହିବେ କ'ଣ ? କହିବେ ବେଙ୍ଗ ପେଟରେ ଘିଅ ପଚିଲା ନାହିଁ । ସମସ୍ତେ ହସିବେ । ଭଗବାନ ସେ ଇଙ୍ଗିତ ପରିହାସକୁ ସହିବେ କେମିତି ?

ମଦନ ପଞ୍ଚନାହାକ ଘର ଜମିଦାରୀ ନିଲାମରେ ଉଠିଲାକୁ ମିଶ୍ରେ ଚକ୍ଷୁ କରି ଧରିଛନ୍ତି । ମିଶ୍ରଙ୍କ ଗୁମାସ୍ତା ଭାଗୁ । ତା'ର ବୁଦ୍ଧି-ବଳରେ ମିଳିତ ଏତକ—କେତେ କଷ୍ଟରେ । ତାକୁ ସେ ଛାଡ ଦେଲେ ଅଜ ମାନ ମହତ ରହିବଟି ! ଭାଗୁ କହିବ କ'ଣ ?

ଭାଗୁ ନିଜେ ଜାତରେ କରଣ । ସେହି ପଞ୍ଚନାହାକ ସାହିରେ ଘର । ଉପର ସାହିରେ ମଦନ ପଞ୍ଚ ନାହାକଙ୍କ ଦାଆସ ତ ତଳ ସାହିରେ ଭାଗୁ ପଞ୍ଚନାହାକ ଘର । ଦୁଇ ସାହି ଭିତରେ ସବୁ ଦିନେ ତକା ତକ । ବିଶେଷତଃ ଝୁଲଣ ବେଳେ । ଦୁଇଟିଯାକ ସାହିରେ ଝୁଲଣ ହୁଏ । ସେ ସାହିରେ ମଦନ ମୋହନକୁ ଏ ସାହିରେ ରାଧା ଗୋବିନ୍ଦ । ଦୁଇ ଠାକୁରଙ୍କର କୁଞ୍ଜ ସଜା ହୁଏ । କାହା କୁଞ୍ଜ ଭଲ ହେବ—ଲାଗିଯାଏ କଳିଦା କଦ । ଟଙ୍କା ଖରଚ କରନ୍ତି ତଳ ସାହି ବାଲା । ତଳ ସାହି ବାଲା ଗରିବ ହେଲେ କ'ଣ

ହେଲା, ସେଇ ଗଉଡ଼ ବୋଲି କି କଅଣ, ପଟ୍ଟନାୟକମାନଙ୍କ ହାତରୁ ଗୋଟାଏ ଭଲ ବାହାରକୁ ଦଶେ । ଉପର ସାହିରେ ପଟ୍ଟନାୟକ ହେଲେ ମୁଖିଆ । ସେଇ ହରଚନ୍ଦ୍ର ଜମିଦାର । ତାଙ୍କ ଆଖ ପାଖ ଘର ସବୁ ଗୋବନ୍ଦଙ୍କ ବିଗ୍ରହ ତଳେ ଶାଳଗ୍ରାମଙ୍କ ଭଳି ହାତ ଯୋଡ଼ି ରହିଥାନ୍ତି ।

ଭାଗୁ ମହାନ୍ତି ପଟ୍ଟନାୟକଙ୍କର ସେହି ଦବାଦବଟାକୁ ସହି ପାରିଲେ ନାହିଁ । ସେ ଦିନେ ପଟ୍ଟନାୟକ ସାଙ୍ଗରେ ପଞ୍ଝ ଦେଇ ଠିଆ ହେବାକୁ ସାହସ କଲେ—ଦୁଃସାହସ । ପାରିଲେ ନାହିଁ । ଶେଷରେ ସେ ପଡ଼ାରୁ ଉଠି ଆସି ଏ ପଡାରେ—ଉପର ସାହିରୁ ଆସି ତଳ ସାହିରେ ଘର କଲେ ।

ତଳ ସାହିରେ ଘର କଲାଠୁଁ ଭାଗୁ ମହାନ୍ତି, ଭାଗୁ ପଟ୍ଟ-ନାୟକେ ହେଲେଣି । ପଟ୍ଟନାୟକ ସାଇଙ୍ଗା ଟା ଏବେକା କଥା । ମହାନ୍ତି ଥିଲେ ସମସ୍ତେ—ଚଉଦ ପୁରୁଷ ମହାନ୍ତି ଥିଲେ । କେଉଁ ରଜା କି ମରହଟ୍ଟା ଅମିଲଙ୍କଠୁଁ ମହାନ୍ତିଙ୍କ କେଉଁ ପୂର୍ବ ପୁରୁଷ ପଟ୍ଟ-ନାୟକ ପଦ ପାଇଥିଲେ । ସେଇଦିନଠୁଁ ବଂଶର ବଡ଼ପୁଅ ପଟ୍ଟ-ନାୟକ ଉପାଧି ପାଇ ଆସୁଛି । ଅନେକ ଦିନଯାଏ ସେଇ ବଡ଼ ଅଂଶରେଇ ପଟ୍ଟନାୟକ ପଦବୀଟା ବନ୍ଧି ଯାଇଥିଲା । ଆଜି ସମସ୍ତେ ଯଉଁ ମହାନ୍ତି କି ସେଇ ମହାନ୍ତି ରହିଥାନ୍ତି ।

ଯଉଁ ବର୍ଷ ଏଣ୍ଟ୍ରେନ୍‌ସ ପାସ କରି ତଳ ସାହିର ଗୋବିନ୍ଦ ମହାନ୍ତି ଦାରୋଗା କାମ ପାଇଲେ ସେଇ ବର୍ଷ ସେ ପ୍ରଥମ ଦର-ଖାସ୍ତରେ ଲେଖିଲେ—"ମୁଁ ଜଣେ ମାନ୍ୟ ଗଣ୍ୟ କରଣ କୁଳର ସନ୍ତାନ ।" ଏଇ କଥାଟା ଲେଖି ଦେବା ପରେ ପରେ ଅମୁକ

ମାହାନ୍ତି ବୋଲି ସଇ କରିବାକୁ ତାଙ୍କୁ କେମିତି ଅଡୁଆ ଅଡୁଆ ଲାଗିବାରୁ ମାହାନ୍ତି ଆଗରେ ପଟ୍ଟନାୟକ ଦେ ବସେଇ ହୋଇ ଦରଖାସ୍ତ ପେଶ୍ କରିଦେଲେ । ଗୃହଶ୍ରୀ ଟା ମିଳିଗଲା ।

ଆଉ ସାହିରେ ସେ ଘେନ ବହୁତ ଗୋଳ ଉଠିଲା । ବଡ ଅଂଶରେ ମଦନ ପଟ୍ଟନାୟକଙ୍କ ବାପ ବଞ୍ଚିଥିଲେ ସେତେବେଳକୁ— ଚତୁର୍ଭୁଜ ପଟ୍ଟନାୟକ । ସେ ଥିଲେ ପ୍ରକୃତରେ ଚତୁର୍ଭୁଜ । ପର ସମ୍ପତ୍ତି ଗ୍ରାସ କରିବା ବେଳକୁ ସେ କେବେ ଦ୍ୱିହସ୍ତରେ ଆବଦ୍ଧ ନ ହୁଅନ୍ତି ନାହିଁ । ଗୋବନ୍ଦ ମାହାନ୍ତି ଗୋବନ୍ଦ ପଟ୍ଟନାୟକ ହବା କଥା ତାଙ୍କ କାନରେ ପଡ଼ିଲା । ସେ ଗୋଟେ ଜାତିଆଣ ସଭା ଡ଼ାକିଲେ । ସବୁ କରଣ ସାଆନ୍ତମାନଙ୍କୁ ବ-ସଇ ସେ କହିଲେ, ଏଟା ଖାଲି ଜେଷ୍ଠ ଅଂଶକୁ ଅପମାନ ହେଉଥିଲେ ମୁଁ କଜାଣି ତୁନ ପଡ଼ିଥାନ୍ତି । କିନ୍ତୁ କଥାଟା ତ ସେତିକି ନୁହେଁ—ଏଟା ଆମ ପୂର୍ବ ପୁରୁଷଙ୍କୁ ଅପମାନେ । ଯେଉଁମାନେ ଏଠି ମଞ୍ଜି ପୋତିଦେଇ ଯାଇଚନ୍ତି, ବଡ ପୁଅ ପଟ୍ଟନାୟକ ହେବ ବୋଲି ଯେଉଁ ବଡ଼ାବଡ଼ୁମାନେ ବ୍ୟବସ୍ଥା କରି ଯାଇଚନ୍ତି ଏ ହେଲା ପ୍ରକୃତରେ ସେଇମାନଙ୍କୁ ଅପମାନ । ସେମାନଙ୍କ କଥା ଆଉ ରହିଲା କେଉଁଠି ?

ସମସ୍ତେ ଚତୁର୍ଭୁଜଙ୍କ କଥାକୁ ଯୁକ୍ତିଯୁକ୍ତ ବୋଲି କହି ଗୋବନ୍ଦ ମାହାନ୍ତିଙ୍କ ନଧୋବା ଢ଼ଣ୍ଡାଶ୍ରୀ ବନ୍ଦ କରିବାକୁ ରାୟ ଦେଇ ଦେଲେ । ଗୋବନ୍ଦ ମାହାନ୍ତି ସେତେବେଳକୁ ଛୁଆ ପିଲାଙ୍କୁ ଧରି କେନ୍ଦ୍ରାପଡ଼ାରେ । ଦାରୋଗା ହୋଇ ଲାଲ ଘୋଡ଼ାରେ ଚଢ଼ି ବୁଲୁଥାନ୍ତି । ନଅଁ ପାଣି ବନ୍ଦ ହେବା ଦୂରର କଥା, ନଅଁ ପାଣି ହୁକା ଚିଲମ ସବୁ ତାଙ୍କ ଘରେ ପଡ଼େ ଯୋଗେଇ ଥାଏ ।

ବାଛୁନ୍ଦକୁ ବାଘ ଖାଇଗଲା । ଫଳ ଫଳିଲା ଓଲଟି । ଏଣିକି ଉଳ ସାହିର ସବୁ ମାହାନ୍ତି ଯ କ ପଟ୍ଟନାୟକ ହେବାକୁ ଲାଗିଲେ ।

ଉପର ସାହିବାଲା ଚେତେ ସାହସ କରି ପାରନ୍ତି ନାହିଁ । ତଳସାହି ବାଲା କିନ୍ତୁ ନିଜକରେ ପଟ୍ଟନାୟକ ବୋଲାଇଲେ । ମାହାନ୍ତି ପଡ଼ା ବୋଲି ନାଁ ଡ଼ାକ୍ ଥିଲା ପଟ୍ଟନାୟକ ବସ୍ତି ବୋଲି ବୋଲେଇଲା । ତେଣୁ ବାହାଙ୍କୁ ବିଶେଷ କିଛି ଅସୁବିଧା ହେଲା ନାହିଁ । ଗଲା ଆସିଲା ଲୋକେ ଆସ୍ତେ ଆସ୍ତେ ପଟ୍ଟନାହାକ ସାହିରୁ ଯେତେକ ବାହାର ସମସ୍ତଙ୍କୁ ପଟ୍ଟନାହକେ ବୋଲି ଡ଼ାକିବାକୁ ଲାଗିଲେ । ବିଶେଷ କିଛି ଘଟିଲା ନାହିଁ । ଅଭ୍ୟାସ ବଶତଃ ପୁରୁଣା କାଳିଆ ଲୋକେ କେହି କେମିତି ଯଦି ଭୁଲରେ ତଳ ସାହିର କେଉଁ ପଟ୍ଟା-ନାୟକଙ୍କୁ ମାହାନ୍ତି ପୁଅ ବୋଲି ଡ଼ାକି ଦିଏ ତ ସେ ସାଙ୍ଗେ ସାଙ୍ଗେ ପାଇକିଆ ମାରି ଠିଆ ହୋଇ ଯିବ ।

ଏମିତି ଦୁଇ ତିନିବର୍ଷ ବିତିଗଲା ପରେ ଗୋବିନ୍ଦ ପଟ୍ଟନାୟକ ଯେତେବେଳେ ଛୁଟି ନେଇ ପ୍ରଥମେ ଗାଁକୁ ଫେରିଲେ ସେତେ-ବେଳେ ତାଙ୍କୁ ଫୁଲମାଳ ଦିଆଯାଇଥିଲା କି ନାହିଁ ତାର କୌଣସି ନଥି ସାମିଲ ପ୍ରମାଣ ନାହିଁ । କିନ୍ତୁ ହୋଲି ମେଳନରେ ଠାକୁର ଘର ଘର ବୁଲି ପାଳି କରି ଭୋଗ ଖାଇଲା ପରି ଗୋବିନ୍ଦ ପଟ୍ଟ-ନାୟକ ଓଳିଏ ଓଳିଏ ସମସ୍ତଙ୍କ ଘରେ ପ୍ରସାଦ ସେବନ କରି ସାହି ବାଲାଙ୍କୁ କୃତାର୍ଥ କରିଥିଲେ । ଝୁଲଣ ଚାନ୍ଦା ବାବଦକୁ ଗୋବିନ୍ଦ ପଟ୍ଟନାୟକଙ୍କଠୁ ସେଥର ନବେ ଟଙ୍କା ନଗଦ ମିଳିଥିଲା । ଗତବର୍ଷ ଉପର ସାହିରୁ ଯଦୁ ମାହାନ୍ତି ଓ ତଳ ସାହିରୁ ମାଧ ମାହାନ୍ତି ଓରଫେ ମାଧ ପଟ୍ଟନାହାକେ ଯାଇଥିଲେ ବୃନ୍ଦାବନ ଝୁଲଣ ଦେଖି । କେହି କହନ୍ତି ମାଧ ମାହାନ୍ତି ଆଗ ଗଲେ; ତା ଦେଖା ଦେଖି ଯଦୁ ମାହାନ୍ତି ବି ବାହାରିଲେ । ଯିଏ ଆଗ ଯାଉ ଯିଏ ପଛେ ଯାଉ, ଫେରିଲେ କିନ୍ତୁ ଏକା ସାଙ୍ଗରେ । ସେ ଫେରିବାର ପର ବର୍ଷ ଲାଗିଗଲା ଝୁଲଣର

ଘନା ଘୋଡ ବେଢ଼ୋ ହେଉ । ଗାଁ ଆ ସବୁ ଗରମ ହୋଇ ଉଠିଲା—ବୃନ୍ଦାବନର କୁଞ୍ଜ ସଜା ଲାଗିଛି । କିଏ କହୁଛି—ବୃନ୍ଦାବନର କୁଞ୍ଜ ଉଠି ଆସିଛି । କିଏ କହୁଥାଏ ଉଲ ସାହିର କୁଞ୍ଜ ଯେ ଅବକଳ । ଆଉ କିଏ କହେ ମାଧ ମାହାନ୍ତିଠାରୁ ପଦୁ ମାହାନ୍ତିର ଅକଲ ବେଶି । କିଏ ବା ପ୍ରତିବାଦ କରେ—ମାଧ ମାହାନ୍ତି ଭିତରେ ଗୋଟାଏ ଭକ୍ତ ଭାବ ଅଛି । ଉଲ ସାହି କୁଞ୍ଜକୁ ସେଇ ସୁନ୍ଦର କରିଛି । କୁଞ୍ଜରେ ଗୋଟିଏ ଗୋଟିଏ ଫୁଲ ଖଞ୍ଜି ସେ କେମିତି ଏକ ଧ୍ୟାନ କୁ ଅନେଇ ଥିବ ।

ଯାତବା ଲାଗିଥାଏ ଛୁଆ ଯାକଙ୍କର । ଠିକିଏ ପାରିଲା ପାରିଲା ଛୁଆଏ, ଦଳବାନ୍ଧି ଲାଗିଥାନ୍ତି କୁଞ୍ଜ ସଜେଇବାରେ—ଦୁଇ ସାହି ଯାକର । ସତ ଏକ ଦୁଇ ବାଜିଯାଏ । ଅତି ଚିଲା ପିଲାଙ୍କର ଲାଗିଥାଏ ଗୁଇଦାଗିରି ପାଇଁ । ସେ ସାହିରୁ ଦେଖି ଆସି କିଏ ଏ ସାହିରେ କହୁଦଏ; ଏ ସାହିରୁ ଦେଖିଯାଇ କିଏ ସେ ସାହିରେ କହୁଦଏ—ହେଇଟି; ତାଙ୍କର ଏମିତି ଫୁଲକଣ୍ଠା ଯାଉଛି । କିଏ କହେ ଆଉ ସାହିର ଦେମହେଶବାଟା ଏମିତି ବାଗରେ କାଟା ଯାଇଛି । ଦୁଇ ସାହି ଦୁଇ ସାହିକୁ ଚାହିଁରୁଥାନ୍ତି—ଦେଖା ଶିଖା ଗଢ଼ି ଚାଲି । ଦୁଇ ସାହିର ପିଲାଯାକ ଆପଣା ଆପଣା ଭିତରେ କଳି କରୁଥାନ୍ତି—ଘୃଣାର ଦେଖି, ତାର ଦେଖି ଫରକ ଭଳି ଛି ଡାହାଣ ଆଖି ।

ସେଇ ବର୍ଷଠୁଁ ଦୁଇ ସାହିର କଳିଟା ବେଶ୍ ଠିକିଏ ଜମି ଉଠିଲା । ମଦନ ପଟ୍ଟନାୟକେ ସେହି ବର୍ଷ ନୂଆ ହୋଇ ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ହୋଇଥାନ୍ତି । ନୂଆ ଉତ୍ସାହରେ ମାତି ସେ ବ ଖୁବ୍ ଚେଷ୍ଟା କରିଛନ୍ତି ସେ ବର୍ଷ । ଉପର ସାହି ଝୁଲଣର ନେତା

ଓ କର୍ତ୍ତା ହେଲେ ସେ ଓ ତଳ ସାହିର କର୍ତ୍ତା ହେଲେ ଦାରୋଗା ଗୋବନ୍ଦ ପଟ୍ଟନାୟକ ।

୨ ବର୍ଷ ପରେ ବର୍ଷ ବିତିଯାଏ । ଖୁବ୍ ଧୁମା ଧୁମରେ ସ୍କୁଲଣି ଖୁଲିଲେ । ବୁଢ଼ାମାନଙ୍କର ଉତ୍ସାହ ମାତ୍ରା ବଢ଼ି ଆସେ । ପିଲମାନଙ୍କ ଭିତରେ ଲାଗେ ଜଦା ଜଦ । ତଳସାହିରେ ଟିକିଏ ବେଶୀ । ଅର୍ଥାତ୍ ପାଠ ପଢ଼ୁଆ, ଗୃହାଳୀ ଇସ୍କୁଲକୁ ଯିବା ପିଲା ବେଶୀ । ଯେମିତ ତଳ ସାହିଟା ଉଠୁଛି ଉପର ସାହି ହବା ପାଇଁ—ଆଉ ଉପର ସାହି ପଡ଼ି ଅସୁଛି ।

ତଳ ସାହିର ଆଦର୍ଶ ଦାରୋଗା ଗୋବନ୍ଦ ପଟ୍ଟନାୟକ । ସବୁ ପିଲାଙ୍କର ଆଖି, ପିଲାଙ୍କ ବାପ ମାଙ୍କର ବି ଆଖି, ବଡ଼ ହେଲେ ସମସ୍ତେ ଗୋଟେ ଗୋଟେ ଦାରୋଗା ହେବେ ।

ଆଉ ଉପର ସାହିର ଆଦର୍ଶ ମଦନ ପଟ୍ଟନାୟକ—ଜମିଦାର ସାଆନ୍ତ—କରଣ ଢୁଆ—ଡ଼େଙ୍ଗ ଗଣି ପଇସା କମେଇବେ । ତାଙ୍କର ଜନମ ହେଇଛି, ଦୁନିଆକୁ ସେ ଠକି ଖାଇବେ, ଆଉ ଦୁନିଆ ତା ବଦଳରେ ତାଙ୍କୁ ସବୁବେଳେ ହାତଯୋଡ଼ି ନମସ୍କାର କରୁଥିବ । ଖାନଦାନୀ, ବୁନିଆଦୀ, ଏ ସବୁ କେତେ ଲୋକଙ୍କର ଥାଏ ?

କିନ୍ତୁ ମଦନ ପଟ୍ଟନାୟକ ବଂଶର ଏ ନେତୃତ୍ୱ ବେଶୀ ଦିନ ଟେକି ପାରିଲା ନାହିଁ । ପୁରୁଣା କାନ୍ଥ ପରି ଭୁସୁଡ଼ି ପଡ଼ିବାକୁ ବସିଲା । ଉପର ସାହିରୁ ଯେ ଏକୁଟିଆ ଭିଗୁ ମହାନ୍ତି ଉଠିଯାଇ ତଳସାହିରେ ଭିଗୁ ପଟ୍ଟନାୟକ ବୋଲାଇଲା ତାହା ନୁହେଁ, ପଟ୍ଟନାୟକ ପରିବାରୁ ଗୋଟିଏ ଗୋଟିଏ ହୋଇ ଖସି ମାହାନ୍ତି ଡ଼ୋଳକୁ ପଟ୍ଟନାୟକ ପଢ଼ା ବୋଲି ବଖାଣିତ କରିବାରେ ଲାଗିଗଲେ । ଯିଏ ବା ରହିଲା, ସେ ଆଉ ମଦନ ପଟ୍ଟନାୟକଙ୍କ ଆଦର୍ଶ ରଖି ପାରିଲା ନାହିଁ । ଦାରୋଗା

ଗୋବିନ୍ଦ ମାହାନ୍ତିଙ୍କ ଝଙ୍କାର ଡାକ ସମସ୍ତଙ୍କ କାନରେ ପଶିଲା । ଗୋଟିଏ ଗୋଟିଏ ହୋଇ ସମସ୍ତେ ଇସ୍କୁଲରେ ପଢ଼ିଲେ । ଆଜି ଯିଏ ଇସ୍କୁଲରେ ପଢ଼ିଲା, ସେ ମାହାନ୍ତିରୁ ପଟ୍ଟନାୟକ ପାହ୍ୟାକୁ ପ୍ରମୋଶନ ପାଇଗଲା । ବୁଢ଼ା ମଦନ ପଟ୍ଟନାୟକଙ୍କ ବାପା ବଞ୍ଚି ଥାଇଁ-ଥାଇଁ ଏ କଥା କହି ଯାଇଚନ୍ତି—ମାଳା ଗଡ଼ଉଁ ଗଡ଼ଉଁ, ହରେକୃଷ୍ଣ ହରେକୃଷ୍ଣ ଭଜୁ ଭଜୁ, କହି ଯାଇଚନ୍ତି—"ବାପ ଗୋପାଳଙ୍କ ନାମ ବୁଡ଼ାଇଦେବେ ଏ ଗୁଡ଼ାକ । କଳିକାଳ କଳିକାଳ—ଘୋର କଳିକାଳ—କଳିକାଳର ଭେଣ୍ଡା ଏ ଗୁଡ଼ାକ । ଧର୍ମ ଅଧର୍ମ ଜ୍ଞାନ ନାହିଁ—ବିଦ୍ୟା ଅବିଦ୍ୟା ଜ୍ଞାନ ନାହିଁ—ଓ ହୋ ହୋ—ରାମ, ରାମ, ତ୍ରାହି କର ହେ ମଧୁସୂଦନ ।"

ଏହି କଳିକାଳର ପ୍ରବର୍ତ୍ତକ, ଧର୍ମ ଅଧର୍ମ, ବିଦ୍ୟା ଅବିଦ୍ୟା, ଜ୍ଞାନହୀନ ଭେଣ୍ଡାଙ୍କର ଗୁରୁ ଗୋବିନ୍ଦ ପଟ୍ଟନାୟକ ମଲା ପରେ ତାଙ୍କର ସ୍ମୃତି ମନ୍ଦିର ତୋଳା ହୋଇ ନାହିଁ । କିନ୍ତୁ ତାଙ୍କର ସେଇ ଅମର ଆତ୍ମା, ଆତ୍ମା ନୁହେଁ—ତାଙ୍କର ଅମର ଦାରୋଗାବୁଢ଼ା କେବଳ ତଳ ସାହିରେ ନୁହେଁ, ଉପର ସାହି ତଳସାହି ଦୁଇଟାଯାକ ସାହିର ମାହାନ୍ତି ପଟ୍ଟନାୟକ ବଂଶର ଯେତେ ଲୋକ ଅଛନ୍ତି ସମସ୍ତଙ୍କ ଉପରେ ସେ ଭୂତରେ ସବାର ହୋଇ ଘଣ୍ଟ ବାଡ଼େଇ କହୁଥାଏ—ସମସ୍ତଙ୍କୁ ଉଦ୍‌ବୋଧନୀ ଶୁଣାଉଥାଏ—ଉଠ, ଜାଗ, ତମର ପ୍ରାପ୍ୟ ତମେ ହାସଲ କର !

ଦାରୋଗାଙ୍କର ଜୀବନ ଇତିହାସ କେହି ଲେଖି ନାହାନ୍ତି । ଅନେକ ଦିନ ଅନେକ ବର୍ଷ ପରେ ଯେତେବେଳେ ଗାଁ ଗୃହାଳୀ କେଉଁ ଦିପଟି ପଟ୍ଟନାୟକଙ୍କ ଦାନରେ ତାଙ୍କର ନାଁରେ ମାଇନର ଇସ୍କୁଲଟିଏ ହବାକୁ ଗଲା ସେତେବେଳେ କିଏ ଥରେ ପ୍ରଶ୍ନ କହିଲା,

ଏ ବର୍ଷ ପ୍ରାଙ୍ଗଣରେ ଗୋଟାଏ ରଚନା ପ୍ରତିଯୋଗିତା ହେଲା । ବିଷୟ ନିର୍ବାଚନ ବେଳେ ଅଭି ଜଣେ ପ୍ରସ୍ତାବ କଲା, ଗୋବିନ୍ଦ-ପଟ୍ଟନାୟକଙ୍କ ଜୀବନ ସଂବନ୍ଧରେ ଯେ ସବୁଠାରୁ ଭଲ ଲେଖିଦେବ, ମୁଁ ତାକୁ ପାଞ୍ଚଟଙ୍କାର ଗୋଟେ ପୁରସ୍କାର ଦେବି । ପାଞ୍ଚଟଙ୍କା ପୁରସ୍କାର ସତ୍ତ୍ୱେ ଗୋବିନ୍ଦ ପଟ୍ଟନାୟକଙ୍କ ଜୀବନୀ ଲେଖା ହୋଇ ପାରିଲା ନାହିଁ ।

କିନ୍ତୁ ତାଙ୍କ ମହିମାର ଉପାଖ୍ୟାନଟା କ୍ରମେ କିମ୍ବଦନ୍ତୀ ହେବାକୁ ଆରମ୍ଭ କଲାଣି । ବେଶୀ ଦିନର କଥା ନୁହେଁ । ତଥାପି ପିଲାଏ ଶୁଣନ୍ତି—ବୁଢ଼ାଏ ଗାଆନ୍ତି ।

ଦାରୋଗା ଗୋବିନ୍ଦ ପଟ୍ଟନାୟକେ କେମିତି ମଲେ କେଉଁଠି ମଲେ କେହି ଦେଖି ନାହାନ୍ତି, କେହି ଜାଣି ନାହାନ୍ତି । ସେ ଘରେ ମରି ନାହାନ୍ତି କି ବାହାରେ ମରି ନାହାନ୍ତି, ଦେଶରେ ମରି ନାହାନ୍ତି କି ପର ଦେଶରେ ମରି ନାହାନ୍ତି, ଦିନରେ ମରିନାହାନ୍ତି କି ରାତିରେ ମରି ନାହାନ୍ତି, ତୀର୍ଥରେ ମରି ନାହାନ୍ତି କି ବ୍ୟର୍ଥରେ ମରିନାହାନ୍ତି, ଖାଇ ମରି ନାହାନ୍ତି କିମ୍ବା ନ ଖାଇ ମରି ନାହାନ୍ତି, ଶୋଇ ମରି ନାହାନ୍ତି କିମ୍ବା ନ ଶୋଇ ମରି ନାହାନ୍ତି, ସେ ମରିକି ବି ମରି ନାହାନ୍ତି, ନ ମରିକି ବି ମରି ନାହାନ୍ତି ।

ଶୁଣାଯାଏ ଦାରୋଗା ଶେଷ ଅବସ୍ଥାକୁ ଭାରି ପୁଣ୍ୟାତ୍ମା ହୋଇ ଗଲେ । ହରିନାମ ସବୁବେଳେ ମୁହଁରେ । "ହରେର୍ନାମ ହରେର୍ନାମ ହରେନାମୈବ କେବଳମ୍, କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା," କଥାରେ କଥାରେ ତାଙ୍କର ଏଇଟା ନଜିର, ଉପଦେଶ, ଆଦର୍ଶ ସବୁ । ପୁରା ପୁରି ବୈଷ୍ଣବ ।

ତା ସତ୍ତ୍ୱେ ସାହେବୀ ଧର୍ମ ପ୍ରତି ତାଙ୍କର ଟିକିଏ ସ୍ୱାଭାବିକ ଦୁର୍ବଳତା ଥିଲା । ଠିକ୍ ସାହେବୀ ଧର୍ମ ପ୍ରତି ନୁହେଁ—ତାଙ୍କର ଜଣେ ସାହେବ, ବଡ ସାହେବ ଥିଲେ, ପୁଅ ଭଳି ଦାସେଙ୍କୁ ସ୍ନେହ କରୁଥିଲେ, ସେହି ସାହେବଙ୍କ ପ୍ରତି ଅଗାଧ ଭକ୍ତି ତାଙ୍କୁ ସାମାନ୍ୟ ପ୍ରଭୁ ଯୀଶୁଙ୍କ ପ୍ରତି ପ୍ରେମ ଦେବାର ସହାନୁଭୂତିସମ୍ପନ୍ନ କରି ପକାଇ ଥିଲା । କିରସ୍ତାନମାନଙ୍କ ସାଙ୍ଗରେ ତାଙ୍କର ବଡ ବନ୍ଧୁତ୍ୱ । ନିଜେ କିରସ୍ତାନ ହେବାର ସାହସ ନ ଥିଲେ ହେଲା କ'ଣ, ଏଇ କିରସ୍ତାନ-ମାନଙ୍କ ସହିତ ମିଳା ମିଶା କଥାବାର୍ତ୍ତା ଘଣ୍ଟା ଘଣ୍ଟା ହେବା ଫଳରେ ପ୍ରଭୁ ଯୀଶୁଙ୍କର ସାନ୍ନିଧ୍ୟ ମିଳିଲା ପରି ତାଙ୍କୁ ଲାଗେ । ସେଥିପାଇଁ ସେ ଏଇ କିରସ୍ତାନ ବନ୍ଧୁତ୍ୱକୁ ଗୋଟାଏ ସୌଭାଗ୍ୟ ବୋଲି ଜ୍ଞାନ କରୁଥିଲେ ।

ହିନ୍ଦୁମାନଙ୍କ ମଧ୍ୟରୁ ବ୍ରହ୍ମ ଧର୍ମଟାକୁ ସେ ନିଜର ଆଦର୍ଶ-ସ୍ଥାନୀୟ ମନେ କରୁଥିଲେ । ବୈଷ୍ଣବ ହୋଇ ମଧ୍ୟ ସେ ବ୍ରହ୍ମର ଉପାସକ । ବୈଷ୍ଣବମାନଙ୍କର ରାଧାକୃଷ୍ଣ ମିଳନ ସଂକୀର୍ତ୍ତନ ଓ ବ୍ରାହ୍ମମାନଙ୍କର ଉପାସନା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ବୋଲି ସେ କହନ୍ତି ।

ସ୍ୱାମୀ ବିବେକାନନ୍ଦହିଁ ତାଙ୍କର ହେଲେ ଗୁରୁ । ଠାକୁର ରାମକୃଷ୍ଣ ପରମ ହଂସ ଦେବଙ୍କର ସର୍ବ ଧର୍ମ ସମନ୍ୱୟ ତାଙ୍କୁ ବଡ଼ ଅନୁପ୍ରାଣିତ କରିଥିଲା । ତଥାପି ମନୁଷ୍ୟ ତ ପୂର୍ଣ୍ଣ ନୁହେଁ । ଗୋଟାଏ ଦୋଷ ତାଙ୍କର ଥିଲା, ସେ ସେଟା ସମସ୍ତଙ୍କ ଆଗେ ମାନନ୍ତି । ମୁସଲମାନମାନଙ୍କୁ ସେ କୌଣସି ମତେ ସର୍ବ ଧର୍ମ ସମନ୍ୱୟର ସୀମା ଭିତରକୁ ଅଣି ପକାଇ ପାରିଲେ ନାହିଁ । ସେ କହନ୍ତି ଏକାବେଳେ ଓଲଟା ଧର୍ମଟାକୁ ଗ୍ରହଣ କରିହେବ ନାହିଁ ହେ ! ଆମେ କରୁ

ମାରିଲେ ସେ କଣ୍ଠ ଫିଟାଇବେ, ଆମେ ପତରର ଏ ପଟରେ ଖାଇଲେ ସେ ସେ ପଟରେ ଖାଇବେ, ଆମେ ପୂର୍ବକୁ ଚାହିଁ ପ୍ରାର୍ଥନା କଲେ ସେ ପଶ୍ଚିମକୁ ଚାହିଁବେ, ଆମେ ଗାଈ ଦୁଧ ଖାଇଲେ ସେ ଗୋରୁ ମାଆଁସ ଖାଇବେ, ଶେଷକୁ ଆମେ ଗୋଡ଼ରେ ଚଳିଲେ ସେ ଡାକଆ ଖେଳ ମୁଣ୍ଡରେ ଚଳିବେ । ଏମିତରେ ଭଲ୍ଲ ମିଶିବ କେମିତି ।

କେହି ଯଦି କହେ ବାବୁ ଏ ଗୁଡ଼ାକ ତ ଆଚାର—ଧର୍ମ କେଉଁଠି ? ସେ କହନ୍ତି, ଧର୍ମ ଆଉ କଣ କ ? ଏହି ଗୋରୁ ମାଉଁସ ଖାଇବାରୁ; ଫାଲ୍ଟ ମାରି ଲୁଗା ପିନ୍ଧିବାରୁ ତ କଦେମ ମିଆଁ କନଷ୍ଟେବଳରୁ ପୁଲିସ ସାହେବ ପାହ୍ୟାକୁ ଉଠିଗଲା । ଧର୍ମ ନୁହେଁ ତ ଆଉ କଣ ?

ପ୍ରକୃତରେ ମୁସଲମାନ ଧର୍ମ ପ୍ରତି ନୁହେଁ, ସେ ନିଜେ ମୁସଲ-ମାନ ନ ହୋଇ ଥିବାରୁ ଯେ ପୁଲିସ ସାହେବ ହୋଇ ପାରିଲେ ନାହିଁ, ଏହି ପଡ୍ୟାଷ୍ଟା ହିଁ ତ ଥିଲା ତାଙ୍କର ବିଦ୍ଵେଷ । ଆଉ ଯାହା କିଛି ତାଙ୍କର ଉନ୍ନତି, ଚାକିରୀ, ଚେଷ୍ଟା ସବୁକୁ ସାହା ପୁରୁଷ ସେହି ରବର୍ଟ ସାହେବଙ୍କ ପ୍ରତି ତାଙ୍କର ଭକ୍ତି ଆଉ ତାଙ୍କ ଦତ୍ତ ଚାକିରୀଟା ପ୍ରତି ତାଙ୍କର ଶ୍ରଦ୍ଧାହିଁ ତାଙ୍କୁ ଆକୃଷ୍ଟ କରିଥିଲା ପ୍ରଭୁ ଯୀଶୁଙ୍କର ଅଲୌକ ଆଡ଼କୁ ।

ତଥାପି ଯେଉଁ କୁଳରେ ଜନ୍ମ—ଯେଉଁ ଧର୍ମରେ ଦୀକ୍ଷା ଶିକ୍ଷା ସେ ଧର୍ମକୁ ତ ଛାଡ଼ ହେବ ନାହିଁ—ସେଇ ଧର୍ମରେ ଥାଇ ମରି-ବାକୁ ହେବ । ମଝିରେ ଯାହାସବୁ ହୋଇଗଲା, ସେ ଗୁଡ଼ାକ ଧର୍ମ ନ ହେଲେ ବି ଗୋଟାଏ ପ୍ରକାରର ଧର୍ମ—ଅନ୍ତତଃ ଅଧର୍ମ

ନୁହେଁ । ସେ ସବୁ ମନର କ୍ଷଣିକ ସଦ୍‌ବୁଦ୍ଧି । ସୁତରାଂ ଶେଷ ଅବସ୍ଥାକୁ ଗୋବନ୍ଦ ପଟ୍ଟନାୟକ ସେଇ ରାଧାକୃଷ୍ଣ ରାଧାକୃଷ୍ଣ ପଦ ମୂର୍ଦ୍ଧିରେ ଧରି ବାହାରିଲେ ତୀର୍ଥ ପର୍ଯ୍ୟଟନ । ଗୋପାଳକୃଷ୍ଣଙ୍କର ସେଇ ପଦାବଳୀ ସବୁବେଳେ ତୁଣ୍ଡରେ—"ରାଧା ଗୋବନ୍ଦ ବୋଲି ପଳାରେ ପରାଣ !"

କିନ୍ତୁ ପରାଣ ରାଧା ଗୋବନ୍ଦ ବୋଲି ପଳେଇଲା କି ଅଭୁ ଯୀଶୁ ବୋଲି ଗଲା କେହି କହି ପାରିବ ନାହିଁ । ଏହାପରେ ଶୁଣାଯାଏ ଯେ ପଟ୍ଟନାୟକେ ତୀର୍ଥକୁ ଯାଉଥିଲେ । ଗାଡ଼ିରେ ଚଢ଼ିଥାନ୍ତି । ପାଇଖାନା ଭିତରକୁ ଗଲେ । ହଠାତ୍ ପାଇଖାନା ଭିତରେ ତାଙ୍କ ଉବଟ ସାହେବଙ୍କ ଭୂତ ବାହାରି ତାଙ୍କୁ ନାନା ଅଟମଧି ମଦମାଂସ ଖୁଆଇ ଦେଲେ । ସେତିକି ଖାଇ ସେ ବାନ୍ତି ଉଛୁଳ, ଝାଡ଼ା ପିସାବରେ ଅସ୍ଥିର—ବେହାଲ୍ । ଉତ୍ ଷ୍ଟେସନରେ ତାଙ୍କୁ ଗାଡ଼ିରୁ କାଢ଼ି ନିଆଗଲା । ଦିନ ରାତି ରାତି ସଞ୍ଜବେଳେ ତାଙ୍କ ପ୍ରାଣ ଉଡ଼ିଗଲା ।

ପାଖରେ ଟଙ୍କା ପଇସା ଯାହାଥିଲା ସେ ଧନ କାହାଘରେ ପଶିଲା କେହି କହି ପାରିବ ନାହିଁ । କାରଣ ସେତେବେଳକୁ ପାପ ଧନର ବଳନ୍ତିରେ ଅନେକ କୋଠା ବାଡ଼ି ପିଟା ହେଲାଣି । ଅନେକ ସହର, ଅନେକ ବଡ଼ଘର ତୋଳା ସରିଲାଣି । ସେଇ ସବୁ ପାପର ପୂଜା ମନ୍ଦିର ଗଢ଼ିବାକୁ ଯେତେ ଇଟା ଚୂନ ଗୋଡ଼ି ପଥର ଲୁହା କିବଳା ଲାଗିଥିବ ଗୋବନ୍ଦ ପଟ୍ଟନାୟକଙ୍କ ଅଣ୍ଟିମରା ଟଙ୍କା କେତୁଟା ସିମେଣ୍ଟର ଗୋଟାଏ ଦାନକୁ ବ ସରିହେବ ନାହିଁ । ତଥାପି ଆଧୁନିକ ଦୁନିଆ ଗଢ଼ିବାରେ ଗୋବନ୍ଦ ପଟ୍ଟନାୟକଙ୍କ ପାପ ଧନ ପ୍ରାପୁଷ୍ଟିଉ ପଇସାର ଦାନ ଅତି ଅଳ୍ପ ନୁହେଁ । ସେଗୁଡ଼ିକରେ ଗୁଣ୍ଡ଼ୁଚି ମୂଷାର ମଧ୍ୟ ମହତ ଦାନ ଥିଲା ।

ଘରେ ଟଙ୍କା ପଇସା ଯେଉଁଠି ଯାହା ଥିଲା ସେ କଥା ବି ସେ କାହାକୁ କହିଗଲେ ନାହିଁ । କିଏ ଜାଣିଥିଲା ଏତେ କୁଟମାଡ ହଇବ କରୁଛି ବୋଲି ? ସେ ତ ଆଉ ନ ଫେରିବା ପାଇଁ ଯାଇ ନ ଥିଲେ । ଲୋକେ ଦୋଷ ଦିଅନ୍ତି ଚଣ୍ଡାଳ, ଆପଣ ହାତଧରିଲା ମାଇପଟା ପାଖରେ, ଭଲ କହି ଯାଇଥାନ୍ତା । ନ ହେଲା ଜନମ କଲା ପୁଅ ପୁତୁରାଙ୍କ ହାତରେ—ପୁଅ କିଏ ପୁତୁରା କିଏ—ତାଙ୍କ ହାତରେ ଭଲ ଦେଇ ଯାଇ ଥାନ୍ତା !

ମାତ୍ର ଦୋଷଟା ଗୋବିନ୍ଦ ପଟ୍ଟନାୟକଙ୍କର ନୁହେଁ—ଦୋଷ ତାଙ୍କ ଗୃହସ୍ଥର । ସେ ଗୃହସ୍ଥ ଧର୍ମ ହେଉଛି କାହାକୁ ବିଶ୍ୱାସ ନ କରିବା । ଗୋବିନ୍ଦ ପଟ୍ଟନାୟକ ନିଜକୁ ବି ବିଶ୍ୱାସ କରି ପାରନ୍ତି ନାହିଁ । ସେ କଥା ସେ କେତେଥର ତାଙ୍କ ସ୍ତ୍ରୀଙ୍କ ଆଗେ କହିଥିବେ । ଏ ମର୍ତ୍ତ୍ୟରୁ ସେ ଯେବେ କିଛି ହେଲେ ସ୍ୱର୍ଗକୁ ନେଇ ଯାଇଥିବେ, ତେବେ ସେ ଏଇ ଅବିଶ୍ୱାସର ବୋଝ ।

ଦାରୋଗା ଗୋବିନ୍ଦ ପଟ୍ଟନାୟକଙ୍କ ମୃତ୍ୟୁରେ କେତେ ଲୋକ ସୁଖୀ ହୋଇଥିଲେ, କେତେ ଲୋକ ଦୁଃଖୀ ହୋଇଥିଲେ ତାର ଜନସୁମାରି ନେଲେ ଦାରୋଗାଙ୍କ ସ୍ୱର୍ଗବାସ କିମ୍ବା ନର୍କବାସ ସମ୍ବନ୍ଧରେ ସଂଶୟ ମେଣ୍ଟିଯାନ୍ତା, କିନ୍ତୁ ସେପରି କୌଣସି ତଥ୍ୟ ବା ଷ୍ଟାଟିଷ୍ଟିକର ଅଭାବ ସ୍ଥଳେ ଏତିକି କୁହାଯାଇ ପାରେ ଯେ, ଦାରୋଗା ଗୋବିନ୍ଦ ପଟ୍ଟନାୟକେ ଆଜି ଯାଏ ପ୍ରତିଦିନ ପଟ୍ଟନାୟକ ବଂଶର ପ୍ରତ୍ୟେକ ଇଂରାଜୀ ପଢ଼ୁଆ ଗୃହସ୍ଥଆଙ୍କଠାରୁ ପିଣ୍ଡ ପାଆନ୍ତି—ଏବଂ ଯାବତ୍ ଚନ୍ଦ୍ରାର୍କେ ପାଉଥିବେ ଯେତେଦିନ ଅନ୍ତତଃ ଜଣେ ହେଲେ ଇଂରାଜୀ ପାଠୁଆ ଲୋକ ଏଇ ପଟ୍ଟ ନାହାକ ବଂଶରେ ଥିବେ । ଏବେ ତ ଏଇ ପିଣ୍ଡ ଦେବା ଲୋକଙ୍କ ସଂଖ୍ୟା ବଢ଼ି ଚାଲିଛି ।

ଭୃଗୁ ମାହାନ୍ତି ଓଁରଫେ ଭଗିରଥି ପଟ୍ଟନାୟକେ ମାଇନର ଯାଏ ପାଠ ପଢ଼ିଥିଲେ। ସେ ପୁଣି ବହୁ କଷ୍ଟରେ। ଏବେ ବି ଇଂରାଜୀ ଏ, ବି, ସି, ଡି ମନେ ଅଛି। ମୁଖସ୍ଥ—ଅନର୍ଗଳ ଆବୃତ୍ତି କରିପାରି ପାରନ୍ତି। ଏଇ ବୟସରେ ମଧ୍ୟ। କିନ୍ତୁ ତାଙ୍କର ଗୁଣ୍ଡା ବାକଣି ଉଠିଲା ଇଂରାଜୀ ପାଠ ଯୋଗୁ ନୁହେଁ। ତାଙ୍କର ମଗଜ ଯୋଗୁଁ। ମଦନ ପଟ୍ଟନାୟକେ ଯେତେବେଳେ ଭୃଗୁ ମାହାନ୍ତିର ଘରଭଳି ପର୍ଯ୍ୟନ୍ତ ନିଲାମ କରି ବସିଲେ, ସେତେବେଳେ ଭୃଗୁ ମାହାନ୍ତିର ମାଇପ ବେତଯୋଉ-ଟିଏ ଧରି ବାପ ଘରକୁ ବିଦା ହୋଇ ଗଲା। ଭୃଗୁ ମାହାନ୍ତି ସେଦିନ ଦ୍ରୌପଦୀ ଆଗରେ ଭୀମ ପଣ କଲାପରି ପଣ କରିଥିଲେ, ଏ ଗାଁକୁ ଯଦି ତୁ ପୁଣି ଫେରିବୁ ତ ମଦନ ପଟ୍ଟନାୟକ ଛାତି ଉପରେ ଛତ ଧରି ଫେରିବୁ—ନଇଲେ ଆଉ ଅଯୋଧ୍ୟା ମୁଖ ନ ଦେଖିବୁ।

ତାପରେ ସେ ନିଜେ ଯାଇ ଗୃହତ୍ୟାଗ କଲେ—ମିଶ୍ର ଘରେ—ମାସକୁ ପାଞ୍ଚ ଟଙ୍କା ଦରମାରେ—ଗୁମାସ୍ତା ଗିରି। ଦରମା ଛାଡ଼ ଉପୁରି ବି ଅଛି। ତାର ହିସାବ ଥାଏ ନାହିଁ। ସେ ନିଜେ ବି ଜାଣନ୍ତି ନାହିଁ ଉପୁରି କେଉଁ ବାଟେ ଆସେ। ପ୍ରଭୁ ରାଧାଗୋବିନ୍ଦ ଦୟା:—ପ୍ରସାଦ କଣିକା ପ୍ରାପ୍ୟ ସେ ଉପୁରି ପଇସା ତକ ପାଇ ଦିଅନ୍ତି—ଏକା ଥରକେ ଶେଷ କଲା ପରି।

ମିଶ୍ର ଘର ମହାଜନୀ କାରବାର। ଭୃଗୁ ମହାନ୍ତିଙ୍କର ସେଇ ହାତ ଦଶ ପଚିଶ, ଦଶ ପଚିଶରୁ ପଚିଶ ଶହେ, ହୋଇତେ ହୋଇତେ ପାଞ୍ଚ ଦଶ ହଜାର ବି ଦେଖିଲା—ହଜାର ହଜାର ଟଙ୍କା ଦେ'ଣ ନେ'ଣ ଚାଲିଲା—ଏଇ ଭୃଗୁ ମାହାନ୍ତି ଅମଳରେ। ମିଶ୍ରଙ୍କ ଘର ପୁରି ଉଠିଲା। ସାଙ୍ଗେ ସାଙ୍ଗେ ଭୃଗୁ ମହାନ୍ତିର ହାତ ବି ତେଲିଆ ଚିକଣ।

ପଡ଼ି ଯାଉଥାଏ। କିନ୍ତୁ ଭଗୁ ମହାନ୍ତ ଏମିତି କାଇଦାରେ ଥାଏ ଯେ, କେହି ଜାଣିବ ନାହିଁ ଭଗୁ ମହାନ୍ତର ସଞ୍ଚା ଧନ ଶୂନ୍ୟକୁ ଠେକିଲାଣି —କେହି ଜାଣିବ ନାହିଁ।

ଭଗୁ ମହାନ୍ତ ଉଚ୍ଚ ସାହିରେ ଜାଗା ଖଣ୍ଡେ କିଣି ଯଉଁଦିନ ପହିଲି ଘର ଖୁଣ୍ଟ ଦେଲେ, ସେଦିନ କି ନଟବରଙ୍କ ଦେଖିବ! ଗାଁ ଯାକ ସମସ୍ତଙ୍କୁ ସେ ଦଶ ମୁଣ୍ଡିଆ ମାରି ଯାଉଥାନ୍ତି, "ତମରି ଦୟା— ତମରି ଦୟା—ତମେ ଦୟା ନ କରିଥିଲେ ଏ ଜାଗା ମିଳିଥାନ୍ତା କୁଆଡ଼ୁ। ଏଣିକି ଘର ତୋଳା ତମକୁ ଲାଗିଲା। ମାଗି ଯାଚି ଘର ଖଣ୍ଡେ କଣ ଭଗୁ ମହାନ୍ତ କରି ପାରିବ ନାହିଁ। କାହାଠୁଁ ଛଣ ଦି ବିଡା, କାହାଠୁ ବାଉଁଶ ଦି'ପଣ ଏମିତି କରି ଗୁଳିଆ ଖଣ୍ଡେ ଠିଆ କରି ଦେଲେ ମୁଣ୍ଡ ଗୁଞ୍ଜିବାକୁ ଜାଗା ମିଳିବ—ବାସ ରହିବ।"

ଘର ପ୍ରତିଷ୍ଠା ଦିନ ଦୁଇ ସାହି ଯାକକୁ ନିମନ୍ତ୍ରଣ—ତା ସାଙ୍ଗରେ ମଦନ ପଟ୍ଟନାୟକଙ୍କୁ ବି। ମଦନ ପଟ୍ଟନାୟକ ଦେହ ଭଲ ନାହିଁ ମନା କଲେ। କିନ୍ତୁ ଭଗୁ ମହାନ୍ତ ଛାଡ଼ନ୍ତି କେତେବେଳେ! ଘର ଭିତରେ ଯାଇ ହାଜର—"ମଦନାଦ—ମଦନାଦ—ତମେ ନ ଯିବ ତ ମୋ ଘର ପ୍ରତିଷ୍ଠା ବନ୍ଦ ରହିଲା।" ମଦନାଦ ମହା ଅପଦସ୍ତ। ଏବେ ଆଉ ମନା କରୁଛନ୍ତି କିମିତି? ନ ଯାଇ ହେବ ନାହିଁ। ବାଧ୍ୟ ହୋଇ ବାହାରିଲେ।

ଘର ଉହୁଣ୍ଡିରେ ଗୋଡ଼ ରଖି ଆଗ 'ମଦନାଦ' ପଚାରିଲେ, "ବହୂ କାହାନ୍ତି? ବହୂ ଆସିଛନ୍ତି ବାପଘରୁ?"

ପୁଅ ପୁତୁରା ସମାନ—ପୁଅ କିଏ ପୁତୁରା କିଏ? ଭଗୁ ମହାନ୍ତ ମନେ ମନେ ହସିଲେ କହିଲେ—"ଜାଣ ନାହିଁ କି ମଦନାଦ ?

ସେଇ ଶଳା ଗୋଲାମ ଟୋକା—ଧୋବେଇ ମାହାନ୍ତି—ତମ ବରକନ୍ଦାଜ ମ—ଶଳାର ଏତେ ମଗଜ, ପଟ୍ଟନାୟକ ଘର ବନ୍ଧୁ, ମଦନ ପଟ୍ଟନାୟକଙ୍କ ବନ୍ଧୁ—ଭୃଗୁ ପଟ୍ଟନାୟକଙ୍କ ସ୍ତ୍ରୀ ସବାସ୍ତି ଭିତରେ—ଗହଡ଼ ଜୋରରେ 'ଦାହାଙ୍କ ଡ଼ାକ ଦେଲା ସବୁଙ୍କ ସେ ସାମନାରେ ଠିଆ ହୋଇଯାଇ ସବାସ୍ତି ଅଟକେଇ ଦଉଛି । ଅଟରି ପଚ୍ରୁଛି—'କସ୍‌କା ସବାସ୍ତି ହେ !' ମୋର ଲାଗିଗଲା ସେଟି ତା ସାଙ୍ଗରେ ପଟେ । ସେ କହିଲା—'ମୋତେ ସାଆନ୍ତେ ହୁକୁମ ଦେଇଚନ୍ତି ।' ମୁଁ କାହିଁକି ଠୂଳେ ବିଶ୍ୱାସ କରନ୍ତି । ମୁଁ କଣ ମଦନ ପଟ୍ଟନାୟକଙ୍କୁ ଚିହ୍ନି ନାହିଁ—ଆଜି ମୋତେ ବେହିପ ଧୋବେଇ ମାହାନ୍ତି ଗୋଲାମ ଆସି ଶିଖେଇ ଦେବ । ତମେ କାହିଁକି ଭାହା କୁଅ ବହି ସବାସ୍ତି ଅଟକାନ୍ତି । ସବୁ ସେଇ ଶଳା ଗୋଲାମ ଟୋକାର କାଣ୍ଡ । ମୁଁ ଶୁଣିଲି ନାହିଁ ସେମିତି ଚାଲି ଆସିଲି ।"

ମଦନାଦଙ୍କ ମୁହଁ ଏତିକିଟିଏ ହୋଇଗଲା । ସେତିକି ବେଳେ ଘର ଭିତରୁ ବନ୍ଧୁ ଆସି ସେ କବାଟ କୋଣରେ ଦଣ୍ଡବତ୍ କଲେ । କିଏ ପିଲାଟିଏ କହିଲା—ଖୁଡ଼ି ଦଣ୍ଡବତ ହଉଚି, ସାଆନ୍ତ ଅଜାଙ୍କୁ ।

ଭଗବାନ କାହାରି ଗର୍ବ ରଖନ୍ତି ନାହିଁ । ଗର୍ବଗଞ୍ଜନ ବାନା ସେ । ଭୃଗୁ ମାହାନ୍ତି କହନ୍ତି, ଦ୍ରୌପଦୀ ଲଜ୍ଜା ନିବାରଣ ଭୃଗୁ ମାହାନ୍ତିର ଲାଜ ରଖିଲେ—ମହତ ରଖିଲେ । ମଦନ ପଟ୍ଟନାୟକଙ୍କ ଜମିଦାରୀରୁ ସେ ଥର ଅଦାୟ ମାହା ପଡିଗଲା, ଜଣା ହେଲା ହଜାରେ ଟଙ୍କା ନାଟବନ୍ଦୀ ପଟେଇବାକୁ । କରଜ ନ କଲେ ଗତି ନାହିଁ । ପଟ୍ଟନାୟକ ଘର କେବେ କରଜ କରନ୍ତି ନାହିଁ । ହାତ ଉଧାର ଯେତେବେଳେ ଯାହା ଆଣନ୍ତି ସେତିକ ସେ ଦେଇ ଦିଅନ୍ତି କେହି ନ ମାଗିବା ଆଗରୁ—ନ ଜାଣିବା ଆଗରୁ । କିନ୍ତୁ ଏଥର

ହଜାରେ ଟଙ୍କା ଦାଉଡ଼ି କିଏ ?—ବିନା ହେଣ୍ଡନୋଟ ତମସୁକରେ । ପୁଣି ପଟ୍ଟନାୟକ ଘର ଯଦି କରଜ କରନ୍ତି—ଏକଥା ସଂସାର ଜାଣିବ ତ ? ଲୋକେ ଯଦି ଶୁଣିବେ ଏକଥା, ଜାଣିବେ, ପଟ୍ଟନାୟକ ଘରମାନ ମହତ ସବୁ ଗଲା । ସବୁ ଭାସିଯିବ ।

ସେଇ ଦିନ, ସେଇ ଘଡ଼ିରେ ଭାଗୁ ମାହାନ୍ତି କୁ ଡ଼ାକି ମଦନ ପଟ୍ଟନାୟକେ କହିଲେ—"ହଇରେ ଭାଗୁ, ତୁ କଣ ଆଜି ମୋ ଉପରେ ସେଇ ରାଗ ରଖିଛୁ ନା ? ଗଲା କଥା ଗଲାଣି । ବାପ ଦାଦି ମୁରବି ଲୋକ । ଭୁଲ ଭଟକ ଦେଖିଲେ ଗୃପୁଚଡ଼ ଅଧେ ଯଦି ପକେଇ ଦିଅନ୍ତି, ତେବେ ତାକୁ ପୁଅ ପୁତୁରା ନ ସହିବେ ତ ଆଉ କିଏ ସହିବ ? ତେବେ ପୁଅ ପୁତୁରା ହେଇଥିଲ କାହିଁକି ?"

ଭାଗୁ ମାହାନ୍ତି କଥାର ଲମ୍ବା ଚଉଡ଼ାକୁ ମାପି ତାର ପରିଧି-ଟାକୁ ବେଶ୍ ଠଉରେଇ ନେଲେ । ହଠାତ୍ ସେ ଦିନର କଥା ମନେ ପଡ଼ିଲା । ବିଜୁଳି ପରି ଚମକ ଲଗେଇ ଦେଲା ସେ । ଦେହ ଭିତରଟା ଉଷୁମ ହେଇ ଉଠିଲା । ହସିବା ବେଳକୁ ହସ ଗୁଡ଼ା ପଡ଼ି ଯାଉ-ଥାଏ । ହସିବାକୁ ଚେଷ୍ଟା କରି ସେ ବଡ଼ କଷ୍ଟରେ ଓଠ ଉପରେ ହସ ଫୁଟାଇ ଫୁଟାଇ ପାରିଲେ । ସାମାନ୍ୟ । କିନ୍ତୁ ଭିତରେ—କଲିଜା ଭିତରେ କିଏ ଯେମିତି ଜିଭ ଲହ ଲହ କରି ବିଷ ଢାଳି ବୁଲେଇ ଦେଇ ଯାଉଛି । ବହୁ କଷ୍ଟରେ ନିଜର ରୂପକୁ ଲୁଚେଇ-ବାର ଚେଷ୍ଟା କରି ସେ କହିଲେ :—

"ସବୁ ଦିନେ କାହାର ସମାନ ଯାଏ ନାହିଁ ଦାଦି । ଆଜି ଦି' ପଇସା କମଉଚି, କିଏ ଜାଣେ କାଲି ଭାଗ୍ୟରେ କ'ଣ ଅଛି । ସାଇ ପଡ଼ିଶା ନେଇ ଘର କରିଚୁଁ । ଭଲ ମନ୍ଦ ସମସ୍ତଙ୍କର ଅଛି ।

କଥାରେ ଗଣ୍ଠି ଦେଇ ବସିଲେ ଚଳେ ନାହିଁ । ମୁଁ କ'ଣ ଆଜି ସେଇ ଦିନର କଥାକୁ ମନରେ ରଖିଛୁ ଦାଦା ! ତମର ମାରିବାର ଅଧିକାର ଥିଲା, ଗୁରୁ ଗୁରୁଜନ, ଦି' ଗୋଇଠା ମାରି ଦେଲ ତ ହେଲା କ'ଣ । ଆମର ସହିବାର କଥା, ସହିଗଲି । ନ ହେଲେ ମଦନ ପଟ୍ଟନାୟକ ଛଡ଼ା ଇମିତି କିଏ ପୁଅ ଅଛି, ଭାଗିରଥି ପଟ୍ଟନାୟକକୁ ଧକ୍କା ଦେଇ ଘରୁ ନିକାଲି ଦବ । ଛାଡ଼ ସେ କଥା । ଗଲା କଥା ଗଲାଣି । ମୋତେ କାହିଁକି ଡ଼କେଇ ଥିଲ କହିବଟି !

ମଦନ ପଟ୍ଟନାୟକ ବୁଝି ପାରିଲେ ନାହିଁ ଭାଗୁ ମାହାନ୍ତି ଭଲ କହୁଛି କି ମନ୍ଦ କହୁଛି । ଭାଗୁ ମାହାନ୍ତି ମନରେ ଏବେ ବି ରିସା ଅଛି ନା, ସତ ସତ ଯେମିତି କହୁଛି ସେମିତି କ୍ଷମା କରି ସେ ଆଜି ଆପଣା ଲୋକ ଭଳି ବ୍ୟବହାର କଲେ ଆହା ପୁରୁଷ ହୋଇ ଠିଆ ହେବ !

ତଥାପି ମଦନ ପଟ୍ଟନାୟକଙ୍କୁ ସଙ୍କୋଚ ଲାଗୁଥାଏ । ମଦନ ପଟ୍ଟନାୟକ ପରି ଲୋକ, ପଟ୍ଟନାୟକ ପଡ଼ାର ମୁଖିଆ, ସେ ପୁଣି ଭାଗୁ ମାହାନ୍ତି ଗୁମାସ୍ତା ପାଖରେ ହାତ ପାତିବ ? ହେଲେ, ଭଗବାନ ବି ତ ଗଧ ପାଦ ଧରି ଥିଲେ—ଦରକାର ବେଳେ । ବହୁ କଷ୍ଟରେ ମଦନ ପଟ୍ଟନାୟକ କହିଲେ, "ହଇ ହେ ଭାଗୁ, କଥାଟା କିନ୍ତୁ ବଡ଼ ଗୋପନ ରଖିବୁ । ଗିଧା ଗୋବିନ୍ଦଙ୍କ ନାମ ଧରି କହୁଛି ।"

ଭାଗୁ ମାହାନ୍ତି ସାଙ୍ଗେ ସାଙ୍ଗେ କହି ଉଠିଲା—"ଗିଧା ଗୋବିନ୍ଦଙ୍କ ଦ୍ୱାହି ମଦନାଦା । ତମ ଛଡ଼ା ମୋ ଛଡ଼ା ଆଉ କେହି ଜାଣିବେ ନାହିଁ ।"

"ଦେଖ, ପଟ୍ଟନାୟକ ପଡ଼ାର ଇଜ୍ଜତ ଯେମିତି ପଦାରେ ନ ପଡ଼େ । ପଟ୍ଟନାୟକ ଘର କିଏ ଆଉ ପଟ୍ଟନାୟକ ପଡ଼ା କିଏ ।

ଏ ଗୋଟିଏ ଘରର ମହତ ଗଲେ ସବୁ ଘରର ମହତ ଯିବ ।"

ଭୃଗୁ ମାହାନ୍ତି ଭାବୁଥିଲେ—ତାଙ୍କୁ ଲାଗୁଥିଲା, ସତେ ଯେମିତି ଏ ଗୋଟିଏ ଘରର ମହତ ଲାଗି ସବୁ ଘରର ମହତ ଯାଉଛି । ସବୁ ଘରର ମହତ ଦେଇ ଏଇ ଗୋଟିଏ ଘରର ମହତ ଲାଗି ଆସିଛନ୍ତି ସମସ୍ତେ, ଆଜିଯାଏ ।

ଭୃଗୁ ମାହାନ୍ତି କିନ୍ତୁ ଉତ୍ତର ଦେଲେ—ମୋତେ କଣ ସେ କଥା କହିବାକୁ ହେବ ମଦନାଦ । ଦେଖିବ ପୁଣି । ମୁଁ କଣ ଜାଣେ ନାହିଁ । ଷଟ୍‌କର୍ଣ୍ଣେ ମନ୍ତ୍ରଭେଦ, ତମର ମୋର ଗୃଥିକାନ ଛଡ଼ା ପାଞ୍ଚ କାନ ବି ହେବ ନାହିଁ । ଦେଖିବ ପୁଣି ।

ଗଲାବେଳକୁ ମଦନ ପଟ୍ଟନାୟକ ଆଉ ଥରେ ସାବଧାନ କରେଇ ଦେଲେ । ଭୃଗୁମାହାନ୍ତି ମଧ୍ୟ ଶେଷ ଥର ପାଇଁ ନିର୍ଭର ଜବାବ ଦେଇଗଲେ—'ଦେଖିବ ପୁଣି ।'

କହି ତ ଗଲେ—ନାଇବନ୍ଦୀ ଅସି ମୁଣ୍ଡଉପରେ—କାହିଁ ? ଦେଖା ନାହିଁ । ମଦନ ପଟ୍ଟନାୟକ ମୁଣ୍ଡରେ ହାତଦେଇ ବସିଚନ୍ତି । ସାତଏ ସାତଏ ନାଇବନ୍ଦୀ ଟଙ୍କା ଯେଣେ ଗୁମାସ୍ତା ବରକନ୍ଦାଜ, ପାଣ ଛଟିଆ ଭଲଟିସ୍ ଜବେଷ୍ଟ ଯିବେ । ସଦର ଜମାରୁ ହଜାରେ କେତେ ଟଙ୍କା ଭଣା । ଭୃଗୁ ମାହାନ୍ତି—କଉଁ କାଳେ ସେ ଭୃଗୁ ପଟ୍ଟନାୟକ ହେଇ ଥିଲା ନା—ତା ବାପ ଗୋସାପ ବଳଦ ପୁରୁଷରେ କେହି ପଟ୍ଟନାୟକ ହେଇଥିଲା ନା—ଯାହାର କଥାରେ ଠିକ୍ ନାହିଁ—ସେ ପୁଣି ମଣିଷ ! କଥା ଦେଇ ଭସେଇ ଦେଇଗଲା—ଗୋଟା ପଟ୍ଟନାୟକ ବଂଶଟାକୁ !

ଅଧରାତ । ପଟ୍ଟନାୟକେ—ମଦନ ପଟ୍ଟନାୟକେ ମୁଣ୍ଡରେ ହାତ ଦେଇ ବସିଚନ୍ତି । ଗୁମାସ୍ତାମାନେ ହିସାବ ଲଗେଇଚନ୍ତି, ଟଙ୍କା ଗଣୁଚନ୍ତି, ପରାମର୍ଶ ଦେଉଛନ୍ତି, ତାବେଦାରି କରୁଛନ୍ତି । ବର୍ଷର ପଢ଼ଣ, କୋଡ଼ି ଉଣ୍ଡୀଟା ବାକୀ ପଡ଼ିବ ।

ହଠାତ୍ ଭୃଗୁ ମହାନ୍ତି ଓରଫେ ଭୃଗୁ ପଟ୍ଟନାୟକ ଆସି ପହଞ୍ଚିଗଲେ । ଠିକ୍ ସେତିକି ବେଳକୁ ମଦନ ପଟ୍ଟନାୟକେ ଅସ୍ଥିର ଭାବରେ ପାଇଚାରି କରୁଥିଲେ । ମଝିରେ ମଝିରେ ଚଳିକା ଉପରେ ଯାଇ ଲଥ କିନା ବସି ପଡୁଥାନ୍ତି । ଖଣ୍ଡେ ଦୂରରୁ କିଏ ଆସୁଛି ଦେଖି ସେ ଚମକି ପଡ଼ିଲେ—"କିଏ ଭୃଗୁ ?"

"ହଁ ଦାଦା, ମୁଁ ଭୃଗୁ ।"

ପିଣ୍ଡରେ ଯେମିତି ପ୍ରାଣ ପଶିଲା ।

"ମୁଁ ଜାଣେ ଭୃଗୁ ଏଇ ବାଟରେ କୋଉଠି ହେଇଥିବ । ଏମାନେ ସମସ୍ତେ କହୁଥିଲେ ଭୃଗୁ ମହାନ୍ତି ଧପେଇଲା । ମୁଁ କହିଲି, ଭୃଗୁ କ'ଣ ଇମିତି ସିମିତି ଲୋକ—କାହା ଘର ପୁଅ, କାହା ଘର ନାତି, କାହା ବଂଶରେ ଜନ୍ମ—କଥା ତାର ଦୁଇଟା ହେବ ?"

ଭୃଗୁ ମହାନ୍ତି କରୁ ମୁହଁଟାକୁ ଓଲଟା ପରି କରି କହିଲେ—କଣ କରିବ ମଦନାଦା, ଟଙ୍କା ପଇସା ଦବା ନବା କଥା ସବୁ ସାର ହୋଇଗଲା । କଥା ଖାଲି ଟିକକେ ଅଟକି ରହିଛି । ଛୁଡ଼ୁ ନାହିଁ । ତମେ ତ କହୁଚ ଗୁରୁ କାନରୁ ଛ କାନେ ହେବନାହିଁ । ମିଶ୍ର ପାଜିଟା କ'ଣ ଧରିବସିଛି ଜାଣିଚ ? କହୁଛି ଦୁଇ ତିନିଜଣ ସାକ୍ଷୀ ନ ପଡ଼ିଲେ ସେ ଟଙ୍କା ଦବ ନାହିଁ ।"

"ତୁ ଟଙ୍କା ଆଣି ନାହୁଁ ? ପଟ୍ଟନାୟକେ ନିରାଶ ହୋଇଗଲେ ।

"ଅଣିବା ନ ଆଣିବା ସମାନ । ଝଙ୍କା ଏଇ ହାତଚଢ଼ଙ୍କାଟରେ ଥୁଆ ହେଲାରେ ଜାଣିବ, ଖାଲି ଦୁଇ ଚାରିଜଣ ମୁଖିଆ ଲୋକ ସାକ୍ଷୀ ପଡ଼ଲେ କାମ ଶେଷ ।"

"ମହତ ରକ୍ଷାରଟି ଭୃଗୁ ?" ମଦନ ପଟ୍ଟନାୟକ ପଚାରିଲେ ।

"ହଁ, ସେ ତ ଠିକ କଥା । କିନ୍ତୁ ମୋର ଆଉ ବଳ କାହିଁ ସେଥିକୁ କହ । ତେବେ—ଯଦି—ମୁଁ କ'ଣ କହୁଥିଲି କି—"

"କ'ଣ କରିବ କହ ଭୃଗୁ—ମୋତେ ବୁଦ୍ଧି ଦେ—ଗୁରୁଆଡ଼େ ମୋତେ ଖାଲି ଅନ୍ଧାର ଦିଶୁଛି ।"

"ନା, ବୁଦ୍ଧି ଆଉ ଏଥିରେ କଣ ଦେବ । କିବା କଥାଟାଏ । ମୁଁ କଣ କହୁଥିଲି କି—" ଭୃଗୁ ମାହାନ୍ତି ଛୋଟ ଢୋକ ଅଧେର ନରମ ଗଳାରେ କହିବାକୁ ଲାଗିଲେ, "ଗହଣା ଦି'ଖଣ୍ଡ ବନ୍ଧା ପକେଇ ଦେଲେ କମିତ ହୁଅନ୍ତା । କ'ଣ କରିବା ? ଗରଜ ତ ପଡ଼ିଚି ଆମର, ମିଶ୍ର ବ୍ରାହ୍ମଣ ଯାହା କହିବ ନାକ କାନ ମୋଡ଼ି ସେଇଆ କରିବାକୁ ପଡ଼ିବ । ଗୁରୁ କ'ଣ ?"

ଗହଣା ! ମଦନ ପଟ୍ଟନାୟେକେ ଚମକି ପଡ଼ିଲେ । ମାଇପ ଗହଣା—ଘରର ଲକ୍ଷ୍ମୀଙ୍କ ଗହଣା ପର ହାତକୁ ଦେଇ, ବନ୍ଧା ପକେଇ ମାଲ ଗୁଜାରି ପଠେଇବେ ! ଶେଷକୁ ଏଇଆ ଥିଲା କପାଳରେ । ମୁଣ୍ଡରେ ହାତଦେଇ ଗୁମ୍ ମାରି ବସିଗଲେ ମଦନ ବାବୁ ।

ଭୃଗୁ ମାହାନ୍ତି କହିଲେ, "ନ ହେଲେ—ସେ ବାହ୍ମଣ ଖଣ୍ଡ ତ ମାନିଲା ପରି ଦିଶୁ ନାହିଁ—ଅଚ୍ଛା, ଦେଖିବା, ଦଗୁଣାରେ ହେଉ ନୋଟ ଖଣ୍ଡେ ଲେଖିଦିଅ ଚକ୍ରବର୍ତ୍ତୀ ସୁଧରେ—ମୁଁ ଯାଇ ଅଭିଥରେ ଚେଷ୍ଟା କରି ଦେଖେଁ କ'ଣ ହେଉଛି । କିନ୍ତୁ ଜବାବ ଦେଇ ପାରୁ ନାହାନ୍ତି ମଦନାବାବୁ । "ଠାକୁରେ ସାହା । ବ୍ରାହ୍ମଣ ମଙ୍ଗିଗଲା ତ ତମ ଭାଗ୍ୟ ।"

ଅଗତ୍ୟା ମଦନ ପଟ୍ଟନାୟକ ହଜାରକ ଜାଗାରେ ଦୁଇ ହଜାର ଟଙ୍କାର ହ୍ୟାଣ୍ଡନୋଟ ଲେଖିଦେଲେ । ଭାଗୁ ମାହାନ୍ତି 'ମା ଦୁର୍ଗା !' ଡ଼ାକ ଛାଡ଼ି ମିଶ୍ରଙ୍କ ଘରକି ଗଲେ ଦାହାର ଟଙ୍କା ଆଣିବାକୁ । ମଦନ ବାବୁଙ୍କ ଛାତି ଖାଲି ଥରୁଥାଏ । ହ୍ୟାଣ୍ଡନୋଟ ନେଇ ଟଙ୍କା ଯଦି ନ ଦିଏ ।

ତାଙ୍କ ଭାଗ୍ୟ ଭଲ—ଭାଗୁ ମାହାନ୍ତି ଟଙ୍କା ଧରି ଫେରିଲେ । କିନ୍ତୁ ପୂରା ହଜାରେ ଟଙ୍କା ନୁହେଁ । ହଜାର କରୁ ଶହେ ଟଙ୍କା କମ୍ । ମଦନ ପଟ୍ଟନାୟକ ଚାଟକା ହୋଇ ଭାଗୁ ମାହାନ୍ତିଙ୍କି ଚାହିଁଲେ । ମାହାନ୍ତିଏ କହିଲେ—"ଚିନ୍ତା ନାହିଁ—ଶହେ ଟଙ୍କା ସେ ପରେ ଦେଇ ଦେବେ ।"

"କିନ୍ତୁ ଏଇଲେ ନାଟବାଡ଼ୀ ଚଳିବ କିମିତି ?" ମଦନବାବୁ ପଚାରିଲେ ।

"ନ ହେଲା, ଶହେ ଟଙ୍କା ଗୋଟେ ଉତ୍ତଜାର ବାକି ରହିଯିବ । ଭସିଯିବ କଣ ? ନିଲାମ ତାରିଖ ପୂର୍ବରୁ ଦାଖଲ କରି ଦେଲେ ହେଲା । ନ ହେଲା ଟଙ୍କା ପାଞ୍ଚଟା ଯାଏ ଜରିମାନା ପଡ଼ିବ ।—ଖାଲି ବଢ଼ି ବଢ଼ି ।"

ମଦନବାବୁଙ୍କ ଅକଲ ଗୁଡୁମ୍ । "ଶେଷକୁ ଶହେ ଟଙ୍କାଟା ପାଇ ନା ପଡ଼ିବ ଯେ ପଟ୍ଟନାୟକ ଘର ନାଟବାଡ଼ୀ ପଟେଇ ପାରିଲେ ନାହିଁ ।"

"ଭାଗୁ ପଟ୍ଟନାୟକ ଥାଉଁ ଥାଉଁ ତମେ କିଛି ଚିନ୍ତା କର ନାହିଁ ମଦନାଦ । ନ ହେଲା, ନାହିଁ ମୁଁ ମୋ ହାତରୁ ଦେଇ ଦେଉଛି । ମୋ ଟଙ୍କାଟା ହାତ ଉଦ୍ଧାର ବୋଲି ଜାଣିବ ମଦନାଦ । ମୋତେ

ହାତେ ହାତେ ଦେଇଦେବ । ହେଣ୍ଡନୋଟ ତମସୁକର ଦରକାର ନାହିଁ । ବାପ ପୁଅଙ୍କ ଭିତରର କଥା ତ ।”

ସେଥର ନାଟବନ୍ଦୀ ଚାଲିଗଲା । ଯଥା କଥା ତା । ତହିଁ ଆର ବରଷ ଆଦାୟ ପୁଣି ସେମିତ ସେମିତ । ଧାନ ଦର ପଡ଼ିଗଲା । ଘରାଘରେ ହାହାକାର ପଡ଼ିଗଲା । ରାଜା ଜମିଦାରଙ୍କର ପ୍ରମାଦ କହିଲେ ନସରେ । ସରକାର ଅହନ୍ତା କଲାପରି ଜମିଦାରଙ୍କ ଉପରି ଦାଖଲ ଖାରଜ ରେସମ ଉଠାଇ ଦେଲେ । ଛୋଟ ଛୋଟ ମଧ୍ୟବର୍ତ୍ତି ଜମିଦାର ଗଡ ମଲାପରି କାହିଲା ହାଲିଆ ହୋଇଗଲେ । ବଡ଼ ବଡଙ୍କ ଅବସ୍ଥା ମଧ୍ୟ ଢୋକେ ପି ଦଣ୍ଡେ ଜୀ । ମଦନବାବୁ ସେ ଛାଲିକାରୁ ବାଦ ପଡନ୍ତେ କେମିତ ।

ମିଶ୍ରଙ୍କ ଟଙ୍କା ଶୁଝା ସରିନାହିଁ । ବାକୀ ଅଳ୍ପ କେତେ ଶୁଝିଦେଇ ହେଣ୍ଡନୋଟ ଫେରେଇ ଆଣିବେ ବୋଲି ଯେତେଥର ଟଙ୍କା ଆଣି ରଖୁଛନ୍ତି, ପର ଲାଗିଲା ପର ସେ କୁଆଡେ ଉଭେଇଯାଉଛି । ଗୁହ୍ଁ ଗୁହ୍ଁ ଆଉ ନାଟବନ୍ଦୀ ଆସି ପଡ଼ିଲା । ଏଥର ଦୁଇହଜାର ଟଙ୍କା ଋଣ ।

ମଦନ ପଟ୍ଟନାୟକ କହିଲେ, ଏଥର ଆଉ କିଛି ବେଶୀ ଟଙ୍କା ଆଣି ପୁରୁଣା ଋଣଟାକୁ ଶୋଧକରି ଦିଆଯାଉ । ଏଣିକି ଖାତାରେ ନୂଆ କରଜଟା ପଡ଼ୁ ।

ଭାଗ୍ୟ ମାହାନ୍ତି କହିଲେ—ଏକା କଥା—ଅନ୍ଧାରରେ ଖାଇଲେ ଯେ ଆଲୁଅରେ ଖାଇଲେ ସେ । ତା' ଛଡ଼ା ତମେ ଭାବଛ ଆଗ ଟଙ୍କା ନ ଶୁଝିଲେ ମିଶ୍ର ବାହ୍ମଣ ତମକୁ ଅବିଶ୍ୱାସ କରିବ । ତା' ନୁହେଁ —ତା' ନୁହେଁ ମଦନାବ । ମିଶ୍ର ବାହ୍ମଣ ଭଲ କରି ଚହିଁଛି ମଦନ

ପଟ୍ଟନାୟକ ଭଲଅଭୟ ଲୋକ । ସେ କଣ ଭୟକୁ ଅବିଶ୍ୱାସ କରିବ, କାଳେ ତମେ ଆଗ ଠାକୁଠାକୁ ବୁଡ଼େଇଦେବ ବୋଲି, ତଥାପି ମହାନାଦ ଉପରେ କହିଲେ—ନାଇଁ ପୁରୁଣା ହିସାବଟା ନିକାଶ କରିଦେଲେ ଭଲ, ନଇଲେ ଦେଖା ପୁଣି ଗଡ଼ୁଥିବ—ସୁଧ ଚଢ଼ୁଥିବ ।

କେବଳ କଥାରେ ହେଲା ପୁରୁଣା ହିସାବଟା ଚୁକ୍ତି କରି ଦିଆଯିବ । କିନ୍ତୁ କାର୍ଯ୍ୟରେ ହେଲା ନାହିଁ । ମାଗୁଣିଆଙ୍କର ହେଲା ଏକଜବାବ—ଆଲୁଅରେ ଖାଇଲେ ଯେ, ଅନ୍ଧାରରେ ଖାଇଲେ ସେ ।

ବର୍ଷ ବର୍ଷ ଧରି ନାଠବନ୍ଦୀକୁ ନାଠବନ୍ଦୀ, ବର୍ଷରେ ଦି' ଦି ଥର ମଦନ ପଟ୍ଟନାୟକ ମିଶ୍ରଙ୍କ କରଜ ପଣିବାକୁ ଲାଗିଲେ । କରଜଟା ବାଢ଼ି ବାଢ଼ି ଚାଲିଲା । ଅତି ସହଜ—ଆପଣାର ସାଙ୍ଗରେ ସମ୍ମାଧାନ ଅଣିଲା ପରି ଲାଗୁଥାଏ ମଦନ ପଟ୍ଟନାଏକଙ୍କୁ । ଜମିଦ ସଂସ୍ତର କିନ୍ତୁ ତାଗିଦା ନାହିଁ । ଅଦାୟର ବ୍ୟବସ୍ଥା ନାହିଁ । ହଁ, ଅଦାୟ ହେବ । ପ୍ରଜାଙ୍କ ଉପରୁ କୁଆଡ଼େ ବୁଡ଼ିଯାଇଛି କି ? ପ୍ରଜାଏ ତ ଆଜି ଘରୁ ଆଣି ଖଜଣା ଗଣିଦେଇ ଯିବା ଅବସ୍ଥାରେ ନାହାନ୍ତି । ଅଣ୍ଟାମିଆଁ ହେଲାପରେ ସମସ୍ତେ ମନ ଖୁସିରେ ନାହିଁ ବୋଲି କହିଦେଇ ଶୋଇପଡ଼ନ୍ତି । ମଦନ ପଟ୍ଟନାୟକଙ୍କ ଅବସ୍ଥା କ୍ରମେ ଖରାପ ହୋଇ-ଆସିଲା । ଶେଷ କପାଳରେ ଜମିଦାରୀ ବନ୍ଧା ଦେଇ କରଜ ଆଣିଲେ । କାଢ଼ିଆଖେଇଲ ଠାକୁପଦ୍ଧ କରଜର ସୁବିଧା ନେଇରେ ମଦନପଟ୍ଟନାଏକଙ୍କ ମନ ଯେମିତି ବଶ ହୋଇଯାଇଛି । କ୍ରମେ ଖଣ୍ଡି ଖଣ୍ଡି ହୋଇ ଜମିଦାରୀ ହାତରୁ ଖସିଲା—ନିଲାମରେ ନୁହେଁ — ବନ୍ଧାହୋଇ ।

ମଦନପଟ୍ଟନାୟକଙ୍କ ଭଅସକୁ ଯେ ଶୁଣୁଥାଏ, ହାସ୍ୟ ହଉଥାଏ । କାନ୍ଥରେ ଚୂନ ଦିଆନାହିଁ । ପଲସ୍ତରା ଖଣ୍ଡି ଖଣ୍ଡି ଖସି-

ପଡ଼ୁଛି । ଗୁହାଳ ପଟରେ କାନ୍ଥ ଡ଼ାଟିଆ ହେଲଣି । ଶୋମପଟ ଘରଟା ଭଙ୍ଗା ହେଇଥିଲା । ମାଟିହେବ ବୋଲି ସେ ସେମିତ ରହିଛି । ସବୁଗ୍ର ପାଲିକିରେ ଘୁଣ ଲାଗି ସତ୍ୟାନାସ ହେବାକୁ ବସିଛି । ମଦନ ପଟ୍ଟନାୟକ ଲାଜ ଆଉ ଘରୁ ବାହାର ପାରୁନାହାନ୍ତି । ସବୁଗ୍ର ପାଲିଙ୍କି ଚଢ଼ିବ କିଏ ? ବୁଢୀଆଣି, ଝିଟିପିଟି, ମୂଷା ଆଉ ହେମଣଙ୍କର ଅଡ୍ଡା ହୋଇଛି ସେ ଜାଗାଗୁଡ଼ାକ ।

ଲାଜ ଅପମାନର ବୋଝକୁ ଛାଇ ମନେକରି ମଦନ ପଟ୍ଟନାୟକ ଯେତେବେଳେ ଅସ୍ତ୍ର ଅସ୍ତ୍ରେ ଘରୁ ବାହାରକୁ ବାହାରିଲେ— ସେତେବେଳେ କ ତେଜ ଦେଖିବ ତାଙ୍କର । ଖାଲି ତେଜ ନୁହେଁ ଡ଼ମରେ ସେ ଅଡ଼ୁର ଡମ୍ ଡମ ହେଇଯାଉଥାନ୍ତି । କଉଁ ବାପ ଗୋସାଇ ଅମଳରେ ସଞ୍ଜା, ମଠା, ପାଟ, ଶାଲ, ପଗଡ଼ି, ତେର ଅନେକ ସବୁ ବାହାରିଲା । ଦାରିଦ୍ର୍ୟକୁ ଅସ୍ୱୀକାର କରିବାପାଇଁ ଯେତେ ଦୁର୍ବଳ ହେଉନୁ ପଛେ ଅନ୍ତତଃ ଅତୀତକୁ ଧୋଇ ପିଇ-ବାର ପ୍ରବୃତ୍ତିରେ ସନ୍ତୁଷ୍ଟ ହେବା ଛଡ଼ା ପଟ୍ଟନାୟକଙ୍କର ଉପାୟାନ୍ତର ନ ଥିଲା ।

"ଏ ଚପକନଟା ମରହଟ୍ଟା ଅମଳର ।"

"ଏ ପଗଡ଼ି ବାନ୍ଧ ଅମର କଉଁ ପୂର୍ବପୁରୁଷ ମରହଟ୍ଟାଠୁଁ ସନନ୍ଦ ଆଣିଥିଲେ ।"

"ଏ ସାଲଟା ତିରିଶ ଟଙ୍କାଦେଇ ଆମ ବାପା ମୋ ପାଇଁ କିଣିଥିଲେ ।"

କହିବା ସାଙ୍ଗେ ସାଙ୍ଗେ ଗୁଡାଖୁର ଗୋଟାଏ ଗୋଟାଏ ଲମ୍ବା ଟାଣ କଥାକୁ ଅଡ଼ୁର ଗମ୍ଭୀର ଏବଂ ମିଠା କରୁଥାଏ । ଗୁଡାଖୁର ନଳିଟା କ୍ରମେ କ୍ରମେ ଲମ୍ବିଯାଉଛି । ନଳର ଗୁଡ଼ା ଧରିବାର ଶକ୍ତି

ଯେତିକି ହାସ ପଇବାରେ ଲାଗିଛି ଗୁଡ଼ାଖୁର ନଳି ସେତିକି ଲମ୍ବି ଲମ୍ବି ଗୃହଲୁଛି ଓ ସେତିକି ରଙ୍ଗ ବିରଙ୍ଗ ହୋଇ-ଯାଉଛି ।

ପଟ୍ଟନାଏକଙ୍କ ପୁଅ, ବାପଟ୍ଟୁ ଶଙ୍କରଜା ବଡ଼ଲେ । ମାଟ୍ରିକ୍ୟୁ-ଲେସନ ତିନିବର୍ଷରେ ପାଶ କରି, ଗୃହଥର ଆଇ. ଏ ପରୀକ୍ଷା ଦେବାର ବାହାଦୁରୀ ଅର୍ଜ୍ଜନ କରି ସେ ବର୍ତ୍ତମାନ ଲମ୍ବୋଦର ହୋଇ ଘରେ ଗାଆଁ ବଜାରରେ ସମୟ କଟାନ୍ତି । ଶୁଣାଯାଏ ତା, ଧିନି କଥା ତା, ତାକ ତାଳ ତା' କରି କବାଲ୍ ବାହାରବା ଏକ ଦୁଇଟି ତାଳ ଶିଖିଛନ୍ତି ଦୁଇମାସ ଦୁଇପକ୍ଷ ଦୁଇସପ୍ତାହ ଦୁଇଦିନ ଭିତରେ । ତାଙ୍କର ହିସାବ ଅନୁସାରେ, ଗୀତ ଗାଇ ଅଭ୍ୟାସ କଲେ ଖଣ୍ଡ ମଣ୍ଡଳରେ କୁଆ ରହିବେ ନାହିଁ । ମୁହଁରେ ଭୁରୁଡ଼ ବାଉ-ଟ୍ରୁଷୀ ତାହାଙ୍କର । ଆଜ ସବୁଗୁଣ ତାଙ୍କର ଭଲ ବୋଲି ଲୋକେ କହନ୍ତି । କିନ୍ତୁ ସନ୍ଦେହ କରନ୍ତି, ଗାଁରେ ମଝିରେ ମଝିରେ କାହାର ଛାହାର ଗୋଟେ ଅଧେ ଖାସି ଚୋରି ହୋଇଯାଏ, ସେ ସବୁ-ଯାକ ଖୋଜିଲେ ହୁଏତ ପଟ୍ଟନାଏକଙ୍କ କୁମରଙ୍କ ପେଟ ଭିତରୁ ବାହାରିବ ।

ମଦନ ପଟ୍ଟନାଏକଙ୍କର ଦୁଃଖ ସେଇ ପୁଅ ଲାଗି । ଦାଣ୍ଡରେ ଘାଟରେ ମେସ୍ତ୍ରେ କହନ୍ତି, ପୁଅଟା ହେଲେ ଯୋଗ୍ୟ ହୋଇଥାଆନ୍ତା ! ଦଇବ ଗ୍ରହବଳରେ ଭଲକୁ ସୋଡ଼ାମୁହାଁ ପୁଅ ଜନମ ହୁଅନ୍ତି । କିନ୍ତୁ ପୁଅ ଭିତରେ ଯେମିତି କିଛି ଅଯୋଗ୍ୟତା ଅଛି ବୋଲି ଅନ୍ତତଃ ତାଙ୍କ ରୂପକୁ ଦେଖି କେହି କହିବ ନାହିଁ । ଦିବ୍ୟ ସୁନ୍ଦର ପୁରୁଷ । ବେଶ୍ ଉଜଳ ତାଉଲ୍ ପୋଷାକ ଖୁବ୍ ଅଧୁନିକ । କେବଳ ସେଇ ପାନ କଲିକ ତାଙ୍କ ଅଯୋଗ୍ୟତାର ଚଳନ୍ତି ସାକ୍ଷୀ ହେଲେ ଯଦି କହିବାକୁ କେହି ସାହାସ କରିବ କରିପାରେ ।

ହାତରେ ସୁନାଘଡ଼ି । ଛାତିରେ ଫାଉଣ୍ଟେନପେନ୍—ସୁନା ବୋତାମ ପଞ୍ଜାବୀରେ । ଗୋଡ଼ରେ ପାମ୍ପ ଶୁ । କୃଷ୍ଣ କାନଠା ଝୁଲ ପଣରୁ ଢିଲା ଅଣ୍ଟିମସ୍ତ ହେଲଯାଏ ଜନତ ହୋଇ ଆସିଲାଣି । ନିଶ ହଲକ ମଧ ସରୁ ପାତଳ ହୋଇ ମନୋରମ ଦିଶୁଛି । ସନ୍ଧ୍ୟାହେଲେ ହାତରେ ଝଇ ବଣୀ ଚନ୍ଦ୍ର ଉଦଅ ପର ଝଳାଉଠେ ।

ତା ସତ୍ତ୍ୱେ ଓ ଘରଟାରୁ କ୍ରମେ କ୍ରମେ ଶିରୀ ତୁଟି ଗୁଳି-ଯାଉଛି, ସମସ୍ତଙ୍କର ଅଲକ୍ଷିତରେ ଯେମିତି । ତାକୁ ରୋକିବାପାଇଁ ସତେ କି କାହାର ସାଧ ନାହିଁ ।

ତେଣେ ମିଶ୍ରଙ୍କଘରେ ମାଟିରୁ ଅଠ୍, ଅଠ୍ରୁ ଟିଳପକା, ଟିଳପକାରୁ ଇଟା କାନ୍ଥ—ଇଟାକାନ୍ଥରୁ କୋଠାଘର ତିଆରି ହେବାରେ ଲାଗିଲାଣି । ଏମିତିକି ମିଶ୍ରଙ୍କ ଅମଳ ପାଞ୍ଚଟକିଆ ମୂଣ୍ଡ ଭାଗୁ ମହାନ୍ତି ଓରଫ ଭାଗୁ ପଟ୍ଟନାୟକଙ୍କ ଭଙ୍ଗା ଝାଟି ମାଟି କାନ୍ଥ ଉପରେ ବାଲି ପଲସ୍ତରା ଦିଆଗଲାଣି । ତା ଉପରେ ପୁଣି ଚୂନ ମରା-ହେବ, ଆଉ ଟିକେ ଦହାତ ଅଲକତରା ଲଗାଇ ଉଇ ଖିଆରୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଘରକୁ ଗୋଟିଏ ନୂଆ କଳେବର ହେବାର କଥା ।

ମଦନ ପଟ୍ଟନାଏକଙ୍କ ଜମିଦାରୀ କେତେଖଣ୍ଡ କିଣିବା ପରେ ମିଶ୍ର ଆପଣଙ୍କ ମୁଣ୍ଡଟା ଟିକାରେ ବୋଧ ବୋଲି ବାଜୁଛି । ମା ଯେତେ ସାବଧାନ କଲେ ବି ସେ ମୁଣ୍ଡଟା ଯାଗାରେ ଶିକା ଅଧାନ୍ତା କହ-ବାରେ ଲାଗିଥାଏ । ବାହାରେ ମିଶ୍ରଙ୍କ ମୁଣ୍ଡରେ ଶିକା ଛୁଉଣ—ଭିତରେ ମିଶ୍ରଙ୍କ ମୁଣ୍ଡ ଶିକାରେ ବାଜୁଛି । ଶେଷକୁ ମା ବାଧ୍ୟହୋଇ ଘରର ଶିକାଟାକୁ ବି ଛଡ଼ାଇ ପକାଇଲେ । ପ୍ରସ୍ତାବ ଉଠିଲା, ମିଶ୍ର-ଙ୍କର ଛୁଆ ପିଲା ହେଉନାହାନ୍ତି—ଅନ୍ତତଃ ଗୋଟିଏ ପୁଅ ନ ହେଲେ କୁଳ ଉଦ୍ଧାର ନାହିଁ ।

ମାଙ୍କର ସବୁ କଥା ମାନାହେବ । ଏମିତ କ ବୟସ ହୋଇ-ଗଲେ ମଧ ଏଇ କୁଳରକ୍ଷା କଥାଟିରେ ଭଗବାନ ମିଶ୍ର ଅବାଧ୍ୟ ହେବ ନାହିଁ । କନ୍ତୁ ସେ ଜମିଦାରୀକୁ ବଳିଦେବା କଥାଟା ମିଶ୍ରେ ଆଗରେ ଆଦୌ ବୁଝିପାରୁ ନାହାନ୍ତି । ବାହ୍ମଣ କଣ ଏମିତ ଶବୁଦରେ ବାହ୍ମଣ ହୋଇ ରହିଥିବେ ? କେବଳ ଚୂଡା ଦହି ଦାନ ଭୋଜନକୁ ଭାଜନ ହୋଇ ପଡ଼ିଥିବେ । ଆଜ ଦୁଧରୁ ଶଦ, ଦହିରୁ ମଣିନଉକ କରଣ ଖଣ୍ଡାୟତମାନେ ଇସ୍ତମୁଗସ୍ତି ପଙ୍କା କରି ଖାଉ-ଥିବେ ! ତଥାପି ମା ଯେତେବେଳେ କହୁଛନ୍ତି, ଘର ଉପରେ ଯବ ଗୋଟାଏ ବଜ୍ର ଆସି ପଡ଼ିଗଲା, ଏଇ ଜମିଦାରୀ ଶଣା ଲାଗି, ଗୋଟିଏ କଛୁ ପ୍ରାୟଶ୍ଚିତ୍ତ କରିଦେବା ଉଚିତ । ବହୁ ଋତ୍ଵିକ ସାର ମତେ ଠିକ ହେଲା, ସେ ବର୍ଷଠରୁ କାଳୀମୂର୍ତ୍ତି ଆଜ ଗୃହେ ଅନ୍ତୁଳ ବଡ଼ ହେବେ । ଅଜ୍ ଗୃହସ୍ତର ଘିଅ ଅଧିକ ହୋମ ହେବ । ଗୃହଟା କୁଷ୍ମାଣ୍ଡ ବଳି ପଡ଼ିବ ଓ ଗୃହରୁ ଚଣ୍ଡୀ ଅଧିକା ପାଠ ହେବ ।

ଏମିତ ପ୍ରାୟଶ୍ଚିତ୍ତ ଏ ବଂଶରେ ଅନେକ ହୋଇଗଲାଣି । ଫଳରେ ପ୍ରଥମେ ଯେଉଁ ଆକାର ମୂର୍ତ୍ତି ଗଢ଼ା ହୋଇଥିଲେ ତଗ୍ରଣ ବର୍ଷ ଭିତରେ ଅନ୍ତତଃ ମୂଳମୂର୍ତ୍ତିଠାରୁ ଦୁଇଗୁଣା ଉଚ୍ଚ ହୋଇଗଲେଣି ।

ସେ ବର୍ଷ ଖୁବ ଧୂମ୍‌ଧାମରେ କାଳୀପୂଜା ଗ୍ଲଲା । ହାକିମ ହାକିମମାନେ ନିମନ୍ତ୍ରଣ ପାଇ ଆସିଛନ୍ତି । ଚୌଧୁରୀ ଭଗବାନ ମିଶ୍ର-ଙ୍କର ସନିବନ୍ଧ ଅନୁରୋଧ କେହି ଏଡ଼ାଇ ନାହାନ୍ତି । ମାନ ଭଦ୍ରତା ଖାତିରରେ ଆସିବାକୁ ବାଧ୍ୟ ହୋଇଛନ୍ତି । ନ ଆସିବାଟା ଅଭଦ୍ରତା ଅସଭ୍ୟତା ହୁଅନ୍ତା । ଆଧୁନିକ ଶିକ୍ଷିତ ହୋଇ ନିମନ୍ତ୍ରଣ ରକ୍ଷା

ନ କରନ୍ତେ କେମିତି ! କିନ୍ତୁ ଖାଇବାରେ କାହାର ଇଚ୍ଛା ନାହିଁ । କେବଳ ମାତ୍ର ପତର ଜଗି ବସିଛନ୍ତି । ତେବେ ଜଣେ ଦୁଇଜଣ ବେହିଆପଣ କରି ଖିରି ମାଗି ଖାଉଛନ୍ତି । ସମସ୍ତେ ସେହି ଲୋକଙ୍କର ଏକ ମୁଖରେ ପ୍ରଶଂସା କରୁଛନ୍ତି—ଏମିତି ଲୋକଙ୍କୁ ଖୋଇଲେ ପୁଣ୍ୟ ଅଛି, ଆନନ୍ଦ ଅଛି — ଖାଦ୍ୟର ଉପଯୁକ୍ତ ସମ୍ମାନ ଏମାନେ ଦେଖାଇପାରନ୍ତି ।

ସେଇ ପ୍ରଶଂସା ସ୍ରୋତରେ ଆଉ କେତେଜଣ ପାଣି ବି ପାଇ ଯାଉଛନ୍ତି । କେହି କେହି ତୀକ୍ତ ଲକ୍ଷ ହେଇ ପଡ଼ୁଛନ୍ତି । ବଡ଼ ବଡ଼ ବାବୁମାନେ ବେଶୀ ଖାଇ ପାରନ୍ତି ନାହିଁ, କିଏ ମସଲା ଖାଏ ନାହିଁ, କିଏ ମାଛଖାଏ, ମାଂସଖାଏ, କିଏ ମାଛ ମାଂସ ନ ଖାଇ କେବଳ ଅଣ୍ଡା ଖାଏ ଇତ୍ୟାଦି ବାହାନାରେ ବିଶେଷ ଦୃଷ୍ଟି ଆକର୍ଷଣ କରି ଖାଦ୍ୟ ସହିତ ଅନୁରୋଧ ଉପରୋଧ ମଧ୍ୟ ଖାଇବାରେ ଲାଗିଛନ୍ତି ।

ଚୌଧୁରୀ ଭଗବାନ ମିଶ୍ର ବ୍ରାହ୍ମଣ ଲୋକ । ସେ ବା ଏତେ କଥା, ଏତେ ପ୍ରକାର, ଏତେ ଆଦର ଅଭ୍ୟର୍ଥନା, ଏତେ ପ୍ରକାର ଭୋଜନ ଦ୍ରିଷ୍ଟାନର ବନ୍ଦୋବସ୍ତ କରନ୍ତେ କିମିତି ? ହାକିମ ଅଫିସେ ବହୁ ଅନୁଯୋଗ ଫଳରେ ତାଙ୍କର ଦକ୍ଷ ସେରସ୍ତାଦାରଙ୍କୁ ପଠେଇ ଚୌଧୁରୀଙ୍କୁ ସାହାଯ୍ୟ କରୁଛନ୍ତି । ତାଙ୍କରି ଫର୍ଦ୍ଦ ଅନୁସାରେ ଭୋଜନର ବ୍ୟବସ୍ଥା ହେଉଛି । ସାଙ୍ଗକୁ ଅଛନ୍ତି ଧୁରନ୍ଧର ସ୍ୱଗୁ ମହାନ୍ତି ଓ ଫ ଭାଗିରଥୀ ପଟ୍ଟନାୟକ ।

ଚୌଧୁରୀ ଭଗବାନ ମିଶ୍ର ୫୦ଖଣ୍ଡ ମଉଜା ଭିତରେ ଜଣେ ପ୍ରସିଦ୍ଧ ଲୋକ । ପୂର୍ବ ଦାରୋଗା, ସବ୍‌ଇନ୍‌ସପେକ୍ଟର ପାଖରୁ ଆରମ୍ଭ କରି ଚଉକିଆ ପର୍ଯ୍ୟନ୍ତ ସମସ୍ତେ ମିଶି ସବୁଦିନେ ମିଶ୍ରଙ୍କ ଘର କୁଣିଆ । ଆଜି ତ ସବୁଦିନେ କାଳୀ ପୂଜା ।

ଭଗବାନ ମିଶ୍ରେ ଜମିଦାରୀ କିଣିବା ପରେ ମଧ୍ୟ ମଦନ ପଟ୍ଟନାୟକଙ୍କ ଉପରେ ଅନୁଗ୍ରହ ରଖି ସୁଧଶୁଦ୍ଧ ଟଙ୍କା ବାକି ପଡ଼ିଗଲା । ତମସୁକ ଫେରାଇ ଦେବାକୁ ହେଲେ ଅନ୍ତତଃ ଆଉ ୫୦୦୲ଟଙ୍କା ଅତି ଜଣା ପକ୍ଷେ ଆବଶ୍ୟକ । ଭୃଗୁ ମାହାନ୍ତି କିନ୍ତୁ ମଦନ ପଟ୍ଟନାୟକଙ୍କୁ ଜବାବ ଦେଇ ଅଛନ୍ତି ଯେ, ସେ ଯେମିତି ହେଉ ମହାଜନଠୁ ଟଙ୍କାତକ ଛୁଡ଼ କରେଇ ଦେବେ । ଆଉ ଯେପରି ଜମିଦାରୀ ଖଣ୍ଡେ ନ ଯାଏ ।

ଭୃଗୁ ମାହାନ୍ତିଙ୍କର ଏତିକି ଦୟା ପାଇଁ ମଦନ ପଟ୍ଟନାୟକ କୃତକୃତ୍ୟ ହେଲେ । ତଥାପି ସେ ବିଶ୍ୱାସ କରି ପାରୁ ନ ଥିଲେ । କିନ୍ତୁ ଭୃଗୁମାହାନ୍ତି କଣ୍ଠରେ କ୍ଷଣକ ପାଇଁ କେମିତି ଦୟା ବସିଲା କେଜାଣି ସେ ମିଶ୍ରଙ୍କ ଆଗରେ ଯାଇ ପ୍ରସ୍ତାବ କଲେ—"ମିଶ୍ରେ ଆପଣ ଜମିଦାର ହେଲେ, ମାତ୍ର ଜମିଦାର ଲେଖି ଗୋଟାଏ ଉପାଧି ତ ରହିବା ଉଚିତ ।"

ମିଶ୍ରଙ୍କୁ କଥାଟା ଭଲ ଲାଗିଲା । ତଥାପି ସନ୍ଦେହ ମନରେ ପଚାରିଲେ—"ବାପ ଦାଦାଙ୍କର ତ ଉପାଧି ନାହିଁ—"

ଭୃଗୁ ମାହାନ୍ତି ପ୍ରତିବାଦ କଲେ—"ବାପ ଦାଦା କ'ଣ କେବେ ଜମିଦାର ହୋଇଥିଲେ ! ବଂଶରେ ଯଦି କେହି ନାମ କଲା ତେବେ ତହିଁରେ ବାପ ଦାଦାଙ୍କର ଅଧିକ ଗୌରବ ତ । ଆପଣ କଣ ବୁଝୁଛନ୍ତି ?"

ମିଶ୍ରେ ବୁଝିଗଲେ । ଭୃଗୁ ମାହାନ୍ତି କହିଲେ—"ଭଗବାନ ମିଶ୍ରେ ବୋଲି ବୋଲାଇଲେ ଜମିଦାର ଭଗବାନ ମିଶ୍ର ବୋଲି କିଏ ବୁଝିବ । ଏମିତି କେତେ ଭଗବାନ ମିଶ୍ରେ ନାହାନ୍ତି କି—ରାମଚନ୍ଦ୍ର ଆଉ ରାମ ଭଣ୍ଡାରୀ ? ଚୌଧୁରୀ କି ମହାପାତ୍ର ଏମିତି ଗୋଟାଏ କିଛି ନ ରହିଲେ ଚଳିବ କିମିତି ।"

ପ୍ରଶ୍ନ ଉଠିଲା ଛେଣିକି ଉପାଧି ତ ଗଛରେ ଫଳେ ନାହିଁ । ଉପାଧି ଗୋଟାଏ କୋଉଠୁଁ ଆସିବା ଉଚିତ—କେହି ଜଣେ ଦେବା ଉଚିତ । ଭୃଗୁ ମାହାନ୍ତି କହିଲେ ଉପାଧି ସରକାର ଦିଅନ୍ତି । ସେ କାଠିକର ପାଠ । ବଡ଼ ହାକିମଙ୍କୁ କଚ୍ଛି କଚ୍ଛି ଗୃହା ରୋଗୀ ବୋଲି ଦେଉଥିଲେ ପଞ୍ଚଦଶବର୍ଷରେ ଗୋଟାଏ ରାୟସାହେବ ପଦବୀ ମିଳିବ ଚେଷ୍ଟା ପଛରେ ଦେଖାଯିବ । ସେମିତି ଉପାଧି ହାଡ଼ି ମେହେନ୍ତର ବି ପାଇଛନ୍ତି । ଆମ ଦେଶ ଲୋକେ, ଛତିଶପାଟକ ଜାତି ଯେଉଁ ଉପାଧିକୁ ମାନିବେ ସେମିତି ଉପାଧି ସିନା ହେବା ଉଚିତ । ରାୟ ସାହେବ—ରାୟ ସାହେବ—ଆମେ କି ସାହେବ ହେବା ? ଆମେ ତ କଳାଲୋକ । ଆପଙ୍କ ମାନର—ଚଉଧୁରୀ, ସାମନ୍ତ, ପହ୍ଲାପାତ୍ର—ଏଣୁ ଏମିତି ଗୋଟେ ଉପାଧି ଯଦି ମିଳନ୍ତା !

"କିନ୍ତୁ ସେ ଉପାଧି ଦେବ କିଏ ? ତାର ମଧ୍ୟ ବନ୍ଦୋବସ୍ତ ଭୃଗୁପଟ୍ଟନାୟକ କହିଦେଲେ । ଆଗ କାଳରେ ଉପାଧି ମିଳୁଥିଲା ରଜାରାଜୁଡ଼ାରୁ । ଆଜିକାଲି ଧରିବାକୁ ଗଲେ ରଜା ଆମର ସେଇ ଜମିଦାର ଛଡ଼ା ଆଉ କିଏ ? ତେବେ ଏ ଜମିଦାରଗୁଡ଼ାଙ୍କର ଆଉ କି ମାନ ମହତ ଅଛି । ଏମାନଙ୍କର ସମାଜରେ ଆସନ କେଉଁଠି ? ମଦନ ପଟ୍ଟନାୟକ ଖାଲି ଭୃଗୁ ପଟ୍ଟନାୟକ ବୋଲାଉଛି ସିନା, ନ ହେଲେ କେଉଁ ଗୁଣରେ ସେ ଭଗବାନମିଶ୍ରଙ୍କ ଆଗେ ଠିଆ ହେବ—ପାଖ ଭିଡ଼ ପାରିବେ ନା । ତାଙ୍କୁଇ ସରମ ଲାଗିବ ନାହିଁ । ତଥାପି,ଯେତେ ହେଲେ ଜମିଦାର ତ । ଆଜି ନାହିଁ,କାଲି ଥିଲା ତ ! ଆଜି ଖାଲି ଉପାଧି ସାର ହୋଇ ଯିଏ ବସିଛି—ସିଏ ପୁଣି ଆନକୁ କି ଉପାଧି ଦେବେ ଗୋଟାଏ । ମାନିବା କଥା । ତଥାପି ଲୋକଙ୍କୁ ଭଣ୍ଡିବାପାଇଁ ତାଙ୍କୁ ଧରିବାକୁ ପଡ଼ିବ । କଣ କରାଯିବ । ଯେତେ ଗରିବ ହେଲେ ବି ପାଞ୍ଚ ଲୋକେ ମାନନ୍ତି ତ ।

ମିଶ୍ରେ ବି ସ୍ୱୀକାର କଲେ—ହଁ ଉଚିତ କଥା । ଯଦି ଗାଁ ଲୋକେ କହିବେ ସେ କଣ ଅଭ କଥାରୁ ବାହାରି ଯିବେ ? ହବ ତ ମଦନ ପଟ୍ଟନାୟକଙ୍କୁ ଅନୁସରଣ କରିବାକୁ ହେବ । ଆଉ ଉପାୟ କ'ଣ ?

ଯେ ବର୍ଷମତେ ମିଶ୍ରଙ୍କ ମୁଣ୍ଡରେ ଶିରପା ନ ବାନ୍ଧନ୍ତୁ—ପଞ୍ଚୁ ଆଣି ସଭା ଡାକି ସନନ୍ଦ ନ ଦିଅନ୍ତୁ—ସେ ସବୁ କଲେ ଯିନା ଲାଜଲାଗିବ ମିଶ୍ରଙ୍କୁ—ଯଦି ଅନ୍ତତଃ ଜମିଦାରୀ କାଗଜପତ୍ର ସେରସ୍ତାରେ ମୁତଇନ କରିଦିଆଯାଏ—ମିଶ୍ରଙ୍କ ନାମ ଅଗରେ କି ପଛରେ ଗୋଟାଏ କିଛି ଯୋଡ଼ି ଦିଆଯାଏ ତା ହେଲେ ବି ଧୀରେ ଧୀରେ ସେଇଟା ପ୍ରଘଟ ପ୍ରଚଳ ହୋଇଯିବ ।

କଥା ପଡ଼ିଲା—ସେଇଟା କି ଉପାଧି ହବ ।

ଚଉଧୁରୀ କି ସାମନ୍ତରାୟ ନ ହେଲା ମହାପାତ୍ର କିମ୍ବା ଗୋଟାଏ—ଯଉଁଟା ମିଶ୍ରଙ୍କର ପସନ୍ଦ ହେବ ।

ମିଶ୍ରେ ଚୌଧୁରୀଟାକୁଇ ପସନ୍ଦ କଲେ । ବିଶେଷତଃ ବ୍ରାହ୍ମଣ ଯେତେବେଳେ, କିନ୍ତୁ ମଦନ ପଟ୍ଟନାୟକ କଣ ମାନିବେ ?

ଉପାୟ ଚନ୍ଦ୍ରବାବୁ ଭୃଗୁମାହାନ୍ତି ସର୍ବଦା ପ୍ରସ୍ତୁତ । ସେ ପରାମର୍ଶ ଦେଲେ, ନ ହେଲା ବଢ଼ି ବଢ଼ି ମଦନ ପଟ୍ଟନାୟକ ତମସୁକ ଗଣ୍ଡା ଫେରେଇ ନେବାକୁ କହିବ—ନ ହେଲା ଏବର ଦେଇ ଦେବା ସେମିତି । ମୁହଁ ମୋଡ଼ିଲେ ଚଳିବ ନାହିଁ । ଟଙ୍କା ତମାମର ମାମଲତ । ଏତେତେ ତନଖ ନେଇ ସାରିଲେଣି । କଉଁ ଷତି ହୋଇଯାଉଛି ଆମର ?

ଶେଷବେଳକୁ ଭଗବାନ ମିଶ୍ର ରାଜି ହୋଇଗଲେ । ଚଉଧୁରୀ ଉପାଧିଟା ପାଇଁ ଗୁରୁଟା ଅଷରପାଇଁ ଗୁରୁଣ୍ଡ । କିନ୍ତୁ ନ ହେଲେ ତ ନ ଚଳେ ।

ଭୃଗୁ ମହାନ୍ତିଙ୍କୁ ବ ଦୁଇ ପଇସା କର ପଇଠ କରିବାର ସୁବିଧା ମିଳିଗଲା । ମଦନାଧଙ୍କ ପାଖରେ ଯାଇ ଭଲେଇ ହେଇ କହିଲା—ମଦନାଧ, ସେ ତମସୁକଖଣ୍ଡ ଫେରେଇ ନବ ନାହିଁ !

ମଦନ ପଟ୍ଟନାୟକ ଅଜ୍ କଣ କହିବେ । ହଜାରେ ଟଙ୍କା ନେଇ ଦଦ୍ଦହଜାର ଟଙ୍କାର ହ୍ୟାଣ୍ଡନୋଟ ଲେଖି ଦେଇଥିଲେ । ସେ ପୁଣି ମଝିରେ ତମସୁକରେ ପରିଣତ ହେଲା । ଜମି ଗଲା, ଜମିଦାରୀ ଗଲା—ସେଇ ତମସୁକ ଖଣ୍ଡକ ପାଇଁ । ତେବେ ବ ସେ ତମସୁକ ଫେରିଲା ନାହିଁ—ତାହା ବୋଲେ ଗଲା ଯେ ଅଉ ବାହୁଡ଼ି ଫେରିଲା ନାହିଁ । ଅଜ ପୁଣି ଶେଷକୁ ଭୃଗୁମହାନ୍ତି ଅସିଛନ୍ତି ଟଙ୍କା କରିବାକୁ—କଟା ଘାରେ ଚୂନ ଦେବାକୁ ।

"ଟଙ୍କା କାହିଁ ଏଇଟଲେ ?" ପଟ୍ଟନାୟକେ ପଚାରିଲେ ।

"ଟଙ୍କା ? କି ଟଙ୍କା ? କେତେଟଙ୍କା ଇମିତ ଯେ—"

"ଅନ୍ତତଃ ପାଞ୍ଚଶହ ତ ନଗଦ ଦରକାର ।"

"ହଁ, ତା ତ ଠିକ୍ । ତେବେ—ଅଚ୍ଛ—ଶହେଟା ଟଙ୍କା ଯୋଗାଡ଼ କରି ପାରିବ ନାହିଁ ?"

ମଦନ ପଟ୍ଟନାୟକ ଆଖି ମିଟି ମିଟି କରି ଭୃଗୁ ମହାନ୍ତିଙ୍କ ଆଡ଼କୁ ଚାହିଁଲେ । ଏ କ'ଣ ଭୃଗୁମହାନ୍ତି କଥା କହୁଛନ୍ତି ?

"ଶହେଟା ଟଙ୍କା ମ ! ଟଙ୍କା ଶହେଟା ଦେଇ ପାରିବ ନାହିଁ ? ବାକି ଟଙ୍କା କଥା ମୁଁ ବୁଝିବି । ତମର ଏତେ ମୁଣ୍ଡ ଘୂରେଇବା କାହିଁକି ? ଭୃଗୁ ଥାଉଁ ଥାଉଁ ମଦନାଧ ପୁଣି ଚିନ୍ତା କରିବ ? ତମେ ସିନା ମୋତେ ବିଶ୍ୱାସ କରୁ ନ ଥାଅ । ନଇଲେ ତମ ପାଇଁ ମୋ ହୃଦ ଯେତେ କାନ୍ଦେ ତା ମା ଗଙ୍ଗାକାଳୀ ଜାଣନ୍ତି ।"

ଭୃଗୁ ମହାନ୍ତି ସତକୁ ସତ କାନ୍ଦ ପକାଇଲେ ।

"ଆହା, କାନ୍ଦୁଛ କାହିଁକି ଭୃଗୁ, ମୁଁ କଣ ମନା କରୁଛି ଟେବେ, ତୁ ମୋ ପାଇଁ ବ୍ୟସ୍ତ ହେଉ ନାହିଁ ଟେବାଳ।"

"ହେଉଛି ନିଅ ତମ ତମସୁକ।" କହି ଭୃଗୁମାହାନ୍ତି ବେଖୋଡବରେ ତମସୁକ ଖଣ୍ଡ କାଢ଼ି ମଦନଅଟ୍ଟନାୟକ ଆଡକୁ ଫିଙ୍ଗିଦେଲେ।

ପଟ୍ଟନାୟକେ ବିଶ୍ୱାସ କରିପାରୁ ନ ଥିଲେ। ତମସୁକ କାଗଜ ଆଡକୁ ହାତ ବଢାଇ ପାରୁ ନ ଥିଲା। ଅଧା ଅବିଶ୍ୱାସ ଅଧାବିଶ୍ୱାସ, ଅଧା ଆଶା ଅଧ ନିରାଶାରେ ସେ ହାତବଢ଼େଇ ଆଣି ଦେଖିଲେ ସତକୁ ସତ ତମସୁକଟା।

"ହେଲା ଏଥର—ଭଗିରଥୀ ପଟ୍ଟନାୟକଙ୍କୁ ଆଜ କଥାରେ ଯେତେ ଇଚ୍ଛା ସେତେ ଦୋଷ ମିଛରେ ସେ ଦଅନ୍ତୁ ପଛେ, ହେଲେ ଧପ୍‌ପାବାଜ, ଦଗଲବାଜ, ମିଛୁଆ ଲଞ୍ଚୁଆ ବୋଲି କେବେ କହି ପାରିବ ନାହିଁ କେହି। ଦେଖିଲ ତ ଦରକାରବେଳେ ଜବାବ୍ ଦେଇ ପାଇଥିଲି ବୋଲି ସେଥର ତମ ଜମିଦାରୀ ନିଲାମରୁ ରହିଗଲା। ଏବେ ତ କହୁଛ ଉଷରେ—"

ଥିକିଏ କାଶ କାଶି—ଗଳା ସଫା କରି ପୁଣି ଆରମ୍ଭ କଲେ—"ହଁ ବେଶୀ ନୁହେଁ ଟଙ୍କା ଶହେଟା। ମୁଁ ଭଗବାନ ମିଶ୍ରଙ୍କୁ କହିଲି—ମଦନ ପଟ୍ଟନାୟକ ଛୋଟିଆ ଜଣେ ନ ହୋଇଥିବା। ତୁ ତାଙ୍କୁ ଏଇ ତିନି ଗୁରିଶହ ଟଙ୍କା ଛାଡ଼ି ଦେଇ ପାରିବୁ ନାହିଁ? ଯେତେ କୁହ ବାହ୍ମଣଟା ନିହାତି ଖଣ୍ଟ ନୁହେଁ—ହୃଦୟ ଅଛି। କହିଲା, ଟଙ୍କା ଶହେଟା ଦିଅନ୍ତୁ; ଖାଲି ଖାଲି ତମସୁକଟା ଫେରେଇ ଦେଲେ ଲକ୍ଷ୍ମୀ ଗୁଲିଯିବେ। ମୁଁ ବି ମାନିଗଲି।"

ମଦନ ପଟ୍ଟନାୟକ ରାଜିହେଲେ। କିନ୍ତୁ ନଗଦ ଶହେ ଟଙ୍କା ତ ସାଙ୍ଗେ ସାଙ୍ଗେ ଗଣି ଦେଇହେବନି କମିତ। ଅଢ଼ୁଆଟା ବୁଝିପାରି ଭୃଗୁ

ମହାନ୍ତି "ହଁ' ସେ ତମ ପାଖରେ ରହିଲେ ଯେ ମୋ ପାଖରେ ରହିଲେ ସେ। ଯେତେବେଳେ ଖୁସିହବ ଦବ। ନ ଦେଲେ ଏମିତି କିଛି ଚଳେଇ ପଡ଼ନାହିଁ।"

"ନା-ନା-ସେ ଗୋଟେ କଥା—ମୁଁ କାଲି ପଠେଇ ଦେଇ ଦେବ।" ମଦନ ପଟ୍ଟନାୟକ ଭାରି ଲଜ୍ଜିତ ହୋଇ କହିଲେ।

"ହେଲା—ହେଲା—ସେଇ ହେଲା! ତମେ ଦେବ ବୋଲି କହିଲେ ସେ ଦେଲା ସାଙ୍ଗେ ସମାନ। ମୋର କିଛି ଆପତ୍ତି ନାହିଁ।"

ତା ପରେ ତେଣିକି ମୁହଁ ବୁଲେଇ-କଲେଇ ଆଙ୍ଗୁ—ଭାଗୁ ମହାନ୍ତି ଡାକିଲେ—"ହଁ, ମର୍ଦ୍ଦରାଜ କୁଆଡ଼େ ଗଲ ହୋ ମର୍ଦ୍ଦରାଜ! ମର୍ଦ୍ଦରାଜ ନା ଗର୍ଦ୍ଦରାଜ—ଯେତେବେଳେ ଖୋଜିବ ସେତେବେଳେ ନାହିଁ। କି ଜାତିଆ ନାଏବ ରଖିଚ ହେ ମଦନବାବୁ! ମୁଁ ହେଇଥିଲେ-ହୋ ମର୍ଦ୍ଦରାଜେ!

ନାଏବ ମର୍ଦ୍ଦରାଜ ସେ ଘରୁ ଉଠି ଆସିଲେ। ଆଖିର ପୁଅ ଦୁଇଟା ଗେଣ୍ଡୁଙ୍କ ଭଳି ଚଷମାର ହିଡ଼ା ଉପରୁ ଉଙ୍କିମାରି ମୁହଁଙ୍କ ପରି ଦିଶୁଥିଲା। କାନ ଅଜ କଲମର ସପର୍କଟା ଅନ୍ତର୍ଦ୍ଧାନ ମନେ ହେଉଥାଏ। ଯେମିତି ଶୁଣିଲା କଥାକୁ ବେଦର ଗାର କରି ଲେଖିବା ପାଇଁ କଲମଟା ଠିକ ବସିଚି। ଦେଖିବା କଥାକୁ କଏ ପଚାରେ? ସତକୁ ମିଛ କରିବା ଓ ମିଛକୁ ସତ କରିବା ତାର ଧର୍ମ।

"ହେଇଛି ତ ମର୍ଦ୍ଦରାଜେ! ଅନେକ ଦିନ ବଞ୍ଚିବ। ହଉ ଆସ ଆସ, ହଁ କ'ଣ କହୁଥିଲ କି ଏଇ ତମସୁକ ଖଣ୍ଡ ବାବୁଙ୍କ କ୍ୟାସ ବାକ୍ସରେ ରଖିଦେଇ ଆସିଲ। ଆଉ ଗୋଟେ କଥା। କ'ଣ କହୁଥିଲ କି, ସେ ଗୋପାଳ ପୁର ଚକ ଖଜଣାଟା ତ ଦିଆ ହେଇନାହିଁ। ମୋଟା ମୋଟି ଗୋଟାଏ ହିସାବ କରି ନ ହେଲା ଖଣ୍ଡେ ପାଉତି କାଟି

ଦଅ । ଝଙ୍କା ତ ଅଛୁ, ମଜୁରି ହେଇଯିବ—ନାଁ କଣ କହୁଛ ମଦ-ନାଦ !”

ମଦନ ପଟ୍ଟନାୟକଙ୍କ ଭୃଖୁମ ଟିକିଏ ଭାଙ୍ଗିଗଲା । ଭାବୁଥିଲେ ମାହାଳିଆ ମାହାଳିଆ ତମସୁକ୍ ଟା ଫେରସ୍ତ ମିଳିଗଲା ବୋଲି । ଏଇଲେ ଶେଷ ଦେଖା ତ ଖଜଣାକୁ ମଜୁରି ଯିବ ।

ମର୍ଦ୍ଦରାଜେ ହିସାବ ପତ୍ର ପାଇଁ ଡେଣିକି ଯାଉଥିଲେ—ଭାଗୁ ମାହାନ୍ତି ପୁଣି ପଛରୁ ଡ଼ାକ ପକାଇଲେ—“ହଇ ହୋ ମର୍ଦ୍ଦରାଜେ, ପାଉଛ କାହା ନାଁରେ କାଟିବ କହିଲ ?”

ମର୍ଦ୍ଦରାଜେ ଟିକିଏ ଆଶ୍ଚର୍ଯ୍ୟ ଆଉ ବିରକ୍ତି, ଦୁଇ ମିଶେଇ, ଚୂନ ଖଇର ମିଶିଲା ପରି ଭାଙ୍ଗ ପିଆ ରଙ୍ଗ ଆଖିରେ ନୂଆ ଢଙ୍ଗରେ ଚାହିଁଲେ—“ଭଗବାନ ମିଶ୍ରଙ୍କ ଖଜଣା ତ ?”

“ହିଁ, ହିଁ, ଭଗବାନ ମିଶ୍ରଙ୍କ ଖଜଣା । ଭଗବାନ ମିଶ୍ରେ କ’ଣ ହବୁଦିନେ ଭଗବାନ ମିଶ୍ରେ ହୋଇଥିବେ । ଏଣିକି ଜମିଦାର ହେଲେ । ହାକିମ ହୁକୁମଙ୍କ ସାଙ୍ଗରେ ବସିଲେ ଉଠିଲେ । ପାଞ୍ଚଦଶ ଜଣରେ ଜଣେ ହେଲେ ନାଁ ହେଲା । ମନଖୋରବ ବଢ଼ିଲା—କ’ଣ ନା ଯାହିଁ ଭଗବାନ ମିଶ୍ରକୁ ଯେମ୍ନି ଭଗବାନ ମିଶ୍ର । ଅହୋ ଚୌଧୁରୀ ଭଗବାନ ମିଶ୍ର ବୋଲି କହ । ଯାଅ ଯାଅ ଚୌଧୁରୀ ଭଗବାନ ମିଶ୍ରଙ୍କ ନାଁରେ ପାଉଛ କାଟି ଦିଅ—ମନେ ରହିଲା ? ଚୌଧୁରୀ ଶ୍ରୀ ଭଗବାନଚନ୍ଦ୍ର ମିଶ୍ର—ଚୌଧୁରୀ-ଚୌଧୁରୀ, ହେଲା ? ସବଡିଭିଜନାଲ ମାଜିଷ୍ଟ୍ରେଟ ସାହେବ ନଅ ଦିନ ନିଜେ ‘ଚୌଧୁରୀ ଚୌଧୁରୀ ଓଃ ଚୌଧୁରୀଙ୍କି କି ମାନ୍ୟ ଦେଖିବ—ଗୁଣୀ ନ ହେଲେ କି ଗୁଣ ଚିହ୍ନେ—ରାଜ୍ୟଯାକ ଲୋକଙ୍କ ସାଙ୍ଗେ ଚୌଧୁରୀ ବୋଲି ପରିଚୟ ଆଳାପ କରେଇ ହୋଇ ଗଲେ ନା । ଆଜି କଣ ଭଗବାନ ମିଶ୍ରେ ଖାଲି ଭଗବାନ ମିଶ୍ର ହୋଇ ଅଛନ୍ତି । ଅଧ କିଏ

ଚୌଧୁରୀ କହୁ ନ କହୁ ନିଜେ ହିଁ କାମ ତ କହୁଚନ୍ତି । ତମ ଆମ କୁହା ନକୁହାକୁ କିଏ ପଚାରୁଚି—ହଁ ମନେ ପଡ଼ୁଛି ଚୌଧୁରୀ ଶ୍ରୀ ଭଗବାନଚନ୍ଦ୍ର ମିଶ୍ର—ସାକିନ୍ ।

"ହଁ, ହଁ, ମନେ ପଡ଼ୁଲା" କହି,ମର୍ଦ୍ଦରାଜ ପୁଣି ଥରେ ମଦନ ପଟ୍ଟନାୟକଙ୍କ ମୁହଁକୁ ଗୁହଁଲେ । ଭୃଗୁ ମାହାନ୍ତି ଥରେ ଗଡ଼ିଯାଇ କହିଲେ—ଯାଃ ଯାଃ ଭାଗିରଥି ପଟ୍ଟନାୟକ ଯେମିତି କହୁଛି ସେମିତି କର—ଭେଲକା ମାରି ଅନେଇ ରହିଲେ । ଆହୋ ଭାଗିରଥି ପଟ୍ଟନାୟକ କିଏ ଆଉ ମଦନ ପଟ୍ଟନାୟକ କିଏ ? ବାପ ପୁଅଙ୍କ—ଏକା ରକ୍ତ ତ ।"

ମଦନ ପଟ୍ଟନାୟକ ନୀରବରେ ସମ୍ମତି ଜଣାଇଲେ ।

ଭୃଗୁ ମହାନ୍ତି ଗର୍ଜନଟାଏ ଛାଡ଼ି ବୀରତ୍ୱ ଦେଖେଇ ଦେଲେ —"ହେଁ —ବଡଘର ପିଲା ବଡର ମର୍ଯ୍ୟାଦା ଜାଣନ୍ତି—ମଦନ ପଟ୍ଟନାୟକ, ଭଗବାନ୍ ମିଶ୍ରର ମର୍ଯ୍ୟାଦା କଣ ବୁଝିବେ । ଏ ଗୁଡ଼ାକ ଏଙ୍କ ବାପ ଅଜାଙ୍କ ଅମଳରେ ଜାଣିଥିଲେ ନା କେବେ ଜାଣିବେ—ମରିକି ସାତଥର ଜନମ ହେଲେ ବି ନୁହେଁ ।"

ଭୃଗୁ ମାହାନ୍ତି ଜମିଦାର ଘରୁ ପାଉଡି କାଟି ନେଇ ଗଲେ । ଖାତା ପତ୍ର ସିହା ଖତିଆନରେ ନାମ ବଦଳି ଯାଇ ଉପାଧି ଦରଜ ହେଇଗଲା । ମଦନ ପଟ୍ଟନାୟକ ତମସୁକ ଫେରି ପାଇଲେ । ଭୃଗୁ ମାହାନ୍ତି ମଝିରେ ମଧ୍ୟସ୍ଥ ହୋଇ କିଛି ଫାଉ ବି ମାରିନେଲେ । ଏବଂ ସବୁଠାରୁ ବଡ଼ କଥା ହେଲା ବାହ୍ମଣ ମହାଜନ, ସକାଳୁ ଉଠି ଯାହା ନାମ ଧରିଲେ ଦଣ ଥର ରାଧାଶ୍ୟାମ ନରେନ୍ଦ୍ର କହିବାକୁ ପଡ଼େ । ସେଇ ଭଗବାନ ମିଶ୍ରେ ଚୌଧୁରୀ ଶ୍ରୀ ଭଗବାନ ମିଶ୍ରରେ ପରିଣତ ହୋଇଗଲେ ।

କାଳୀପୂଜା ଦିନ ଭୃଗୁ ମହାନ୍ତି ମିଶ୍ରଙ୍କ ଘରୁ ଗାଁକୁ ଫେରୁଛନ୍ତି। ରାତି ଦୁଇ ତିନି ଘଡ଼ିଏ ହବ। ବାଟରେ ପଡ଼ିବ ଶୁକ୍ରୁଆ ଘର। "କିରେ ଶୁକ୍ରୁଆ" ବୋଲି ହାକଟାଏ ମାରି ଦେଇ ଭୃଗୁ ମହାନ୍ତି ନ ରହି ଲମ୍ବ ଦଣ୍ଡ ପକେଇ ଯାଉଥିଲେ। ଶୁକ ଦଉଡ଼ି ଆସିଲା ଘରୁ। ମୁହଁରୁ ଗୁଣ୍ଡା ସରି ନାହିଁ।

"ହଁ ସାଆନ୍ତେ!"

ଭୃଗୁ ମହାନ୍ତି ଫେରିପଡ଼ି ପୁଚ୍ଛିଲେ—"କିରେ କ'ଣ କରୁଥିଲୁ କି?"

"ଖାଉଥିଲି ସାଆନ୍ତେ।" ଶୁକ୍ରୁଆ ଜବାବ ଦେଲା।

"ଘରେ ଆଉ କିଏ କିରେ?"

"ନାହିଁ ହଜୁର ଆଉ କିଏ? ବାଇସ୍ତା ମା ତ ଏକୁଟିଆ ବଇଠ।"

"ହିଁ ହୁଁ। ସତ କହୁଛୁ? ଆଜି କାହା ପାଟି ମୋତେ ଶୁଭିଲା ପରି ଲାଗିଲା।

"ନାଇଁ ସାଆନ୍ତେ। ଆପୁ ନାହାନ୍ତି ଦେଖିପିବେ।"

"ଆରେ ଦେଖିବ ଗୋଟାଏ କ'ଣ ମ? ତୁ ତ ନାହିଁ କରୁଛୁ—ସେଇ ହେଲା ନା? କଥା କଣ କି ତୋର କଥା—ତୋର ଭଲ ପେଇଁ କହୁଛି—କାଲେ କିଏ ଶୁଣି ନେବ। ଏଇଥିପାଇଁ କହୁଥିଲି। ହଁ କଣ କହୁଥିଲି କି—ଭଲା କଥା ମନେ ପଡ଼ିଗଲା—ତୁ ସେ ଟଙ୍କା ପଚିଶଟା ଆଜି ଶୁଝିଲୁ ନାହିଁ। ସୁଧ ଅସଲକୁ ଶହେହେଲୁ ବଳି ଗଲାଣି। ପୂନିଅ ଦିନ ବେଳଡ଼ରେ ତୋ ନାଁ ଉଠିଗଲା। ଚୌଧୁରୀ କହିଲେ—'ଦିଅ ନାଲିସ୍ କରିଦିଅ!' ମୁଁ କଥାଟାକୁ ଚପେଇ ରଖିଛି। ଏମିତି ଆଉ କେତେଦିନ ଚପେଇ ବ? ତୁ ଏବେ ଏଣିକି

ଗୋଟେ ବାଟ ଭର କହୁ, ଝଙ୍କା ଶୁଝିବାକୁ । ମୁଁ ତୋତେ ଚୋର-ଚୋର ଘରେ ଖୋଜା ଯାଉଛ । ତୋରତ ଦେଖା ନ ମିଳିଲେ ଗଲ । ଆରେ,ଘରେ ବହୂ ଭୁଅସୁଣୀ କୁ ଏକଲା ଛାଡ଼ ଦେଇ ରାତିଅଧ ଯାକେ କେଉଁଠି ବୁଲୁଥାଉ ? ଆଜିକାଲିକା ଯୁଗଟା ଭଲ ନୁହେଁରେ ଶଳ । ହେଉଥିବୁ ଟି ! ହଁ, କ'ଣ କହୁଥିଲ ? ସେଇ ଝଙ୍କା କଥା । ବଳଦ ତ କଣିଲ । ଗୃହ ବସ୍ତୁ କଲୁ । ବର୍ଷେ ଗଲା, ଦ ବର୍ଷ ଗଲା—ତନିବର୍ଷ ଯାଇ ଗୃହବର୍ଷକୁ ପୂର୍ଣ୍ଣ ଠେକିଲଣି । ଉମାଦ ହେଲଣି କ ହେବା ଉପରେ । ଏବେ ଭଲ ଦବା ନବାର ନା ଝଉନୁ ହେଲେ । ଜମି ଯାହୁ ଗୁଣ୍ଡେ ମାଣେ ଅଛୁ ସେ କ ଶେଷକୁ ନିଲାମ ହେଇ ଯିବ । ଇଏ କୋଉଁ ବୁଦ୍ଧିର କଥା ! ହଇ ରେ !"

"ନାହିଁ ସାଆନ୍ତେ, ଏଇଥର ଧାନ ଅମଲ କର ଯାହା କିଛି ହବ ନିଜେ ଯାଇ ଦେଇ ଆସିବି—କହୁବାକୁ ଧଉବ ନାହିଁ—ନ ହେଇଛ ତ ମୋ ନା ଶୁକ ନୁହେଁ ।"

ହଁ, ହଁ ବେ ଶଳା, ଦେଖି ନାହିଁ ମୋତେ ଦେଖାଉଚୁ । ଦାତା ପୁରୁଷ—ଦେଇ ଦେଇ ଗଲା ବାର ବରଷ । ଆବେ ଧାନ କେତେ ? କେତେ ଧାନ ଅମଲ କରିବୁ ? କେତେ ଖାଇବୁ ? କେତେକର ଲୁଣ ତେଲ କରିବୁ ? କେତେକର କରଜ କରଜା ଗଣ୍ଡେ ବେଢି ହବ ଦ' ଏଗ୍ରାଣୀ ଯାକ । ଆଜ ବାଦ୍ ବାକୀ ବଞ୍ଚିବ କେତେ ? ଯେ ସେଥିରୁ ତୁ ଜମିଦାର ଖଜଣା ଦେଇ ପୁଣି ସାଉକାର ପାଉଣା ଶୁଝିବୁ ।"

"ଯାହାହଉ—ଉପାୟ କ'ଣ ଆଉ ସାଆନ୍ତେ !"

" ଏଃ ଉପାୟ କ'ଣ ସାଆନ୍ତେ—ଉପାୟ କଣ ସାଆନ୍ତେ ! ଏ ଶାଳା ଚଣ୍ଡକ । ଯେମିତି ମୋ କଥାକୁ ଶୁଣିବା ପାଇଁ ଝାଙ୍କ ବସିଛୁ । ମୋ ବୋଲ ଯେବେ ମାନିଥାନ୍ତୁ ତେବେ କଣ ତୋ ଦଶା ଏଇଆ-

ଥାଆନ୍ତା ଯଜ ? ଅବସ୍ଥା ଫେରିଯାଇ ନଥାନ୍ତା । ଆରେ ଓଲୁ, ମୁଁ ସେ ଦିନରୁ କହୁଛି କଲିକତା ଯା—କଲିକତା ଯା ! କେତେଥର କହିଲେ କ'ଣ ଶୁଣିବୁ ତୁ । ନଈଆ, ଶିବ, ଭିକାରୀ, ସମସ୍ତେ ତ କଲିକତା ଗଲେ । ଦି ପଇସା କମେଇ ଘରକୁ ପଠେଇଲେ । ତୋ ପରି କିଏ ଘରର ମାଇପକୁ ଧରି ବସିଛି । ତୁ ବାହା ହେଇଚୁ ନା ଦୁନିଆରେ ଆଉ କେହି ବାହା ହେଇନାହାନ୍ତି ? ଘରୁ ବାହାରକୁ ଗୋଡ଼ କାଢ଼ିବାକୁ ନାହିଁ । ଏମିତିଆ ଲୋକକୁ ଉପାସ ଦଶିବ ଭଲା କଉଁଠୁ ? ”

କଲିକତା !

ଶୁକୁରର ଛାତି ଥରି ଉଠିଲା । ହଁ, ଏ ଗାଁରେ ଅନେକ ଲୋକ କଲିକତା ଯାଉଛନ୍ତି । କଲିକତା ଯାଇ ବଡ଼ ଲୋକ କିଏ ହେଉଛି କାହିଁ ? ବଡଦେଇପୁରର ଫଲେଇ ଘର ପଲେଇରୁ ମହାପାତ୍ର ପାଇବାକୁ ଯାଉଛନ୍ତି । କାଛରେ ଖଣ୍ଡେ ଇଛ ହୋଇ ଖପରପଦା ଦାସ ଘର ଦାସ କରଣ ବୋଲାଉଛନ୍ତି । ପଇସା ତାଙ୍କୁ କାଢ଼ ଆଣି ଦେଉଛି । ସେ ତ ଶହେ ପଚିଶରେ ଜଣେ । ସମସ୍ତଙ୍କ ଭାଗ୍ୟରେ କାହାକ ସଫେଇ ଠିକା ମିଳୁଛି, ନା—ଗୁ ଉଠି କାନ୍ତରାଟି ମିଳୁଛି ? ଖୁବ୍ ହେଇ ହେଇ ସାହେବ କୋଠିରେ କି କୋଉ ଅଫିସରେ ବେହେରାଗିରି, ବଙ୍ଗାଳୀ ବାଡରେ ଗିନ୍ନୀଙ୍କ ଦେହଲଗା ଚାକର, ନହେଲା ପଇସା କିଛି ଜମେଇ ପାନ ଦୋକାନ ଖଣ୍ଡେ—ଶେଷକୁ କିଛି ନ ମିଳିଲେ—ଠେଲା ଭଲ । ଏଇ ତ ପେଷା । ... ... ...

ଅଟମଇଆ ଅନ୍ଧକାରରେ ଗାଁଟା ବୁଡ଼ି ରହିଥିଲା । ଦୀପାଳି ସବୁ ନିଭି ନିଭି ଆସିଲାଣି । କୁଆଡ଼େ ହୋ ହା ନାହିଁ । ମଝିରେ

ଠାଏ ଠୋଠା ଶୁଭୁଛି । କଏ ବାଙ୍କ ବଢେଇୟା ଗୋଟେ ଅଧେ ଫୁଟେଇ ଦଉଚ ବା ଫୁଲୁସା ଜସମା ଫଟକାର ବାରୁଦ ନେଇ ଢୁଇ କ ହାତେଲଟାଏ ଛାଡ଼ ଦେଉଛି ।

ଶୁକୁରକୁ ଅନ୍ଧାର ଡଣିଲା । ତା' ପୀଢ଼ା ଉପରେ ଗୋଟେ ଅନ୍ଧାରିଆ ଭୂତ ଯେମିତ ହାଁ କରି ବସିଛି । ଶୁକୁରର ମନେ ପଡ଼ିଗଲା ରତନା ଆଉ ପାଞ୍ଚମାସର ଛୁଆ ବାଇୟା । ନିହାତ ବଢ଼ଟେ ହଲେଇ ଛୁଆପର । ତା' ଛାତି ଭିତରୁ ଗୋଟେ କମ୍ପ ଫୁଲ୍ ଫୁଲ୍ ଉଠିଲା । ନା— ନା—ସେ କଲିକତା ଯିବନାହିଁ—ଯିବନାହିଁ ।

"ଆରେ ବୋକାଙ୍କ ପରି ଗୃହିଁଚୁ କଣ ? ଜମି ଦଖଣ୍ଡ ଗଲେ ଶେଷକୁ ଭିକ ମାଗିବୁ ଯେ ।"

ଭଗୁ ମାହାନ୍ତି ପାଟିରୁ ଆଉ ଥରେ ଶବଦ ବାହାରିଲା ବେଳକୁ ଶୁକୁର ଚମକି ପଡ଼ିଲା । ତା ଧ୍ୟାନ ଭାଙ୍ଗିଗଲା । ମୁଣ୍ଡ କୁଣ୍ଡଉ କୁଣ୍ଡଉ ସେ କହିଲା—"ଛୁଆପିଲାଙ୍କୁ ଛାଡ଼—ବହୂଟା ଏକୁଟିଆ—କୋଳରେ ପାଞ୍ଚମାସର ଛୁଆ ।"

"ଏତେ ମାଇପ ସୁଆଗ ଯଦି ଅଛି ତ ପଡ଼ିଥା । ତୋ କରମ ତୁ ଭୋଗିବୁ । ଯାହାର ଯେତେବେଳେ ଯାହା ଭୋଗିବାର ଥାଏ, ପର କହିଲେ କେତେ,ଆପଣା ଲୋକେ କହିଲେ କେତେ । ରାବଣ ବି ମନ୍ଦୋଦରୀ ବିଭୀଷଣଙ୍କ କଥା ଶୁଣି ନ ଥିଲା । ହଉ ତୋ କରମ ତୋର । ମୁଁ ଗୃଲିଲି ଏବେ ।"

ଏଥର ଶୁକୁର ଅହୁରି ନରମ ହୋଇ କହିଲା—"ସାଆନ୍ତେ ତମେ ସିନା କହୁଚ, ମୁଁ କଣ ଅଜାଡ଼ିଯାକେ ଘରେ ବସି ଥାଆନ୍ତି । ମୁଁ କଣ ଘରେ ବସିବା ଲୋକ ? ଏଇ ତନି ବର୍ଷ ହେଲା, ମନେ ମନେ ନିଇତ ବାହାରୁଛି । ହୋଇ ପାରୁଛି କାହିଁ ! ମହାଜନ ଦେଏଣି

ଶୁଝିଲ୍ ନାହିଁ କି ଜମିଦାର ଖଜଣା ଛୁଟେଇଲ୍ ନାହଁ । କଲିକତା ଯିବାକୁ ହେଲେ ପୁଣି ଦଶ ପନ୍ଦର ଦରକାର ହବ ତ ।”

“ହଁ, ହଁ ସେ ତ ଠିକ୍ କଥା । କିନ୍ତୁ ମନ ଥିଲେ କ'ଣ ନ ହୁଏ । ମନର ମୂଳେ ଏ ଜଗତ । ମନ ଅସଲ । ମନ ଥିଲେ ଧନ ଆପେ ଆସି ପାଖରେ ପହଞ୍ଚିବ । ପଇସା କେଇଟା ପୋଗେଇ ଦିଅନ୍ତୁ ନାହିଁ କଲିକତା ଯିବାକୁ ?”

“ଏକାଠି, ଏତେ ଟଙ୍କା କେଉଁଠୁ ପାଇବ ?”

ଏଁ—କଉଁଠୁ ପାଇବ— କଉଁଠୁ ପାଇବ ! ଆରେ ପଗ୍ଳା-ଥିଲ ଭୃଗୁ ପଟ୍ଟନାୟକଙ୍କୁ କେବେ ?—କଉଁଠୁ ପାଇବୁ ? ମାଗିଥିଲ ଭୃଗୁ ପଟ୍ଟନାୟକ ବୁଦ୍ଧି ! ତୁ ସେଇ ବୁଢ଼ୀ ମାଙ୍କ ସାଙ୍ଗରେ ପଡ଼ିଥା । ଟେଙ୍କା ପାଇବୁ ଯେ ଦନେ !”

“ସା:ଆଜ୍ଞେ, ମୁଁ କେବେ ତମ କଥାରୁ ବାହାର ଯାଇଛି କହିଲ ? ତମେ ମୋତେ ମିଛୁଆରେ ଦୋଷ ଦେଉଛ ସିନା । ମୋ କରମ, ତମ ଧରମ ।”

ଆରେ କରମ ଧରମ କିଛି ନାହିଁ । କଲିକତା ଯିବାର କଥା ଯିବୁ । ମନ ଥିଲେ ଏଇଲେ ବାହାର—ନହେଲେ କାଲି । କାଲି କି ବାର ? ଗୁରୁବାର, ନା ? ଅଚ୍ଛା, ପନ୍ଦରଦିନ ଶୁକ୍ରବାର ହେଉଛି— ପନ୍ଦରଦିନ ସକାଳେ ବାହାରି ଯା । ପାଞ୍ଚ ଦଶଟା ଟଙ୍କା ତ ?”

“ହଁ, ପାଞ୍ଚ, ଦଶଟା ହେଲେ ଚଳିଯିବ ।”

“ଏଇଥି ପାଇଁ ଏତେ ଚିନ୍ତା ପଡ଼ିଛୁ ନା ? ଭୃଗୁ ପଟ୍ଟନାୟକ ବଞ୍ଚି ଥାଉଁ ଥାଉଁ ଶୁଣୁଛି ନାହାକର ଟଙ୍କା ପାଞ୍ଚଟା ପାଇଁ କଲିକତା ଯିବା ଅଟକି ଯିବ ? ହେଁ, କି କଥା କହୁଛୁରେ ତୁ ଶୁଣୁଛି ! ଅଚ୍ଛା

ଧୂଳି, ମୁଁ ପାଉଛୁ । ତୁ କିଛି ଚିନ୍ତା କରନୁ ନାହିଁ । ହେଉଛି ହେ, ମାସକୁ ମାସ ଏକା ଟଙ୍କା ପଠେଇ ଦଉଥିବୁଟି ? ଘରର କୁଆପୁଞ୍ଜିଟା । ନ ହେଲା ଏବେ ମୋର ନାଁରେ ପଠେଇ ଦେବୁ । ମୁଁ ଆଣି ରତନାଙ୍କ ଦେଇ ଦଉଥିବ । କିଛି ଚିନ୍ତା ନାହିଁ । ଭଲ ମନ୍ଦକୁ ଭଗବାନ ଅଛନ୍ତି । ମୁଁ ସବୁ ଠିକ୍ କରିଦେବ । ତୋତେ କିଛି ଭାବିବାକୁ ପଡ଼ିବ ନାହିଁ ।

ମାଅଙ୍କୁ ଦଣ୍ଡବତଟାଏ କରି ଶୁକୁରା ଫେରି ଆସିଲା ଘରକୁ । ସେଇ ଅନ୍ଧାର ଘର । ସେଠି ଆଉ ଆଲୁଅ ଜଳିବ କେବେ ? କାଉଁ-ବଅା କାଠିରୁ ଗୋଟାଏ ଧରି ଜାଳିବ ବୋଲି ନିଆଁ ବତକୁ ଫୁଙ୍କି ବସିଲା ।

କଲିକତା ! ସେ ଯାଇନାହିଁ କଲିକତା କେବେ । ଦେଖି-ନାହିଁ ହାବଡ଼ା ପୋଲ, ଶୁଣିଛି । କଲିକତା ଗପ ଶୁଣୁଛି । ଭୂତ-ଗପ କଲିକତା କଥା କଥାରେ ଶୁଣିଛି । ମା କାଳି ! ସେ ମନେ ମନେ ଡାକିଲା । ସେମିତ ମା କାଳି ଜିଭ କାଢ଼ି ବସିଛନ୍ତି ସେଠି । ତାଙ୍କୁ ମୁଣ୍ଡିଆ ନ ମାଇଲେ ସେଠୁ ବରତ ଅସିବା କଥା ସେମିତ ସେମିତ । ସେ ମନେ ମନେ ମୁଣ୍ଡିଆ ମାଇଲା ।

ମୁଣ୍ଡିଆ ମାରି ବ ଲୋକେ ମରୁଛନ୍ତି । ଦେବତା ପୂଜା କରି ବ ମଣ୍ଡପ ଭୂତ ହୋଇଛି । ଶୁକ ଥାର ଜଠିଲା । ଚିନ୍ତାଟିଏ ହୋଇଥାଏ ସେ । ରେଲଗାଡ଼ି ନୂଆ ହୋଇ ଖୋଲିଥାଏ । ଦାଣ୍ଡଘାଟ ବରଷ ଧାଇ ଥାଏ କ ନାହିଁ । କଲିକତା ଯିବା ହାଉଆ ବହିଲା । ସେ ହାଉଆ କନ୍ଥ ସେତେ ଜଦଣ୍ଡ ନ ଥିଲା ସେତେବେଳେ । କିଏ କେମିତ ଜଣେ ଅଧେ ଯାଉଥିଲେ । ଯିଏ ଯାଉଥିଲେ ସେ ପାଠ ଫେରିବେ ବୋଲି

କାହାରି ଭରସା ନ ଥିଲା । ସେଥର ସପନା ସାଆନ୍ତ ପୁଅ ମୋହନ ଭେଣ୍ଡି ଅଷ୍ଟା ପହଲ୍ ହୋଇ କଲିକତା ଗଲା । ଆଉ ଆଖପାଖ ଦୁଇ ତିନି ଖଣ୍ଡ ଗାଁରୁ ବି ଲୋକ ଅଧି କଲିକତା ଯିବାପାଇଁ ରୁଣ୍ଡ ହେଲେ । ସାଙ୍ଗ ହୋଇ ଯିବେ । ସପନା ସାଆନ୍ତ ଗୋବିନ୍ଦ ଜୀଉଙ୍କ ପାଖରେ ନଡ଼ିଆ ଜଷ୍ଟୁଭା ଭୋଗ ଲଗେଇ ସମସ୍ତଙ୍କୁ ବାଣ୍ଟିଲା । ଗାଁ ଯାକ ଛୁଆଙ୍କ ହାତରେ ଭୋଗ ଦେଲା । ଦାଣ୍ଡ ଦୁଆରେ କଳସ ବସିଲା । ଶଙ୍ଖ ହୁଳହୁଳି ଉଚ୍ଛୁଳିଲା ପଡ଼ି ସପନା ସାଆନ୍ତ ଘରୁ । ମାଈପେଙ୍କ ଆଖିରୁ ଲୁହ ଗଡ଼ି ପଡୁଥାଏ । ମୋହନାର ମା', ଖୁଡ଼ି, ଭାଉଜ, ସାଇର ଅଜି ମେକଟେ ମାଇପେ—ସମସ୍ତଙ୍କ ଆଖିରେ ଲୁହ । ସମସ୍ତେ କାହୁନୁଥାନ୍ତି ପଡ଼ । ଟେଟଣେ ଶଙ୍ଖ ବି ବାଜୁଥାଏ—ହୁଳହୁଳି ବି ପଡ଼ୁଥାଏ । ଗାଁ ଯାକ ଫିଟେଲ ଓଅଁମାନେ ମେ ରି ଚୈଳି ଟ ଅନ୍ତି କେଇଜଣ ମୁଖିଆ ମୁଖିଆ ଲୋକଙ୍କ ଆଗେ ଆଗେ ବଲ ମଣ୍ଡି ବର-ଗଛ ଯାଏ ବଟେଇ ଦେବାକୁ । ମୋହନା ହାତରେ ସପନା ସାଆନ୍ତ ଖୁଚୁରା ପଇସା ଏତେ ଖଣ୍ଡେ ଦେଲା । ସବୁ ଛୁଆଙ୍କ ହାତରେ ଦ ଦ'ପଇସା କରି ମୋହନା ନିଜେ ବାଣ୍ଟି ଦେଇଗଲା । ଖୁଲୁସ ଛୁଆ ହୋଇଥାଏ । ସେ ବି ଅଣିଥିଲା ଦ' ପଇସା । ପାଞ୍ଚ ଦଶ ଛୁଆ ସେ ପଇସାକୁ ଏକାଠି କରି ବଣଭୋଜି କରିଥିଲେ । ତାର ମନେ ଅଛି ।

କିନ୍ତୁ ମୋହନା ଆଉ ଫେରିଲା ନାହିଁ । ଗଙ୍ଗାସ୍ତି ହୋଇ-ଗଲା ତାର ସେଇଟି । ଖାଲି ଭାଷା ଖଣ୍ଡେ ଆସିଲା ହାସପାତାଳରୁ । ହାସ ପାତାଳ—ହାସ ପାତାଳ ! ଖୁଲୁସର ସ୍ମୃତି ପୁଣି ଥରେ ଜଗିଲା । ପାତାଳପୁରୀର ଗୋଟାଏ ଭୟଙ୍କର ରୂପ କଳ୍ପନା କରି ସେ ଡରିଗଲା । ହାସ ପାତାଳଟା ଯେମିତି ସେଇ ପାତାଳକୁ—ଯମପୁରକୁ ବାଟ ଫିଟିଛି ! ନା—ନା, ସେ କଲିକତା ଯିବ ନାହିଁ ।

ରଉଣୀ ଥନରେ କ୍ଷୀର ନାହିଁ । ରଉଣୀଙ୍କ ସେ ଦ'ଔଳା ପେଟ-ପୁରା ଖାଇବାକୁ ଦେଇ ପାରୁନାହିଁ । ଛୁଆଟି ମୁହଁରେ ଦୁଧ ଟୋପାଏ ପଡୁନାହିଁ । ସେଜ, ଖତୁଆଣୀ ଦେଇ ତିନି ଗୃହମାସର ଛୁଆଟାକୁ ବଞ୍ଚେଇବ ସେ ? ଛେଳିଟିଏ ପାଳିଥିଲା ସେ ଅବା ଥିଲେ ଦୁଧ ଟିକେ ପୋଷେ ମୁହଁରେ ଲଗୁଥାନ୍ତା ବାଇଆର । କପାଳକୁ ଛେଳି-ଛୁଆଟାକୁ ଶିଆଳ ଟାଣି ନେଇଗଲା । ଶିଆଳର ବି ବେଶି ଅହ୍ୱାନ୍ତା ଏଇ ଗରିବଙ୍କ ଉପରେ । ଗରିବ ଗୁଡ଼ାକ ପଶୁ ଠେଲି ଙ୍କ କଅଣ ଏଇ ଶିଆଳ କୁକୁରମାନେ ବେଶି ବାଦ ଲଗାନ୍ତି ତାଙ୍କର ସାଙ୍ଗରେ । ଉଚ୍ଚଲୋକ ଯେ ମଣିଷଙ୍କ ଉପରେ, ତାଙ୍କ ସାଙ୍ଗରେ ପଞ୍ଝ ଦେବାକୁ ସାହସ ହୁଏ ନାହିଁ ପଶୁ ଜାତିର ।

ଛୁଆଟା ଗଲା ଗଲା, ମାଆଟା ହେଲେ ବଞ୍ଚି ଥାଆନ୍ତା । ଛେଳିଟି ଏତେ ସୁଧାର ଯେ ଚର ଟାଣିଲେ ଦୁଧ ଦବ । ହାୟ, ସେ ବି ରାତି ଅନ୍ଧାରରେ କାହା ପେଟରେ ହଜମ ହୋଇଗଲା । ଆଉ କାହାଁଙ୍କ କାହା ନାଁରେ କିଏ କହିବ ! ସେହି ପଞ୍ଚନାହାକ ପଡ଼ା —ପଞ୍ଚନାହାକପଡାର ଟୋକାଗୁଡ଼ାକ ଏତେ ଚଗଲା—ଚଗଲା ଟୋକାଗୁଡ଼ାକ ଛେଳିଟାକୁ କାଟି ଖାଇଗଲେ ରାତାରାତି । ଚିହ୍ନ ବର୍ଣ୍ଣ ବି ମିଳିଲା ନାହିଁ । ଶୁକୁରି ଖବର ପାଇ ତୁନି ପଡି ରହିଲା । କାହାକୁ କଣ କହିବ ? ସାଆନ୍ତ ସାହି ।

ସେ କଲିକତା ନ ଯାଇ ଆଉ କଣ କରିବ ? କିଏ ତା' ଦୁଃଖ ଶୁଣିବ ? ଏଇ ଗାଁ । ଅନ୍ଧାର ଭିତରେ ମଲା ମୁରୁଦାର ଭଳି ଦିଶୁଇ ପଡ଼ିଛି । କୁଇ କଣା ଗଳିଷି ଦିଆଲି ଅପେଇ ଆ ଅଲୁଅରେ । କାଁଅ ଲାଲି ଜକୁ ଜକୁ କରୁଛି ଠାଏ ଠାଏ, ଡ଼ାହାଣୀର ଆଖି ପରି, ଡାହାଣୀ ଅଲୁଅ ପରି ।

ଶୁକୁରା ଦାଣ୍ଡକୁ ବାହାରି ଆସି ଗାଁକୁ ଚାହିଁଲା । ବାରପଛ ଅଢ଼େ ଲମ୍ବା ବଳ କଅର କଅର ହୋଇ ଭାଗ ଭାଗ ହୋଇ ଶୋଇଛନ୍ତି । ଗାଁଟା ବି ସେମିତି ଖଣ୍ଡ ଖଣ୍ଡ ହୋଇ ଯାଇଛି । ଗାଁ ଭିତରେ ଭିତରେ ଶହେ ପଘାର । ଯେତେ ଭାଇ ସେତେ ଘର । ଯେତେ ଘର ସେତେ ଗାଁ । କେହି କାହାର କିଆରିରୁ ପାଣି ମୁହଁଏ ବି ଛାଡ଼ିଦିଏ ନାହିଁ ଆଉ କାହାକୁ । ସମସ୍ତେ ଅନେଇ ବସିଥାନ୍ତି ସେଇ ଆକାଶ ମାର୍ଗକୁ । ଯାହା ଭାଗରେ ଯେତିକି ବରଷା ପଡ଼ିବ । ମାରସା ଭଳି ଜମିରେ ଟିକିଏ ବଳକାପାଣି ମଡ଼େଇ ଦେବାପାଇଁ ହୁଡ଼କାଟି ଦେବାକୁ ସମସ୍ତେ ନାରାଜ ।

ଗାଁ ଟା କେମିତି ଭାଗ ଭାଗ ହୋଇ ଯାଇଛି । ଏ ଘରେ କିଏ ଫୁଟିଲେ ସେ ଘରକୁ ବାସ ଯାଏ ନାହିଁ । ସେ ଘରର ମଣିଷ ମଲେ ଏ ଘର ହାଣ୍ଡିଶାଳର ହାଣ୍ଡି ମାଧ ଛୁଏ ନାହିଁ । ଏ ଘରେ କେହି ବାଧିକି ପଡ଼ିଲେ ସେ ଘରୁ ମନୁ ମିଶିଲେ ବଡ଼ ଆସେ ନାହିଁ । ସେ ଘରର କବାଟ ଖିଡ଼କି ନିଲାମ ହୋଇଗଲେ ଏଘରୁ ଲୋକ ଦଉଡ଼ି ତାର ନିଲାମ ଧରି ନିଅନ୍ତି, ତାକୁ ପୁଣି ଫେରେଇ ଦେବାକୁ ନୁହେଁ—ଆତ୍ମସାତ କରିବାକୁ ।

ଗାଁ ଖଣ୍ଡ ଖଣ୍ଡ ହୋଇ ଯାଇଛି—ଫାଙ୍କ ଫାଙ୍କ ! ବିଭଜନ ବନ୍ଦୋବସ୍ତର ଅମିନ ଘୁଷ୍ ଖାଇ ଭାଇ ଭାଇ ବାଣ୍ଟି ବସେଇଲା ପରି କିଏ ଯେମିତି ଗାଁର ଗୋଟାଏ ଅଖଣ୍ଡ ଜୀବନକୁ ଖଣ୍ଡ ଖଣ୍ଡ କରି ଫିଙ୍ଗି-ଦେଇଛି ।

ସେ ଦିନ ସପନା ସାଆନ୍ତ ପୁଅ ମୋହନା କଲିକତା ଗଲାବେଳେ ଗାଁରେ ଯିଏ ଯେଉଁଠି ଥିଲା ଦଉଡ଼ି ଆସିଲା । ଗାଁଟାଯାକୁ ଉଠି ଆସିଲେ,

ଛୁଆ ପିଲା ବୁଢ଼ା ଜୁଆନ୍ ବହୁଝିଏ ସମସ୍ତେ । ମୋହନାଙ୍କୁ ବିଦା କରିଦେବା ପାଇଁ — ବାଟରେ ଆସିବାପାଇଁ, ଯଦି କିଏ କେତେବେଳେ କଲିକତା ଯାଏ, କିଏ କୋଉଦିନ କଲିକତାରୁ ତୁରଙ୍ଗ ପେଟରା କନାଗୁଡ଼ିଆ ତେଲବୋତଲ ଧରି ଆସେ ସେ କଥା ତା ଛଡ଼ା, ତା ଘର ଛଡ଼ା ଅଉ କେହି ଜାଣନ୍ତି ନାହିଁ । କେହି କାହାର ଖବର ରଖେ ନାହିଁ । କଲିକତାଟା ହରିବସି ଭଳି ବାଟ ହେଇଚି ।

ତଥାପି ଡର । ତଥାପି କଲିକତା ନାଁରେ ଶୁକୁଲା ଥାନ ଉଠୁଛି । ଏଇଟି — ଏଇ ଗାଁରେ — ଏଇ ଗାଁ ମାଟିରେ ତାର କି ମୋହ, କି ମାୟା, କି ମମତା ସେ ନିଜେ ବୁଝେ ଜାଣେ ନାହିଁ, ତାର କଅଣ ଅଛି ଏ ଗାଁରେ ? ଜମି ଦମାଣ । ସେ କୋଉଠିକି ଯାଇ ଥୋଇ ଯକେରା ଲାଠି, ଦଉଡ଼ ଦଳେ, ଡେଘା ବଳେ, ପଲଣି ବୁଲେଣି, ହେଉଁ ବୁଣା କାଠରେ ମିଶ୍ରି ବଡ଼ ହୋଇ ଦଉଡ଼ ଅଗରେ ଓହଳିଥାଏ ଯେଉଁ ଟୋକାଗୁଡ଼ିକା ତାକୁ ଏପଟ ସେପଟ କଲାପରି ସେ ଅପଣା କର୍ମକୁ ଏପଟ ସେପଟ କରି ଦେଖୁଥାଏ । ହେଁସ ବୁଣି ହେଇଯାଏ । କିନ୍ତୁ କରମ ଲଢେ ନାହିଁ ଆଜ । ଦିନ ଗଡ଼ିଯାଏ କୁଆଡ଼େ ଦିନୁଦିନ ।

ଏଇ ମାଟିରେ ତା ବାପ ଅଜା କେତେ ପୁରୁଷରୁ ସୁନା ଫଳେଇ ଗାଁକୁ ଖାଉଁଲା ଖାଗୁଆ କରି ଯାଇଛନ୍ତି । ଏଇ ମାଟି ଉପରେ ପହିଲ ଅଷାଢ଼ ବରଷା ପାଣିରେ ଶୁଖିଲା ମାଟିର ଉଷୁମ ଗନ୍ଧକୁ ନାକରେ ନେଇ ଆସନ୍ତା ଫସଲର ଅମଳକୁ ସପନ ଦେଖି ଦେଖି ମନ ଫୁଲାଣିରେ ଗୀତ ଗାଇ ଯାଇଛନ୍ତି । ଏଇ ମାଟି ଉପରେ ବନ ମାଉସି, ଝଥା ଉପରେ ଲେପ ଦେଇଗଲାପରି ପଟ୍ଟ ପକେଇ ଦେଉଥାଏ । ଏଇ ମାଟି ଉପରେ ସୁନା ଦଗଦଗରେ ଲହଡ଼ି ମାରିଲା ପରି ନାଲି ନାଲି ଧାନଶିଷା ଛୁଡ଼ି ଫୁଲେଇ ଶାଁ ଶାଁ ଶବଦ କରୁଥାଏ,

ବର୍ଷ ବର୍ଷ ଧରି । ଏବେ ବି କରୁଛି । ଏବେ ବି ସେ ଛାଡ଼ିପାରି ନାହିଁ ଏ ଗାଁଟାକୁ । ଆଜି ବି ସେଇ ମାଟିରୁ ସେଇ ଧାନର ବାସନା କେତେ ଘରର ଗୁରୁବାର ସେଇ ଝାଟୁଲୀରେ ଠାକୁରାଣୀ ହୋଇ ବସୁଛି । ଏଇ ମାଟି—ଏଇ ମାଟି— ଏଇ ମାଟିକି ସେ ଛାଡ଼ିଯିବ କୁଆଡେ଼ !

ବାପ ଗୋସାପ ଚଉଦ ପୁରୁଷ ଏଇମାଟିରେ ମିଶିଛନ୍ତି । ଏ ମାଟି ତ ଆଉ ମାଟି ହୋଇ ନାହିଁ—ତୀର୍ଥ । ବାପ ଦାଦାଙ୍କର ପିଣ୍ଡ । ବାପ ଦାଦାଙ୍କର ଆତ୍ମା ଏଠି ବୁଲୁଛି । ତାଙ୍କ ବଂଶରେ ଯିଏ ଅଧର୍ମ କରିବ ସେ ଆତ୍ମା — ସେ ଦେବତା ସତେ ଯେମିତି ବଜ୍ର ଚଢ଼କ ପକେଇବାପାଇଁ ସବୁବେଳେ ଜଗତା ହୋଇ ଠିଆ ହୋଇଛନ୍ତି । ସେଇ ବାପଦାଦା, ଆଜା ଗୋସାପ ଆଜି ଯେମିତି ଝଡ଼ ଜଳ ନାଲ୍ଲିଟିଆ ଡାଳଗଛ ଶୁଖିଲା ପତର ଉପରୁ ରଡ଼ି ଛାଡ଼ୁଛନ୍ତି—ଧର୍ମଗଲା—ଧର୍ମଗଲା !

ଧର୍ମ କୁଆଡେ ଗଲା ? ଏଠି ତ ମଣିଷକୁ ଚିହ୍ନିବାର ରାସ୍ତା ନାହିଁ—ଧର୍ମଗଲା କିମିତି ? ଗାଁଟା ଉପରେ ଯେମିତି ଗୋଟିଏ ପେଷା ବୁଲୁଛି —ଟଙ୍କା—ପଇସା ଟଙ୍କା । ଗାଁ ଟଙ୍କିଆ ପ୍ରେସିଡେଣ୍ଟ ଜମିଦାର ସାହୁକାର ସମସ୍ତେ ବୁଲେଇଛନ୍ତି ସେଇ ଟଙ୍କାର ଧନ ରାତି ଦିନ । ମଣିଷ ହୋଇ ମଣିଷକୁ ଗୋଡ଼ ମାଟିରେ ବେଖାତର କରି ଯାଉଛନ୍ତି ଏମାନେ । ଟଙ୍କା ପାଙ୍ଗରେ ନିଜେ ଟଙ୍କା ହୋଇ ଯାଉଛନ୍ତି ମଣିଷକୁ ପେଷିବାପାଇଁ, ମଣିଷ ଛାଡ଼ି ଦେଲେ ମଣିଷ ମଣିଷର ଦୁଃଖ ବୁଝୁନାହିଁ । ମଣିଷ ହୋଇ ମଣିଷକୁ ଶୋଷି ପେଷି ଖାଇଯାଉଛନ୍ତି । ଧର୍ମ ଗଲା କୁଆଡେ଼ ! ଧର୍ମ ଯିବ କୁଆଡେ଼ । ଧର୍ମ ବି କଣ ଡରୁନାହିଁ ଏ ପେଷାକୁ ?

ହଁ, ଧର୍ମ ରହିଛି । ସେପେଁଇ ଅମିସାରେ ପଇଆଁ ଖଉ଼ ଢାଳ ବଡ଼ା ବଡ଼ିଙ୍କୁ ଡ଼ାକିଲାବେଳେ ଧର୍ମ ସେମିତ ଜଳଜଳକ ଅନାଇ-ଥାଏ । କାଳୀ ମୂର୍ତ୍ତି ଗଢ଼ି ବୋଦାଟପଣି ବଳେଇ ପକାଉଥିଲା-ବେଳେ ଧର୍ମ ସେମିତ କାଠ ହେଇ— ଯୂପକାଠପରି ଠିଆହୋଇ ଥାଏ । ଧର୍ମ ନାହିଁ ଆଜି ଗଲା କୁଆଡ଼େ ?

ତଥାପି ଏ ଗାଁ । ଖଣ୍ଡ ଖଣ୍ଡ ହେଇଯାଉଛି । ତଥାପି ରତନା-ପରି କେତେ ମାଙ୍କ ଥନରୁ କ୍ଷୀର ଶୁଖିଯାଉଛି । କାହିଁକି ?

ଧର୍ମ କଣ ନାହିଁ ? କଳିକାଳରେ ଧର୍ମ କଣ ନାହିଁ ?

ସପନା ସାଆନ୍ତ ପୂଅ ମଲା । ତା'ଠି ଆସିଲା ପଞ୍ଚଦନ, ସପନା ସାଆନ୍ତ ସେଦନ ମୁଣ୍ଡ ବାଡ଼େଇ ଦେଇ କହିଲା—ଧର୍ମନାହିଁ— ଧର୍ମ-ନାହିଁ—ସତେ କଣ ଧର୍ମନାହିଁ ?

ସପନା ସାଆନ୍ତ ବି ଅଧର୍ମ କରିଥିଲା । ପଞ୍ଚାୟତ ସଭାରେ ସବୁଠୁ ଗରିବ ସେଇ । ଏଇ ଗରିବ ହେବାଟାଇ ଥିଲା ତାର ଅଧର୍ମ । ପରକୁ ଠକି ଶୋଷି ଖାଇବାକୁ ବାଟ ସେ ପାଇ ନ ଥିଲା ବୋଲି ସେ ଥିଲା ଦୋଷୀ,ଅଧର୍ମୀ । ଘର ଖଣ୍ଡିକ ଛପର ହୋଇପାରେ ନାହିଁ ବରଷକୁ ବରଷ । ଅଧେ କାନ୍ଥଡ଼ା ଠିଆହେଲା । ମୂଲ ଲାଗି ଖାଇବାକୁ ନିଜମାଡ଼ । ସମସ୍ତଙ୍କ ଘରେ ଯାଇ ଖିଦମତ କରେ । କାମ କାର୍ଯ୍ୟ ତୁଲାଏ । କାହାରିଠୁ ପଇସାଟିଏ ନିଏ ନାହିଁ । ମାଗେ ନାହିଁ । କିନ୍ତୁ ଯାହାର ଯାହା ହେଲା, ସପନା ସାଆନ୍ତକୁ ଡ଼ାକ ।

ସପନା ସାଆନ୍ତ ଯେ କେମିତ ଚଳୁଛି — ତା' ଦିନ କେମିତ ଯାଉଛି, କେହି ବୁଝନ୍ତି ନାହିଁ । ସପନା

ସାଆନ୍ତ ଯେମିତି ସେମିତି ମଲା—ତା'ର ଆଖି ଆଗରେ ମଲା । ମଡା ଉଠେଇବାକୁ ପୁଣି ଭାଇ କୁଟୁମ୍ବଙ୍କୁ ଡ଼ାକିବାକୁ ପଡଲା । ଗୋଡ ହାତ ଧରି ନେହୁରା ହେବାକୁ ପଡ଼ଲା । ସଂଯନା ସାଆନ୍ତ ଯେବେ ମୁରଦାର ଉଠେଇ ନ ଥିବ, କେତେ ଲୋକଙ୍କ ବପ ଅଜାଙ୍କ ମୁହଁରେ ନିଆଁ ଶୁଣ୍ଢା ଯୋଖି ନଥିବ, ତାକୁ ତା' ମୁହଁରେ ନିଆଁ ଦେବାକୁ କେହି ରହିଲେ ନାହିଁ । ମଶାଣି ଭୂଇଁରେ ସେମିତି ଗଡ଼େଇ ଦେଇ ଆସିଲେ ତାକୁ । କୁକୁର ଶିଆଳ ଖାଇଲେ ତାକୁ ।

ଆଉ ମଦନ ପଟ୍ଟନାୟକ ବାପ ବୁଢ଼ା ଦଖୀକୁ ନାଁ ଧରିଲେ ଖାଇବାକୁ ମିଳିବ ନାହିଁ; ତା ମଡ଼ା କାନ୍ଧେଇବାପାଇଁ ପୁଣି ହୁଡ଼ାହୁଡ଼ି ହେଲେ ଲୋକେ । କିଏ ରଗିଲା, ଲୁଚିଲା, ତା ଭାଗରେ ବୁଢ଼ାକୁ କାନ୍ଧେଇବାର ଭାଗ୍ୟ ପଡ଼ଲା ନାହିଁ ବୋଲି । ହାତ ଟେକି ସେ କାହାକୁ କେବେ ଦେଇ ନାହିଁ ମୁଠେ, ତଥାପି ଧର୍ମ ତାକୁ ସହିଲା ! ଧର୍ମ ତା ପକ୍ଷକୁ ଆଉଜିଲା । ଧର୍ମ ନାହିଁ କେମିତି ?

ଏଇ ତ ଧର୍ମ ! ଯାହାକୁଇ କହନ୍ତି ଧର୍ମବୋଲି !

ତାହେଲେ, ସେ ଅଧର୍ମ ନ କରିବ କାହିଁକି । ସାତପୁରୁଷର ମାଟି ଏଇ ଜନମ ମାଟିକି ପୂଜା ନ କରି ପଳେଇବାଟା ଯଦି ଅଧର୍ମ ହୁଏ ତ ହଉ । ଅଧର୍ମ କରି ଲୋକଙ୍କର କିଛି ଭାସିଯାଇ ନାହିଁ । ଅଧିକା ବଢ଼ନ୍ତି ହେଉଛୁ । ଶୁକୁସ ଅଧର୍ମ କରିବ । ଅଧର୍ମ କାହିଁକି ? ସମସ୍ତେ ଯଦି ଅଧର୍ମକୁ ଧର୍ମନାରେ କହି ଯାଉଛନ୍ତି ସେ ସେଇ ଧର୍ମ କରିବ । ସେ ଗାଁ ଛାଡ଼ିଯିବ !

ବାପ ତାର ମଲାବେଳକୁ ଏକା କହୁଯାଇଥିଲା— ତୀର୍ଥ ସେ କରି ପାରି ନଥିଲା — ମନରେ ତାର ଅବଶୋଷ ରହିଯାଇଥିଲା

ଅନେକ ଦିନରୁ — ମଲାବେଳକୁ ଏକା ଠକ୍ ଠକ୍ କରି କଥା କହୁଲା—ପାଟି ପଡ଼ିଯାଇଥିଲା —ଠିକ୍ ଯାଣଯିବା ଆଗରୁ ସେ ଯେମିତି ଏଇ ପଦକ କଥା କହିବା ପାଇଁ ପାଟି ଖୋଲିଲା—"ବାପା, ତୀର୍ଥ ଏଇ, ଏଇ ମାଟି ଆମର ତୀର୍ଥ —ଆମ ଚଇଦପୁରୁଷ ଯେଉଁ ମାଟିରେ ମରିଚନ୍ତି ସେଇ ଆମର ତୀର୍ଥ— ତୁ ଏ ତୀର୍ଥମାଟିକି ଛାଡ଼ି କଉଁଠିକି ଯିବୁ ନାହିଁ।"

ଶୁକ କାନ୍ଦପକାଇଲା। ଗରିବଙ୍କ ପାଇ ଏଇ ମାଟି ହେଉଛି ତୀର୍ଥ, ସେ ଏ ତୀର୍ଥକୁ ଛାଡ଼ିବ —ସପନା ସାଆନ୍ତ ପୁଅପରି ଆଜ କେଉଁଠି ଗଡ଼ ଫେରିବ। ତା' ବାପ ଗୋସାପ ଯେଉଁ ମାଟିରେ ଦିନି ମାଟିକି ଭକ୍ତି କରିଯାଇଛନ୍ତି ସେ ମାଟି ସାଙ୍ଗରେ ମାଟି ହେବାର ଭାଗ୍ୟ ତାଠୁଁ କିଏ ଛଡ଼ାଇ ନେଇଯିବ। ଯେଉଁ ମାଟିରୁ ତା ପୁଅ ନାତି ଅଧର ଗୋଟେଇ ଖାଇବେ ସେ ମାଟିରେ ତା ଦେହ ମିଶିବ ନାହିଁ। ମଲାବେଳକୁ ସେ ରତନାର ମୁହଁ, ବାଇଆର ହସ ଦେଖି ମରି ପାରିବ ନାହିଁ ? ନାଁ,ସେ ଯିବ ନାହିଁ।

ନାଁ, ସେ ଯିବ ନାହିଁ। ଏକଥା କହିଲାକ୍ଷଣି କିଏ ଯେମିତ ପଛଆଡ଼ୁ ଗୃବୁକ ଲଗେଇ ଚିତ୍କାର କଲା—"ଅଲବତ୍ ଯିବୁ।"

ଗୃହିଁକିନା ଚମକି ପଡ଼ି ସେ ପଛଆଡ଼କୁ ଗୃହିଁଲା। କାହିଁ, କେହି ନାହାନ୍ତି। କେହି ନ ଥିଲେ। ମହାଜନ ନ ଥିଲା, ଜମିଦାର ନ ଥିଲା, ପ୍ରେସିଡେଣ୍ଟ ନ ଥିଲା, ଭଗୁ ମାହାନ୍ତି ନ ଥିଲା—କେହି ନ ଥିଲେ।

ତହିଁ ଆରଦିନ ସକାଳ। ସକାଳୁ ଉଠି ସେ ଗା ଆଡ଼କୁ ବୁଲିଗଲା। ମନେ ମନେ ସେ ଆଜ ପାଞ୍ଚ ପାଡ଼କୁ ପଗୃରି ଠିକ୍ କରିବ—ସେ କଲିକତା ଯିବ କି ନାହିଁ।

ସେ ପାଖରେ କଂସାର ଘର । ଏଠି ଗୃହଘର—ସେଠି ଘରେ—ପଞ୍ଚଘର ଥିଲେ ମୋଟରେ । ଦ ଘଟା ଘର ଭାର ଆଖି ଆଗରେ ଭଜୁଡ଼ ପଡ଼ିଲା । ଗୋଟାଏ ବାଢ଼ରେ ସମସ୍ତେ ଶେଷ । ସଣ୍ଡ ବହୁଟା ବାପଘରକୁ ପଳେଇଲା । ଆଉ ଅସିବାକୁ ନାହିଁ । ଜମିଦାର ସେ ଘରଭଳା ବେୱାରସ ବୋଲି ଦଖଲ କଲଣି । ସେଠି ଏବେ ଖସା ବୁଣା ହେଉଛି । ଆଉ ଘରେ, ଗଲା ଘର-କୋଣିଅରେ—ପାଞ୍ଚକୋଶ ବାଟ ଦୂର ଏଠିକୁ । ଯେ ଗଲା ସେ ଗଲା । ବାକୀ ଦ'ଘର । ସେଥିରୁ ମଣିଷ କଏ ଯେ ପଗ୍ଭରିବ ତାହାକୁ ।

ଗୋଟେ ଉ ପିଲା । ଜମି ବଖରା କର ଯଥାକଥା କ ପେଟ ପୋଷେ । ହେଇ ହେଇ ପଦଆ କଂସର ଗୋଟେ ବୋଲି ମଣିଷ । ସେଇଟା ବ କେମିତ ଅଲଗିଲା ମଣିଷଟାଏ । ବସି କ ସଞ୍ଜସକାଳେ ଖାଲି ଠୁକୁର ଠୁକୁର କରୁଥିବ । କର୍ଣ୍ଣ ଥା । ସବୁ କଡ଼ୁଆ ଦ'ପଟ ଦ'ମାସ ହେଲା ବରାବ ଦଅଗଲଣି ଅଜଯାଏଁ ବ ନାହିଁ । କୋଢିଆଟାଏ ।

କୋଢ଼ିଆ ସେ ନ ଥିଲା । ଠାକୁରେ ନ କରନ୍ତୁ ଶତ୍ରୁର ସେ ଅବସ୍ଥା ନ ହେଉ । ଏମିତ ଦୁଃଖରେ ଉ ସମସ୍ତେ କୋଢ଼ିଆ ହୋଇପାରନ୍ତି । ଘାତ ଉପରେ ପଥର ପଡ଼ିଲା ପରି ଦୁଃଖ । ତା ଉପରେ ତା ଉପରେ ବୁଢ଼ାକୁ ବୁଢ଼ା ଲଦ ହୋଇ ପଡ଼ିଲା । ଭା କଙ୍କାଲ ଭାଙ୍ଗ ଦେଇ ଯାଉଛି । ସେ ବଞ୍ଚିଛି ଦେହର ଡେରି । ପୁଅଟାକୁ ଢାକି କର ପାରିଲା ନାହିଁ—ଜେଣ୍ଡା ପୁଅଟା—ମରିଗଲା । ମାଇପ ମଲା—ଗୋଟାଏ ଦନ ଗୋଟାଏ ରାତ ଜର—ସକାଳକୁ ନାହିଁ । ବିଧବା ଯୁବତୀ ବହୁଟା—ଣ୍ଡ—ସୁନ୍ଦରୀ ବହୁ କରିବ ନାହିଁ ।

ସେ ଆଜ୍ କାହାକୁ ଶେଜ ଘର କରିବ ? ବଧବା ଭଉଣୀଟିକୁ ଆଣି ପାଖରେ ରଖିଥାଏ । ସେ ପୁଣି ଅଠର ଦିନେ କଳି କରି ଶଶୁର ଘରକୁ ପଳେଇବ । ପୁଣି ଶଶୁରଘରେ ଗୋଟେ କିଛି ଉତ୍ପାତ ନ ଛଲେ ଯା'ଇ ସେ ଆଜ୍ ନ ଫେରେ ।

ତଥାପି ସେ ପଦଅକୁ ପଚାରିଲା । ପଦଅ କିଛି କହିଲା ନାହିଁ । ଶୁକୁସ୍ ଉପରେ ପଟକେଇ ଦେଲା । କହିଲା—"ତୋ ଇଚ୍ଛା—ତୋତେ ଯାହା ଭଲ ଲାଗୁଛି ।"

ଦାସଘର ପିଣ୍ଡାରେ ହେଉଛି ଅଗଣି ଦାସେ ବସିଛନ୍ତି । ବୁଢ଼ା ବସି ବସି ନାଶ ଡାକୁଛି ।— "ଓଳଗି ଭାଇନା ।"

"ଅଷ୍ଟୋତ୍ତର ଶତବର୍ଷ ପରମାୟୁ ଭବତୁ—କରେ ହାଲଚାଲ୍. କ'ଣ ? ସବୁ ଭଲ ତ ?"

"କ'ଣ ଆଉ ଭଲ ଅଜ୍ଜା । ଧନ ତ ଯାଉ ନାହିଁ । ଏ ମହରଗ ଜାମାନରେ ଆଉ ଭଲ କ'ଣ ପଚାରୁଛ ?"

"ମହର୍ଗ ତ ସଭିଙ୍କି ଘୋଟିଛି—ତୋତେ କଣ ଏକୁଟିଆ ?"

"ଏ ଅକାଳ କାହିଁକି ପଡିଲା ନନା, ଆମେ ଏ ଗରିବ ଗୁହ୍ଲା ବଞ୍ଚିବାଟିକି ?"

"ଆରେ ଯୁଦ୍ଧ, ଯୁଦ୍ଧ ! ତେଣେ ଜରମାନୀ ଯୁଦ୍ଧ ଲାଗିଗଲାଣି ପରା ।"

"ଯୁଦ୍ଧ ? କି କାତଆ ଯୁଦ୍ଧ କି ସେ ଗୋସେଇଁ ? ସେ ଯୁଦ୍ଧର ରଣଚଣ୍ଡୀ ମଣିଷମୁଣ୍ଡ ଖାଆନ୍ତି ନା, ଲୁଗାପଟା, ଶାଗସରୁକି, ଭେଜ ଭାତ, ଘସିଗୁଣ୍ଡା ସୁଦ୍ଧେ ବି ଖାଇଯାଆନ୍ତି ?"

"ହଁ ରେ ହଁ ।" କହି ମାଗୁଣିଦାସ ଲକକ ଯାକ ଲସ 'ଅଁ' 'ଛୁ' ଉରି କାଢ଼ି ପକେଇଲା । ଗାଢ଼ ଗାଢ଼ ନାକପାଣିତକ ଅଣ୍ଟି ଲଗି

କରଅ ଝଣ୍ଟରେ ପୋଛୁ ଦେଇ ଗଲା ସଫା କରି କହିଲେ—"ତୁ ଅଜ କଣ ବଗୃଇଥିଲୁ କ ?"

"ଆଜ ପାଇ ହେବ ନାହିଁ ନନା ଏ ମହର୍ଗକୁ, ମୁଁ ବଗୃଛୁଛ—କଲକତା ଯିବ ।"

"ହିଁ, ହିଁ, ସମିସେ ଯାଉ 'ଚଲ୍, ତୁ କଅଁ ଲ ଯିବୁ ? ଯା—ଯା— !"

"ନାଉଁ ସତେ, ଉମେ କ'ଣ କହୁଚ କହିଲ ନନା, କଲିକତା ଗଲେ ଭଲ ହେବ କ ନାହିଁ !"

"ଖୁବ୍ ଭଲ, ଖୁବ୍ ଭଲ । ମାଇପକୁ କାହା ଜିମାରେ ଛାଡ଼ ଦେଇଯିବୁ ? ଭଗୁ ମାହାନ୍ତି ଜିମାରେ ।" ଶୁକୁରି ଚମକ ପଡ଼ିଲା । ଭଗୁ ମାହାନ୍ତି ! ଭଗୁ ମାହାନ୍ତି ତାକୁ କଲିକତା ଯିବାକୁ କହୁଛି । ସେ ତ କାଲ୍ ରାତି କଥା । ସକାଳ ନ ହେଉଣୁ ଏ ବ୍ରାହ୍ମଣ ଜାଣିଲ କିମିତ ?

"ଭଗୁ ମାହାନ୍ତି—ଭଗୁ ମାହାନ୍ତି ।" ତା' ମୁଣ୍ଡ ଭିତରେ ଶବଦଟି ଗୋଳେଇ ଘାଣ୍ଟି ହେଲା ।

"ନନା, ଛି, ପାପ ହବ । ଭଗୁ ମାହାନ୍ତି ବାଇସ୍ତା ବୋଉର ବାପ ସମାନ ।" ସେ କହିଲା ।

"ହିଁବେ ହିଁ—କେତେ ଭଗୁ ମାହାନ୍ତିକି ବାପ ହେବା ଦେଖିଛି—ଆଉ ତୋ ବହୁକୁ ଦେଖି ତ କେତେ ଲୋକ ବାପ ହବାକୁ ମନ କରିବେ ।"

"ନନା, ଉପର ଏଇ ଖିଆଲିଆ କଥା ଗଲ ନାହିଁ । ସବୁବେଳେ ଠାହିଠାପରି ଭଲ ଲାଗେ ନାହିଁ ।"

"ଆଉ ମୁଁ ଠାପରି କରୁ ନାଇ । ଅଗଣି ଦାସ ହକ କହେ–ଠକ୍ ଠକ୍ ! ତୁ ସଗ ଚଢ଼ ଯାହା କର । ବେଣ୍ଡୀ ଜୁଆନ ଟୋକାଟାକୁ

ଘରେ ରଖି ତୁ କଲିକତା ଯିବୁ । ଏ ଗାଁରୁ ଜଣ ଭାଗୁ ମାହାନ୍ତି ଭଳିଆ ଲୋକେ ମରିଗଲେଣି ନା ଉଠିଗଲେଣି କି ? କେତେ ଗରିବଙ୍କର ସର୍ବନାଶ ନ କରିଛନ୍ତି ସେ, କେତେ କୁଳବଧୂଅସୁଣୀଙ୍କ ଘର ନ ବୁଡ଼େଇଛନ୍ତି ସେ !"

"ତା ସେ କହିଲ ନନା, ଝିଅ ବୋହୂ ଯଦି ନାଳେ ଠିକ୍ ଥିବେ ତ—"

"ଯା ରେ ଯା—କେତେ ଝିଅ ବୋହୂ ଦେଖିଛୁ ! କଉକାଳିଆ ମଣିଷ ଅଇଲୁ କି ତୁ ? ସମସ୍ତେ ଗାଲି ସୀତା ସାବିତ୍ରୀ ହେଇଚନ୍ତି । ଯୁଗର ରଙ୍ଗ ଢଙ୍ଗ ଦେଖୁନୁ କ'ଣ, ଆଉ କହୁଛୁ କଣ ? କାଲ କଅଣ ଥିଲା, କ'ଣ ହେଲାଣି ଆଖିକି ଦିଶୁନାହିଁ—ନା—ଆଖି ବୁଜି ଦୁଧ ପିଉଚୁ ? ଅତର ଯୁବତୀ ଟୋକୀଟାକୁ ଘରେ ଛାଡ଼ିଦେଇ, ତୁ କଲିକତାରେ—ବିଦେଶରେ; ବର୍ଷେ ମାସେକେ ଥରେ ଘରକୁ ଆସିବୁ, ତାର ପୁଣି ଘଇତା ସରଗ, ଘଇତା ସୁଖ ବୋଲି କିଛି ଅଛି ନା ନାହିଁ ? ନା—ତା' ମନଟାକୁ ତୁ ବାଟୁଆ ଭିତରେ ଭରି ନେଇ ଚାଲିଯିବୁ କଲିକତା ?"

"ହଁ ସତ ବୋଇଲ ଗୋସେଇଁ, ମୁଁ ବୁଝିଲି ସେ—ହେଲେ—"

"ନଅଁଟା ବୁଝିଲୁ, ଚଉଦଟା ବୁଝିଲୁ—ଆରେ ବୁଝିଲୁ ଗୋଟାଏ କ'ଣ ? ଏଥିରେ ବୁଝିବାର କ'ଣ ଅଛି । ମୂର୍ଖଟା କିଛି ବୁଝିନାହୁଁ । ଯା—ଯା ସେଇ ଭାଗୁ ମାହାନ୍ତ ଠୋଉଠେ ବୁଝେଇଦବ । ତା'ର ଆଗରେ ଗେଡ଼ୁଲେଇ ହେଇ କଥା କହିବୁ ।"

ଶୁକୁରା ଆଉ ଉତ୍ତର ଦେଇ ପାରିଲା ନାହିଁ । ଦଇବଯୋଗକୁ ସେତିକିବେଳେ ଅଗଣିଦାସର ବାରମାସିଆଟା ଆସିଲା । ସେ ଏତେ

ଡେଉର ଭର କାହିଁକି ଆସିଲା ବୋଲି ଅଗଣିଦାଣ ଚଉଦପୁରୁଷ ଉଦେଇ ବନ୍ଧ ବାହାଣି ବାହୁ ଦେଇଗଲା ।

ଶୁକୁରି ଭାଇ ଭିତରେ ଅସୁନ୍ଥ ବୋଲି ଖସି ପଳେଇ ଆସିଲା । ସିଧା ଘରେ ଆସି ବିଣ୍ଡାରେ ମଟିଣା ପଟକେଇ ଦେଇ କରଞ୍ଜ ବାଡେଇ ବସିଲା । ଘର ପଛରେ ସେ କରଞ୍ଜ ଗଛଟା । କେତେ ପୁରୁଷ ଗ..ଣି । ସେ କେମିତି ଦାରୁଭୂତ ହେଇ ଠିଆ ହେଇଛି । ସୁତବର୍ଷ ଗଦା ଗଦା ହୋଇ କରଞ୍ଜ ଝଡ଼େ । ତେଲି ଆସି ଗୋଟେଇ ନେଇଯାନ୍ତି । ଟଙ୍କେ ଧଟଙ୍କା କ’ଣ ଦେଇଯାଆନ୍ତି ଶୁକୁରିକୁ । ଶୁକୁରି ସେତିକିରେ ମହା ସନ୍ତୁଷ୍ଟ । ବନା ମେହେନତରେ ଦ’ ପଇସା ମିଳିଲା ତ ! ସେମିତି ଧାଟରୁ ସାଉଁଣ୍ଟି ଆଣିଲା ତାକୁ । ତାର ସେଥିରେ ହାନ କିଛି ନାହିଁ—ସେ ଗୋଟାଏ ଫାଉ, ଲାଭ ।

ଘର ଭିତରେ ଛୁଆଟା ପୁଣି କାନ୍ଦିଲା । ଶୁକୁରିର କଷ୍ଟ ହେଲା । ଏଇ ଅଣ୍ଡିଗଣ୍ଡିକୁ ଛାଡ଼ି ସେ କଲିକତା ଯିବ ?

ସେତିକିବେଳେ ଭଗୁ ମାହାନ୍ତି ଆସି ହାଜର । ଚଉଧୁରୀ ଘରକୁ ଯାଉଛନ୍ତି, ଚୌଧୁରୀ ଘରକୁ ବାଟ ସେଇ ବାଟେ । ଆଉ ବାଟଟା ଟିକଏ ବୁଲଣିଆ । ହେଲେ କ’ଣ ହେଲା ? ସେ ବାଟଟା ସଫା, ବାଲିଗସ୍ତା—ଏ ବାଟଟାରେ ଠାଏ ଠାଏ ପାଣି । କିନ୍ତୁ ଭଗୁମାହାନ୍ତି ଏଇ ବାଟ ହେଇ ସବୁଦିନେ ଯାଆନ୍ତି । ଭଗୁମାହାନ୍ତିଙ୍କ ଦେଖିଲାକ୍ଷଣି ଶୁକୁରିର ଛାତି ଭିତରେ କ’ଣ ହେଇଗଲା ।

ଏଇ ଭଗୁ ମାହାନ୍ତି । ଯା ଭିତରେ ଏତେ କପଟ ! ମୁହଁରେ ଅମୃତ, ପେଟରେ ବିଷ । ତାକୁ କଲିକତା ପଠେଇ ଦେଇ—

“କିରେ—କଣ ହେଲା ?” ଭଗୁ ମାହାନ୍ତି ପଚାରିଲେ ।

“ନାଇଁ ମୁଁ ଯିବ ନାହିଁ ସାଆନ୍ତେ ।” ଶୁକୁରି ଉତ୍ତର ଦେଲା ।

"କାହିଁକି ରେ ?"

"ଆଜ୍ଞା ସମସ୍ତେ ନାହିଁ କରୁଛନ୍ତି ।"

"ଅରେ, ସମସ୍ତେ କମିଛ ତୋ ପିଟିରେ ପଡ଼ିବେ ଦେଖିବା—"

ଶକୁର ଗୁମ୍ ମାରି ଠିଆ ହୋଇଗଲା । ଭୃଗୁପଟ୍ଟନାୟକେ କହୁଥାନ୍ତି—"ହଜ ନ ଯା, ମୋର ଟଙ୍କା ଦଶଟା ବୁଡ଼ିଗଲା ।" ଟଙ୍କା ଦଶଟା ହାତରେ ଝମଝମ୍ କରି କହିଲେ—"ଆଣିଥିଲି ତୋତେ ଦେବାପାଇଁ । ଠାକୁରେ ଯାହା କରନ୍ତି ସେଇ ଭଲ । ମୋ ଟଙ୍କା ତୁ ଦେଇଥାଆନ୍ତୁ ନ ଦେଉଥାନ୍ତୁ—କଡ଼ିଁ ଖଣ୍ଡାଏ । ଏମିତେ ମୋ ଧନ ମୋ ଘରେ ରହିଲା । ତୋ ଘରେ ତୁ ବି ରହିଲୁ ।"

ଟଙ୍କା ଦେଖି ଶୁକୁରର କେମିତି ଗୋଟାଏ ଲୋଭ ବସିଲା । ଟଙ୍କା ନେବାର ଲୋଭ ନୁହେଁ, କଲିକତା ଯିବାର ଲୋଭ—ଟଙ୍କା ଆଣିବାର ଲୋଭ ।

ସେ କଲିକତା ଯିବ । କଲିକତା ଯାଇ ସାଉଲଣି ହେବ । ଟଙ୍କା ଯେତେବେଳେ ଆସି ହାତରେ ସେତେବେଳେ ନ ଯାଇ ବ ଗଲା ସମାନେ, ଦାନକର ରାସ୍ତା ଉ । ଦାନ୍ତାଏ ବ ମାରିବ ନାହିଁ ରେଳରେ ।

କଲିକତା ଗଲେ—କଲିକତା ସେ ଗଲେ, ବାପୁମାଙ୍କ କଣ କରିବ ? ତା' ପାଇଁ ସେ କଲିକତାରୁ କସ୍ତା ଶାଢ଼ୀ ଖଣ୍ଡେ, ଲୁଣ ତେଲ ଗୁଆ ହଳଦୀ ନୂଆ ବାଲିତ ଭିତରେ ଭରି ଯେ ଦେଇ ଆସିବ । ସେଇଥିରେ ବାଇଯା ମା କଣ ସୁଖୀ ହେବ ନାହିଁ ? ମାଇପଙ୍କର ଆଉ କଣ ଲୋଡ଼ା ? ପଇସା ହେଲେ ରୁପାଖଡ଼ୁ ହଳେ କ ଚମ୍ପାସର ବେରେ କରିଦେବ । ବାସ୍ !

"ବୁଝିଲ ଯେ ସାଆନ୍ତେ—ତମେ ଆପଣ ଯାହା କହୁଚ ତ'ଣ ମୋ ମନକୁ ବୁଝୁଚ କି ? ମୋ ଭଲକୁ ବୁଝୁଚ । ଏଇ ଟଙ୍କାଟା ପାଇ ନିଶ୍ଚୟ ଦରବଣ ଯାଉଥିଲା । କାଲେ ଶୁଝି ପାରିବ-- ନ ପାରିବ ।"

"ହଁ ବେ ହଁ—ଶୁଝି ପାରିବୁ ନାହିଁ ଗୋଟେ ଓ କଥାରେ—ମନ୍ଦପୁଅ—ହକ ଖଟିବୁ—ଅରଜନ କରିବୁ—ଟଙ୍କା ଦାଣ୍ଟା ଶୁଝି ପାରିବୁ ନାହିଁ ?"

"ହଉ ସାଆନ୍ତେ, ଠାକୁରଙ୍କ ଇଚ୍ଛା । ତମକଥା ମୁଁ ଅଡ଼ କାଟି ପାରିବି ନା ! ମା ବାପ ତମେ ।"

"ହଉ, ହଉ, ନେ, ନେ—ଭଗତ କରିବୁ ପରେ । ବେଗି ବେଗି କଲିକତା ଯିବାକୁ ତିଆର ହ । ସିଧା ଇଷ୍ଟେସନକୁ ଚାଲିଯିବୁ । ଟିକେଟବାବୁକୁ ଖାଲି କହିବୁ—'ହାବୁଡ଼ା', ହେଲା !"

"ହଉ ସାଆନ୍ତେ ।"

ଭଗୁମହାନ୍ତି ଟଙ୍କା ଦଶଟା ଦେଇ ସାଦା କାଗଜ ଉପରେ ଟିପ ସହି କରି ନେଇ ପଠେଇଲେ । ଶୁକୁରା କୃତକୃତ୍ୟ ହୋଇ ଲମ୍ବକୁ ଦଣ୍ଡବତ ଟାଏ କଲା । ସେ ନ ଉଠୁଣୁ ଭଗୁ ମାହାନ୍ତି ଚାଲିଗଲେଣି, ଯେମିତି ଭାରି କାମ !

ଶୁକୁରା ମନ ଖୁସିରେ ଯାଇ ବାଇଧି ମାକୁ ଡାକି କହିଲା—"ହଇଲୋ, ମୁଁ କଲିକତା ଚାଲିଲି । ତୁ ଥା, ବାଇଧି ତୋତେ ଲାଗିଲା ।"

କାବା ହୋଇ ଚାହିଁଲା ବାଇଧିମା ! ତା ଗୁଣ୍ଡଟା ଦାଣ୍ଡି ଭଳି ଉଠି ପଡ଼ିଲା ।

କଲିକତା ?"

"ହଁ, କଲିକତା; କଲିକତା ନ ଗଲେ ଆଜ ସଂସାର ଚଳିବ ନାହିଁ । ବଡ଼ ହୀନସ୍ତା ହେଲେ । ଦେଖୁନୁ, ଯିଏ ସବୁ କଲିକତା ଯାଉଚନ୍ତି, ତାଙ୍କ ଦଶା କିମିତି ଫେରି ଯାଉଚି ।"

ବାଇୟା ମା କିଛି କହିଲା ନାହିଁ ।

ଶୁକୁର କହିଲା—"ତୋ ପାଇଁ କଣ ଆଣିବ କହ ?"

ରତନା ଅଗଣାରେ ଲୁହ ପୋଛି ଆସିଲା । ଘାଟରୁ ପାଣି କଳସୀଟା ଲଥ୍‌କିନା ରଖିଦେଇ କହିଲା—"ନାଅଁ, ଚୂଲି ।"

"ସବୁବେଳେ ତୋ ମୁହଁରେ ଅଶୁଭ କଥା । ଇମିତି ଫଟା କପାଳ ଯେ ତୋର ଦିନେ ହେଲେ ମାଇପ 'ଭୁଞ୍ଜ' ବୋଲି ପଦେ କହିଲ ନାହିଁ ।"

"ଭୁଞ୍ଜ ବୋଲି କେମିତି କହନ୍ତି ? ତମେ ଭୁଞ୍ଜେଇବାକୁ କଣ ସଜବର ଅଣି ଦେଇଚ କି ଘରକୁ ?"

"ହଁଲୋ, ସେଇତ ସେଇଁତ କଲିକତା ଯିବା କଥା । କହ ନାହିଁ—କହ ନାହିଁ—ଆଉ କେତେଦିନ ଏମିତି ହୀନସ୍ତା ହେଉଥିବା ? ଜମିଦାର ଖଜଣା ବାକି ପଡ଼ିଲା । ସାହୁକାର ପାଉଣା ଅଦାୟ ରହିଲା । ପ୍ରେସିଡେଣ୍ଟ ଟିକସ ପାଇଁ ଦି'ଦି ଥର ଘର କୋରକି କାଢ଼ିଲା । ଆଉ ମଣିଷ କେତେ ସହିବ ?"

ବାୟାମା କିଛି ଜବାବ୍ ଦେଲାନାହିଁ । ଛୁଆଟା ଶୋଇଥିଲା । ତାର ମନହେଲା, ତାକୁ ଯାଇ ହଲେଇ ଦେବ, ଠାଏ ଦନ୍ ଗୁଡ଼ାଏ ଲଗେଇ ଦେବ—ସେ କାହିଁକି ଶୋଇଛି ।

"ଇଗୁଆ କଲିକତାରୁ ଫେରିଛି—ମାସେହେଲା ଫେରିଲାଣି । ତାଙ୍କ ପଅରି ପୁଣି ଯିବ ! ତାଙ୍କ ସାଙ୍ଗରେ ଗଲେ ସୁବିଧା—ନା କଣ ବାୟା ବୋଉ ।"

ବାଇସ୍ତା ବୋଉ ଉଠାଡ଼ି କହୁ କହୁଲାନାହିଁ । ଶୁକୁରା ତୁଦଣ୍ଡା ଛୁଟୁଲା ଉଠିଲା । ଉତଣାକୁ ଯେଉଁଦିନଠୁ ବାଇସ୍ତା ବୋଉ ବୋଲି ଡାକିଲାଣି, ସେଦିନୁ ସେ ଖାଲି ତାର ସ୍ତ୍ରୀ ହୋଇ ନାହିଁ—ସେ ତା ଛୁଆର ମା ବି । ସେଦିନରୁ ବନ୍ଧା ଦଉଡ଼ିଟା ଅତୁଟ ଜୋରରେ ଭିଡ଼ି ହୋଇ ଶକତ ଗଣ୍ଠିଟାଏ ପଡ଼ିଯାଇଛି । ସେ ଯେତେବେଳେ 'ବାଇସ୍ତା ବୋଉ' ବୋଲି ଡାକେ, ସେତେବେଳେ ଖାଲି ତାକୁ ଡାକେନାହିଁ, ତା' ସାଙ୍ଗରେ ଯେମିତି 'ଅବୋଧ ଅଜ୍ଞାତ ଶିଶୁ ବାଇସ୍ତାକୁ ବି ସେ ଡାକେ ।

ଶୁକୁରା ଅଖିଳର ବି ଲୁହ । ମରଦପୁଅ, ତାକୁ ଲାଜମାଡ଼ିଲା । ମୁହଁଟାକୁ ଟେଳିକି ବୁଲେଇ ନେଇ ଅଧାକାନ୍ଥି ଉପରୁ ଭଙ୍ଗା ଟ୍ରେଟିଆ ପେଡ଼ୀ ଖଣ୍ଡିକ କାଢ଼ି ଦେଖିଲା—ନୂଗା ନାହିଁ ।

"ନୂଗା କୁଆଡ଼େ ଗଲା ?" ଶୁକୁରା ଗର୍ଜି ଉଠିଲା ।

"ମୁଁ ଜାଣିଛି କି ନୂଗା !" ବାଇସ୍ତା ବୋଉ ତାଙ୍କ ସାଙ୍ଗେ ଉତ୍ତର ଦେଲା ।

"ତୁ ଜାଣିନୁ ! ଗଲାବର୍ଷ ରାଉତି ବୋଉ ସାନ୍ତାଣୀ ବାମକୁ ଯୋଡ଼ ନୂଗା ଖଣ୍ଡ ଆଣିଥିଲି, ଏଇଥିରେ ଥିଲା ନା ସେ ।"

"କିଜାଣି, ମୋତେ କ'ଣ ଦେଇ ଥିଲ ରଖିବାକୁ ।"

"ଦେଇ ନଥିଲି ? କାହା ଜିମାରେ ଥିଲା ତେବେ ? ମୁଁ କଣ ଜଗି ବସିଛି ହରଘଡ଼ି ଏ ଘରକୁ ?"

"ନାଁ, ମୁଇ ଜଗିବସିଥିଲି ତମ ପେଡ଼ୀକି ।"

"ତୁ ଦେଖିନାହୁଁ ?"

"ନା ।"

"ତୋ ବାପଘରକୁ ପଠେଇ ନାହୁଁ ?"

"ହେଇଟି ଭଲ, ଅଣ୍ଡକଲି, ମୋ ଖୁସି, ମୁଁ ପଠେଇଛି ।"

"କ'ଣ ଲୋ ! ତୁ ମୁହଁରେ ଜବାବ ଦବୁ ?" ଶୁକୁରା ଉଠିଯାଇ ଦା'ଏ ଧର ଗୁପୁଡ଼ାଏ ଟେକାଇଲା । ବାପ୍ଲା ସା ମୁଣ୍ଡଟାକୁ ତୋ କଳା ଉଲେବାଡ଼େଇ ଦେଇ ବଡ଼ ଯାଉଁଲା, "ମରିଗଲିଲୋ ! ମୋ—"

ଗାଁରୁ ମାଇପେ ଦଶ ମାଆ 'କ'ଣ ହେଲା' ବୋଲି ଦଉଡ଼ ଆସିଲେ । ଶୁକୁରା କଳା ଖଣ୍ଡ ଧରି ଗାଡ଼ କାଟିବାକୁ ବାହାରିଗଲା । ହେଉ ହେଉ କରି କେଉଁଠି ଅଟିଲା ମଳଙ୍ଗ ସେ ଭୁଟିମେକେଇଲା— ବେଢେ ଡ଼ାଳ ସେ କାଟି ପକେଇଲା—ଶୁଖିଲା କାଳହର । ଶୁଖିଲା ଛକ ଆଜି ଜଳିଲେ ଯାଇ ଭାତ ଫୁଟିବ । ଏତିକିରେ ହବ ନାହିଁ ବୋଲି ବାହାର ହେଲା ପଦାକୁ ଆଉକେଇ ଖଣ୍ଡ ସାଉଣ୍ଟି ଆଣିବ ।

"ନାଁ ସେ ଫିର ନାହିଁ କଲିକତା ।"

ସୂର୍ଯ୍ୟ ଢଳି ଗଲେଣି କେଉଁଠି କଅଁକୁ । ସେମାନଙ୍କ ଗଛର ଡାଳ ଉପରେ ଛନ ଛନ ହୋଇ ପଡ଼ୁଛି ତାଙ୍କ କିରଣ । ଶୁଖିଲା ଜାଳଖଣ୍ଡ ନହକା ପଡ଼ିଛି ଯେ ନଗୀ ଗଦେ ବଟେଇ ହିକି ଅଣୁଥିଲା ସେଇ ଡାଳଖଣ୍ଡିକୁ । ପଛ ଆଡ଼ୁ କିଏ ସେ ଡ଼ାକିଛାଡ଼ିଲା—ଏ—ଏ—କିଏ ସେ !

ଅଗଣୀଦାଶର ବାରମାସିଆ-ମୂଳିଆ । ଗଛ ଅଗଣୀଦାଶର । ହେଲେ ବି ରାସ୍ତା କଡ଼ ଗଛ । କିଏ ଜଗିଛି ତାକୁ; ଶୁଖିଲା ଡାଳଖଣ୍ଡେ ଭାଙ୍ଗି ନେଲେ ବା କଅଣ ଭାସିଗଲା ! ସେମାନଙ୍କ ଅତି ଖଣ୍ଡେର ! ଶୁକୁରା ଶୁଣିଲା ନାହିଁ । ଡ଼ାଳ ଭାଙ୍ଗିଲା ।

"ହଇରେ ଏ, ତୋର ବଡ଼ ସାହସ । ହାଁ-ହାଁ କରୁ କରୁ ତୁ ଡାଳ ଭାଙ୍ଗି ନେଇ ପଳଉଚୁ । ଡ଼ାକିବି ଅଗଣୀ ଦାଶ ବୁଢ଼ାକୁ ?"

"ଯାବେ-ଯାଃ-କେତେ ଦାଶ ଦେଖିଛି ।" ଶୁକୁରା ଶିର ଉଠେଇଲା। ମୂଳିଆର କଥା ନ ଶୁଣି ସେ ରଡ଼ ରଡ଼ କରି ଶୁଖିଲା ଡ଼ାଳଖଣ୍ଡକୁ

ଖୁଙ୍ଗି ଗଡ ଗଡ କରି ପକେଇଲା ସେଇ ସ୍ଥାନରେ ଜୋର ଦେଇ ।

ଏଇ ଜୀବନ ? ଏଇ ଜୀବନକୁ ଘେନି ସେ ଏ ଗାଁରେ ପଡ଼ି ରହିବ ? ଶୁଖିଲା ଡ଼ାଳଖଣ୍ଡିଏ ସାଉଣ୍ଟି ନେବାର ଅଧିକାର ତାର ନାହିଁ । ରାସ୍ତା ଘାଟରୁ ଗୋବରଟେଇ ନେବାର ଦାବି ସେ କରିପାରେ ନା । ତଥାପି ଏ ଗାଁ ତାର ?

ଟିଂ ଟିଂ ହେଇ ସାଇକଲ ଘଣ୍ଟି ସେ ଆଡୁ ବାଜି ଉଠିଲା । ଶୁକୁର ଚମକି ପଡ଼ି ଚାହିଁଲା । ବାବୁ ଜଣେ ଚଢ଼ି ଚାଲିଗଲେ ଜାମା ଫୋଡ଼ା ହୋଇ ।

ବସ୍ତିପୁର ସଉଦାଗର । ଏବେ ସଜ୍ଜନସ୍ଥ ବୋଲଉଚନ୍ତି । ତାଙ୍କ ପୁଅର ସେଦିନ ଏମିତି ଟିଂ ଟିଂ କରି ଯାଉଥିଲା । ଅଜବାଲି ନୂଆ ଲୋକଙ୍କର ସାଇକୁଲ । ସଉଦପୁଅଟା ସାଇକେଲ ଚଢ଼ି ହେଥାନଜାନ ନ ଥାଏ ତାର । ଟୁଆଟା ଧକ୍କାରେ ଧକ୍କା ଲଗେଇ ଦେଲା ସେ ଦିନ । ଟୁଆଟା କଚୁଡ଼ି ପଡ଼ିଲା । ସେ ଚାହିଁଲା ନାହିଁ —ଆଃ କି ଉଃ ପଦେ କହିଲା ବି ନାହିଁ । ସେମିତି ସାଇକେଲରେ ଚଢ଼ିଚୁ । ନବାବ ।

ବାପ ଦାଦାଙ୍କ ଅମଳରେ ତ କେହି ନବାବ ନଥିଲେ । ଏବକୁ ନବାବ ହେଇ ଦିଶୁଛନ୍ତି । କଲିକତାରେ କେଉଁ ସାହେବ କୋଠିରୁ ଟଙ୍କା ମାରିନେଇ ଏବେ ଜମିଦାରି କରି କ'ଣ ନା ଆମେ ବଡଲୋକ୍ ! ଧିକ୍ ସେ ବଡ଼ଲୋକୀକୁ !

ହଁ, ବଡ଼ଲୋକ ନହେବେ କାହିଁ ? ପଇସା ଯା'ପାଖରେ ଅଛି, ସେଇ ବଡ଼ ଲୋକ । ପଞ୍ଚନାଦୀଙ୍କ ପଞ୍ଜାର କରଣ ଗୋଷ୍ଠି କାହିଁକି ଏକୁଟିଆ ବଡ଼ଲୋକ ହେବେ ?—ବସ୍ତି ସଉଦାଗର ଘର ନହେବେ କାହିଁ ? ତାଙ୍କ ଭାଗରେ କଣ ଏକୁଟିଆ ବଡ଼ଲୋକ ଟୀକା

ଛୁଉଛନ୍ତି କି ? ଯା'ର ପଇସା ହେଲା, ଘରପୁଅ ବାବୁହେଲେ, ପାଠ ପଢ଼ିଲେ, ଶୂନ୍ୟଗାଡ଼ି ମୋଟରଗାଡ଼ି ଚଢ଼ିଲେ, ସେ ହେଲା ବଡ଼ଲୋକ —ବଡ଼ ଲୋକ ନ ହୋଇବେ କିଆଁ ? ପଠନାହ, କପଡ଼ା ସାଆନ୍ତେ କହନ୍ତି—ବୁନିଆଦୀ ନାହିଁ । କାହିଁ ବୁନିଆଦୀ କାହାର ଅଛି ହୋ । ଘର କାନ୍ଥଡ଼ା ହେଲାଣି, ବୁନିଆଦୀ ମରୁଛନ୍ତି । ବୁନିଆଦୀରେ ଝଇ ଧରିଲାଣି—ମାଲୁମ ପଡ଼ୁ ନାହିଁ ।

ନାଁ-ନାଁ-ସେ କଲିକତା ଯିବ । ବହୁପୁର ସହରର ଘର ତ ସେଇ କଲିକତା ଯାଇ ଠେକିଲେ । ସେବି ଯିବ । ନଯିବ କିଆଁ ?

'ନଅ ଡମ ଜାକ' ହୋଇ ଶୁକୁରା ଦାଶ ଗଛରୁ କାଟିଥିବା କାଠ ଖଣ୍ଡକ ଫିଙ୍ଗି ଦେଇ ଗୁଳିଲା ପଛେନ ପୃଷ୍ଠପଡ଼ା ମୁହଁରେ । ରାମ-ବାବୁ ସହରରେ ପାଠ ପଢ଼ନ୍ତି—ଇଞ୍ଜିମିଞ୍ଜି । ଭେଟ ହେଲା ତାଙ୍କର ସାଙ୍ଗରେ ।

"କିରେ ଶୁକୁରା, କେମିତି ଅଛୁ ?" ସେ ପଚାରିଲେ ।

"ବାବୁ, କେବେ ଆଇଲ କି ? ଭଲ ଅଛ ବାବୁ—ଓଳିକି ଓଳିକି ।"

"ହୁଁ—ମୁଁ କାଲି ଆସିଛି ।"

କହୁ ସେ ବଟେ ବାଟେ ଗୁଲିଗଲେ । ଏଇ ଯେ ପଦେ କଥା ପଚାରିଲେ, ସେଇ ଢେର । ସେଇ ପଡ଼ାରେ ତ କେତେ ଛୁଆ ପାଠ ପଢୁଛନ୍ତି, କିଏ କାହାକୁ ପଚାରୁଛି—କିଏ କାହା କଥା ବୁଝୁଛି କାହିଁ ? ଶୁକୁରାର ମନହେଲା ରାମବାବୁକୁ ତାକି ପଦେ କହନ୍ତା ତା ସୁଖ ଦୁଃଖ । ନାଇଁ ଥାଉ । ତାକୁ ଅପମାନ ବୋଧ ହେଲା । ଆପଣା ଦୁଃଖ ପରକୁ କହିବାରେ ଯାହିଁ ଅପମାନ ।

ସମବାବୁ ଗୃହିଗଲେଣି କେତେଦୂର । ଛୁ—ସେ ଅଜ ପଛକୁ ଭାଳିବ ନାହିଁ । ନାକ କଥା । ଅପମାନର ଘୃଣାସ୍ପଦ କଥା ।

ଲାଜ ? ଅପମାନ ? ଶୁକୁରର ଲାଜ ? ଗରିବର ଲାଜ ? ଗରିବର ପୁଣି ଲଜ୍ଜା ସରମ ଥାଏ କ'ଣ ? ଶୁକୁର ମାଇପ ଦ'ବରଷର ଝିଅ ସୁଣୀଟା—ବାଟ ଘାଟରୁ ଗୋବର ଘାଣ୍ଟି ଆଣୁଛି—ଘର ବାହାର, ଘାଟ ଛୁଆଁ ହେଉଛି—ସମସ୍ତେ ଦେଖୁଛନ୍ତି, ଶୁଣୁଛନ୍ତି—ଲାଜ କାହିଁ ? ଲାଜ କେଉଁଠି ?

ବାବୁଘର, କରଣ ମହାନ୍ତିଙ୍କ ଘର, ବ୍ରାହ୍ମଣ ଗୋସେଇଁଙ୍କ ଘର—ତାଙ୍କ ଘରେ କଣ ମାଇପମାନେ ବହୁଅର କୁଳବୋହୂ, ଝିଅ ଝିଆରୀ କେଉଁ ନାହାନ୍ତି ? କେବେ କେଉଁଠି ଗୁହାରି ପଡ଼ୁଛି ଏ ଗାଁ ଗୋହିରୀ ଘରେ ? ବୁଢ଼ୀ ମାଇପେ କି ଦିନେ ଅଧେ ଘରୁ ବାହାରକୁ ଗୋଡ଼ କାଢ଼ନ୍ତି ନାହିଁ—ଯାହା ହେଉ ଘର ଭିତରେ । ଦାଣ୍ଡକୁ ଗୋଡ଼ କାଢ଼ିଲେ ଗାଳି ସରାସରି । ଲାଜ ତାଙ୍କର । ଶୁକୁରର କି ଲାଜ ? ଲାଜଟା ବଡ଼ଲୋକଙ୍କ ଜିନିଷ । ଲାଜଟା ଟଙ୍କା ପଇସା । ମଣିଷର ଲାଜ ନୁହେଁ—ଟଙ୍କା ପଇସାର ଲାଜ । ଟଙ୍କା ପଇସାର ଇଜ୍ଜତ ରଖିବାକୁ ବଡ଼ଲୋକ ଘରେ ନାଳର ପରଦା ପଡ଼ୁଛି । ଆଉ ଏଇ ବଡ଼ଲୋକଙ୍କ ଇଜ୍ଜତକୁ ଘୋଡ଼ାଇ ରଖିଛି ସେଇ ଟଙ୍କା ପଇସା । ବଡ଼ଲୋକଙ୍କ ସେଇ ପରଦା ତଳେ ଯାହା ହୁଏ, ସେ ପଦାରେ ପଡ଼େ ନାହିଁ । ସେଥିପାଇଁ ଟଙ୍କା ତାକୁ ଚାପିଦିଏ । ଟଙ୍କାର ଖାତିର ସମସ୍ତଙ୍କ ମୁହଁ ବନ୍ଦ କରିଦିଏ ।

ଗରିବର ଟଙ୍କା କାହିଁ—ପଇସା କାହିଁ ଯେ ତାଙ୍କ ଇଜ୍ଜତ ଜଗିବ କିଏ । ତାଙ୍କ ଇଜ୍ଜତକୁ ଜଗିବାକୁ ପଡ଼େ ନାହିଁ । ତାଙ୍କ ଇଜ୍ଜତକୁ ଟଙ୍କା ପଇସା ରକ୍ଷା କରେ ନାହିଁ—ବରଂ ତାଙ୍କ ଇଜ୍ଜତକୁ ଏଇ ବଡ଼ଲୋକଙ୍କ ଟଙ୍କା ପଇସା ଓଲଟି ମାଡ଼ିବସେ—କଲାହାର

ଏଟେର ; ବଡ଼ ଲୋକଙ୍କ ଇଜ୍ଜତକୁ ଅଧିକାର ଭଙ୍ଗ, ଅମୂର୍ତ୍ତା ଘରେ ବନ୍ଦ କରି ସେ ଗରିବଙ୍କ ଇଜ୍ଜତ ଆଡ଼କୁ ହାତ ବଢ଼ାଏ—ଏଇ ଟଙ୍କା !

ହଁ, ଏଇ ଟଙ୍କା ! ଶୁକ୍ରୀ ଚମକି ପଡ଼ିଲା । ଟଙ୍କା ପଇସାର ଯେମିତି ଜୀବନ ଅଛି । ନେଗାଟିଏ ଗତ ଅଧିଆ ଜଣର ଜୀବନଭଳି ଏ ଟଙ୍କା ପଇସାର ଜୀବନ । ଶିର୍‌ଗୁଣୀ ପାଣି ପାଣି ହୋଇ ବୁଲିଲା ପରି ସେ ଖାଲି 'ରକତ ରକତ' ବୋଲି ବୁଲୁଛି । ଛେଳି କୁକୁଡ଼ା ରକତ ନୁହେଁ, ମେଣ୍ଢା ମଇଁଷି ରକତ ନୁହେଁ—ତାଜା ତଟକା ମଣିଷ-ରକତ—ମଣିଷ ରକତ ପାଇଁ ଗୋଡ଼େଇଛି ସେ । ବାହୁତ ସୁବା ବଗ୍ଗୁର ନାହିଁ ତାର—ସେ ଲଞ୍ଚା ଡାହାଣୀର ।

ଟଙ୍କା ପଇସା ! ଶୁକ୍ରୀର ଆଖି ଉଗ୍ରଟି ହୋଇଗଲା । ତା ଦେହକୁ ସେ ଗୁହାଁ ଦେଖିଲା । ସତେ ସତେ ସେ କେତେ ଶୁଖି ଯାଇଛି । ଶିରା ମଳିଛିଆ ଲୁଗା । ଖଣ୍ଡିକ ସେ ଟେକିଦେଲା । ତା ଦେହ ଥରି ଉଠିଲା ।

ବାପୁ! ଖାଇବ କ'ଣ !

ନା-ନା ସେ କଲିକତା ଯିବ । କଟକ ଯିବ । ଏଇମିତି ଲଙ୍ଗଳା ହୋଇ ପଛେ ଯିବ । ସେ ଟଙ୍କା ଆଣିବ—ହଁ ଟଙ୍କା-ଟଙ୍କା-ଟଙ୍କା-ଟଙ୍କା !

ଜମିଦାର ଗୁହାରୁଛି ଟଙ୍କା, ସାହୁକାର ଗୁହାରୁଛି ଟଙ୍କା, ତେଲ ଲୁଣ ମାଗୁଛି ଟଙ୍କା, ଲୁଗା କନିଆ ଲୋଡ଼ୁଛି ଟଙ୍କା, ପୁଅ ମାଇପ ଅନେଇଛନ୍ତି ଟଙ୍କା—ଟଙ୍କା, ଟଙ୍କା-ଟଙ୍କା-ଖାଲି ସେଇ ଟଙ୍କା—ଟଙ୍କାର ଜୀବନ, ଟଙ୍କାର ମାନ୍—ଟଙ୍କାର ମହତ ।

ଘରର ମୋହ ନାହିଁ—ମାଟିର ମୋହ ନାହିଁ—ଗାଁର ମୋହ ନାହିଁ—ଏ ପାଣି ପବନର ମୋହ ନାହିଁ—ସାହି ଗୋଷ୍ଠୀର ମୋହ ନାହିଁ—ଧର୍ମ ସମାଜର ମୋହ ନାହିଁ—ମଣିଷ ଜୀବନର

ଏକମାତ୍ର ମୋହ—କେବଳ ଗୋଟିଏ ବୋଲି ମୋହ—ସେ ହେଉଛି 'ଟଙ୍କା' ।

ଏଇ ଟଙ୍କା ମଣିଷକୁ ଜୀବନ ଦେଇ ପାରେ, ମଣିଷର ଜୀବନ ନେଇ ବି ପାରେ । ରଙ୍କାକୁ ଘରେ ବସେଇ ପାରେ, ପୁଣି ଫକୀର କରି ବାର ଦୁଆର ଶୁଣ୍ଡେଶିଣ୍ଡା ହେବା ପାଇଁ, ଘରୁ କାଢ଼ିଦେଇ ଦୂର ବିଦେଶରେ ପଠେଇ ଷଢ଼େଇବାର ହାନସ୍ତ କରି ବି ପାରେ । ଏଇ ଟଙ୍କା ଗ୍ରାମବାବୁଙ୍କୁ ଷଢ଼େଇ ଶୁଖେଇ ବାବୁ କହିପାରେ । ଆଉ ଶୁକୁରକୁ ମୂର୍ଖ ଭୁଷଣ୍ଡ କରି ଗାଁ ମଝି ଦାଣ୍ଡରେ ଆଣି ଠିଆ କରି ଦେଇପାରେ ।

ଶୁକୁର ବୁଝିପାରେ ନାହିଁ—ଏ ଟଙ୍କା କ'ଣ, ଏ ଟଙ୍କା କିଏ ? ମଣିଷ ଜନମ ଦେଇଥିଲା ଏ ଟଙ୍କାକୁ, ମଣିଷକୁ ବଞ୍ଚାଇବ ବୋଲି, ମଣିଷର ଶ୍ରୀଜନମଟା କରିବ ବୋଲି, ଆଜି ମଣିଷ ଟଙ୍କାର ଶ୍ରୀଜନମଟା-ଗାଇ କରି କରି ତାର ଦାନ ସରୁନାହିଁ । ଟଙ୍କା ମଣିଷର ପିଛନାର ପଛରେ ଗୋଡ଼େଇ ଯାଉ ନାହିଁ—ମଣିଷ ମାଉଛି ଟଙ୍କା ପଛରେ ଗୋଡ଼େଇ—ଟଙ୍କାର ଗୋଲାମିକରି ଅଇଣ୍ଠା ଗୁଣ୍ଡିବାକୁ । ଏ ଟଙ୍କାର ବେକ କେହି ମୋଡ଼ି ତାକୁ ମାରି ପକାଉ ନାହିଁ ।

ଶୁକୁର ମନେ ମନେ ହସିଥିବ । ଟଙ୍କାକୁ ପୁଣି ମାରିବ କିଏ ?

ସେ ଘରକୁ ଫେରିଲା । ଗାମୁଛା ଖଣ୍ଡି ପାଲଟି ଦେଲେ, ଛିଣ୍ଡା ଲୁଗାପଟାକୁ ଗରମ ପାଣିରେ ଫୁଟେଇ ଚେମେଇ ନାହାକ ଦୋକାନରୁ ଅଧଲକର ସୋଡ଼ା ଆଣି ଦିହେଇ କାଚିଦେଲା । ଲୁଗା ଶୁଖିଲାରୁ ଛୁଞ୍ଚ ସୂତା ଆଣି ରଫୁ କରି ବସିଲା ନିଜେ । ବାପୁ ମା ଦେଖିଲେ । କିଛି କହିଲେ ନାହିଁ । ମନେହେଉ ଥିଲା ଛଡ଼େଇ ନେଇ ସେ ସିଲେଇ କରି ଦେବ । କିନ୍ତୁ ପାରିଲେ ନାହିଁ ! ଶୁକୁର, ତାକୁ ଏକୁଟିଆ ଛାଡ଼ି କଲିକତା ଗିବ—ଦୁଃଖ ଅଭିମାନ ତାକୁ

କାବୁ କରି ପକେଇଲା । ମନର ସେ ଫଟାକୁ ଯୋଡ଼ିବା ପାଇଁ ଛୁଞ୍ଚି ସୂତା ନାହିଁ ।

ବାପ୍ପାମା ଆଖି ଆଗରେ ଶୁକୁରି କଲିକତାକୁ ବାହାରି ଚାଲିଗଲା । ତଥାପି ସେ କିଛି କହିନାହିଁ—କହି ପାରିଲା ନାହିଁ ।

ଶୁକୁରି ଚାଲିଗଲା । ତାକୁ କେହି 'ଯାଆନା' ବୋଲି ପଦେ କହିନାହାଁନ୍ତି । ବାପ୍ପା ମା ବି କହି ନାହାଁନ୍ତି । ବାପ୍ପା ମାର ଲୁହ କହିଲେ ବା କହିଥିବ । ବାପ୍ପା ମାର ଛାତି କହିଲେ ବା କହିଥିବ । ମାର କାନ୍ଦଣା ଦେଖି ବାପ୍ପା ବି କାନ୍ଦି ଉଠିଲେ । କିଏ ଜାଣି ଅବା ତାର କାନ୍ଦଣା ମନା କରିଥିଲେ କରିଥିବ । କିନ୍ତୁ ଶୁକୁରି, କାହାରି କଥା ଶୁଣି ନାହିଁ ! ଘରୁ ବାହାରିଲା ବେଳେ ମୁଣ୍ଡରେ ଚୁଳାଟା ବି ବାଜିଲା ନାହିଁ ଟିକିଏ—ବାଜିଥିଲେ ଆଉ ଘଡ଼ିଏ ରହିଯାଇ ଥାନ୍ତା । ଦିନରେ ଶହେ ଥର ଶୁକୁରିର ଡେଙ୍ଗା ମୁଣ୍ଡରେ ସେ ବାଜେ । ଆଜି ଟିକିଏ ଛୁଇଁଲା ବି ନାହିଁ ତା' ବାଳର ଅଗକୁ । ଶୁକୁରି, ଆଜି ଭାରି ସବଧାନ । ଆଜି ଆଉ ଆଗ ଶୁକୁରି, ସେ ନାହିଁ । ସେ ଆଜି ଗମ୍ଭୀର । ବାପ୍ପାମାକୁ ଚାହିଁ ସେ ଟିକିଏ ହସି ବି ନାହିଁ । ଦୁଇ ଦିନ ହେବ ହସି ନାହିଁ । ଯିବା ଆଗରୁ ବାପ୍ପା ମା ସେ ନୂଆ ଲୁଗାଟା କେଉଁଠି ଲୁଚେଇଥିଲା, କାଢ଼ି ଆଣିଦେଲା । ଭାବିଥିଲା ଶୁକୁ ଆଶ୍ଚର୍ଯ୍ୟ ହେବ । ଖୁସି ହୋଇ ବାପ୍ପାମାକୁ ଚାହିଁ ଟିକିଏ ହସିବ । କିନ୍ତୁ କାହିଁ ! ତା' ମୁହଁ ଆହୁରି ଭାରି ହୋଇଗଲା । ଆକାଶରେ କଳା କଳା ବଉଦ ଦଗବୁଡ଼ା ଦୂର ଗଛ ମଥାନରୁ ଉଠି ଆସିଲା ପରି ।

ଶୁକୁରି ଚାଲି ଗଲା । ବାପ୍ପା ମାକୁ ଚାହିଁ ସେ ପଦେ କଥା ବି କହି ନାହିଁ । କହି ପାରିନାହିଁ । ଛାତି ଭିତରେ କଣ ଯେମିତି ଚିପି ରଖି ସେ ଅଣନିଶ୍ୱାସୀ ହୋଇ ପଡ଼ୁଛି । ଆଉ ଲୋକେ

ଢାଳେ ପାଣିବେ, ସେଇ ନାଳରେ ସେ ନାଆ'ସବୁ ଗୁଡ଼ି ଧରୁଛନ୍ତି । ମୁହଁଟା ଫୁଲି ଉଠୁଛି—ଟେଁଟେଁଇ ହଉଛି । ସେ ସ୍ୱଗେ ନାହିଁ । ରତନା ଉପରେ ସେ ରାଗି ପାରେନା । ରତନା କୁ ସେ ମାରେ । ମାରୁ ପଛେ, ସେ ତାକୁ ଭଲ ପାଏ । ସେ ଅହୁର କାହିଁକି ନ ମାରିଲା । ସେ ନିତ ନିତ ବାଳିଣୁ ଅସୁଣୁ ଦଶଥର ମାଡ଼ ଖାଇଥାନ୍ତା ପଛେ, ଶୁକୁର ତାକୁ ଛାଡ଼ି କଲିକତା ଗଲା କାହିଁକି ? ରତନାକୁ କାଏ ବାହେଡ଼ିଇଲା ପିଟିଲା ପର ସେ ଏଭ୍ୱା ଟେଭେ କରି ରଡ଼ ଛାଡ଼ିଲା । ଛୁଆଟା ମୁହଁକୁ ଗୁହିଁ ଦେଲା'ବେଳକୁ ସେ ଆଉ ସମ୍ଭାଳି ପାରୁ ନଥାଏ ।

ନଧିଆ ବୋଉ ଅସି ଯେତେ ସାଲୁଲେଇଲା, ବୁଝେଇଲା, ସେ ଆଉ ବୋଧ ହେଲା ନାହିଁ । ତାର ଜୀବ ହାଲିଆ ହେଇ ସେ ପଡ଼ିଗଲା—ପ୍ରାଣ ଛାଡ଼ି ଯିବ କି ଏବେ ! କିନ୍ତୁ ପ୍ରାଣ ଛାଡ଼ିଲା ନାହିଁ । ସେ ସହଜେ ଯିବାର ନୋହେ, ବଡ଼ ଝଟ୍ ।

କହିଁ ଅଘଧନ ସକାଳୁ ଉଠିଲା ବେଳକୁ ଅନେକଟା ଥଣ୍ଡା ପଡ଼ି ଆସିଲାଣି ଧରଣୀ । ଫଗୁଣ ଆସି ହେଉଛି । ଗୋବର ପାଣି ଦାଣ୍ଡରେ ପକେଇ ଦେଇ ଅଗଣା ଝାଡ଼ୁ ବସିଲା ରତନା । ଛୁଆଟା ଶୋଇଥାଏ—ସ୍ୱତ ଘଡ଼ିଏ ଥାଉଁ ଉଠି କାଁ କାଁ ହେବ, ପୁଣି ଶୋଇ ପଡ଼ିବ । ସେ ବାଟରେ ମଣିଷର ଗୁଲ ବି ପଡ଼ି ନାହିଁ । କାଉ କାଆ ହଉଥିବ ଆଉ କଣ୍ଢା ଶୀତ ଉପରେ । ସେ ଦେଖ ଶବଦ ଏତେ ଦୂରକୁ ଆସନ୍ତା ବେକମିଠ—ଏ ପଟରେ କୁଆ ବି ଉଡ଼ୁନାହିଁ ।

ଚିଣ୍ଡା ଲଟିବସି ରତନା ଭାବିଲା—ଧନ କ'ଣ ଏମିତି ଯିବ ?

ଧନପାଏ । ଧନ ସମସ୍ତଙ୍କର ପାଏ । ରତନା ଘର ପାଖକୁ ସେଠି ଜଗେଇ ମାହାନ୍ତ୍ର ଘର । ଜାଉଳର ଟୋଲାଏ । ତାର ବି

ଧନ ଯାଉଛୁ । ଗାଁ ସାରା ସମସ୍ତଙ୍କର ଧନ ଯାଉଚି । ରଉମାର ବ ଧନ ଯିବ । ନଯିବ କାହିଁକି ?

ତେଣୁ ଭୃଗୁମାହାନ୍ତି ଅସି ପଛଅଡୁ ପଚାରିଲେ—"ଶୁକ ଗୁରୁଗଲା, କଲିକତା, କୋଉଧନ—କାହାଲି ?"

ବାୟା ମା ଓଢଣୀ ଟାଣି ଅଣି, ବଂଶ ଖଡ଼ୁ ଉପରେ ଶଙ୍ଖା ମୁଠାକ ଝଣ୍ ଝଣ୍ କରି କରି ସେ 'ହିଁ' ଜଣାଇଲା ।

"ପଇସା ଭଡ଼ଉ କିଛି ଦେଇ ଯାଇଚି ନା ? ଚାକିରୁ କେତେଟି ?"

ବାପୁ ମା କିଛି ଜବାବ ଦେଲା ନାହିଁ । ଭୃଗୁ ମାହାନ୍ତି ପୁଣି କହିଲେ—"ଭଲ ଭଲ ଆଉ—ଦରକାର ପଡ଼ିଲେ ମୋତେ କହିବୁ " କହି ଗୁଲିଗଲେ ବାଟେ ବାଟେ ।

ବାଇସ୍ପା ମା ନଯି ବସିଲା । ଗୋବର ଧାଣି ପୂଅରେ ନରମା ସୂର୍ଯ୍ୟ କିରଣ ଟୋଳେଇ ହେଇ ଜୁଅ କନାରେ ପରସ୍ତେ ପରସ୍ତେ ଭାଙ୍ଗ ଖାଇ, ଜୁଅ ଢାଣ୍ଡିର ଘୁଇ ଭିତରେ ଅଳସ ଭାଙ୍ଗି ମୁଣ୍ଡୁଲା କାଟି ଯାଉଥିଲା ଟିଣ୍ଡା ଉପରେ ।

ନଥିଆ ବୋଉ ଆସି ପଚାରିଲା—"କଲେ ? ନପା ପୋଛି ସଇଲା ?"

"କିଏ, ନଥିଆ ବୋଉକି ? ଅସ,ଅସ, ହିଁ ଏଇ ପଇଲାଟର !"

"ମୁଁ ଯାଉଚି, କେତେ କାମ—ଶୁକୁରା କହିଗଲା କେବେ ଅସିବ ?"

"କିଜାଣି—ବର୍ଷେ କି ଛମାସ କେତେ ଧନ ଲାଗିବ—କିଛି ତ କହିଯାଇ ନାହାନ୍ତି ।"

"ମାସକୁ ମାସ ଟଙ୍କା ପଠାଇବ ତ ?"

"କିଜାଣି !"

"ମଲ୍ଲେ ଛଟକ ! ଘଇତା ଭଲକଥା ଗଲା ବୋଲି ମାଇପ ଅଉ ଦୁଆରେ ଗଲୁ କି ?"

"ସଗୁଚ ନିଧିଆ ବୋଉ ! ଅଖି ଫୁଟି—ସେ ମୋତେ ସନ୍ଦେକଥା କି କହୁ ଯାଇନାହିଁ ?"

"ଏ କି ଅଲକ୍ଷେଣି କଥା ! ଭଜାଛଆ ମିଣିପଠା କି ସେ ! କ'ଣ କହୁବ ତତେ—ନିଧିଆ ବାପ ଯେତେବେଳେ ବଞ୍ଚିଥିଲା—ଗୋଟାଏ ଧନ ସେଇଁ କୋଉଟିକି ଯିବ ଲ ଭଣ୍ଡି ଦେଇଯିବ—ସେକାଳ ସେ କଥା ଅଉ କାହୁଁ । ଏଣିକି ଏଣିକି ସ୍ତ୍ରୀ ସ୍ତ୍ରୀ ଗେରସ୍ତ ସବୁ କମିଗଲା ଛଡ଼ା ଛଡ଼ା ହୋଇ ଯାଉଛନ୍ତି ଲୋ । ହଉ ଥା, ମୁଁ ଅସେ—କେତେ କାମ ପଡ଼ିଛି ମୋତେଣେ । ମର ନିଧିଆ, ନିଧିଆରେ—ଟୋକାଟାକୁ ମୁଁ ଅଉ ପାରିବି ନା ।"

ନିଧିଆ ବୋଉ ଚାଲିଗଲା । ଏଡ଼ମା ନିପାପୋଛ ପାରି ବେଲ ଖଣ୍ଡିକ ମାଜି ପାଣି କଳସୀଟି ଧରି ପାଣିଆଣି ବାହାରିଲା । ମନରେ ଖାଲି ସେଇ କଥାଟା ଥରକୁ ଥର ଉଙ୍କୁଛି । ତାକୁ ସେ ଯେତେ ଲୁଚୁଛି ସେ ଅଉ ପୋଛୁ ହେଉନାହିଁ—'ସ୍ତ୍ରୀ ସ୍ତ୍ରୀ ଗେରସ୍ତ କମିଗଲା ଛଡ଼ା ଛଡ଼ା ହୋଇ ଯାଉଛନ୍ତି ଲୋ ମା !'

ସତେ କ'ଣ ଘଇତା ମାଇପେ ଛଡ଼ା ଛଡ଼ା ହୋଇ ଯାଉଛନ୍ତି ? ହେଉ ଯାଆନ୍ତି ? ଗୁରୁବ କ'ଣ ତା'ଠୁଁ ଛଡ଼ା ?

ଦତେନ ସେ ଛଡ଼ା ଛଡ଼ା ଥିଲେ । ସେ ଦିନ କେହି କାହାକୁ ଦେଖି ନ ଥିଲେ—ଜାଣି ନ ଥିଲେ—ଚିହ୍ନି ନଥିଲେ । କେତେ ବା ଛଡ଼ା ? ଏ ଗାଁ ଟପିଲେ ସେ ଗାଁ । ମଝିରେ ଏଇ ହଳ କିଆରିକ ? ସବୁ ନାଲିଖଣ୍ଡ ବାଙ୍କ ଗୋହିରୀ ସବୁ । ଦି' ଗଡ଼ ବଢ଼ି ଦେଇଛି ସେ ଗାଁ ଛାଇ ଏ ଗାଁ ବାଇକୁ । ଏଇତକ ଛଡ଼ା ତ ! ଏ ଛଡ଼ାଟା କେତେ ଦୂରରେ ରଖିଥିଲା ଧନେ ସେ ଦିହଙ୍କୁ ? କେହି କାହାକୁ

ଶବ୍ଦନ୍ତି ନାହିଁ—କେହି କାହାକୁ ଦେଖନ୍ତି ନାହିଁ—ଦେଖି ଜଥାନ୍ତି। ହୁଏ ତ ଦେଖିଥିଲେ, ଚିହ୍ନି ନ ଥିଲେ । ତା’ କୋହିଥିଲେ ଢୋଉଦନ ସେ ‘ତାକୁ ପଡ଼ିଲା ଦେଖିଲା, ଏମିତ ଦେଖିଲା ଦେଖିଲା ପରି ଲାଗିଲା ଏକମିତ ତାକୁ । ଯେମିତ କେତେ ଦନର ଚିହ୍ନା !

ସେଇ ଜାଗର ଦନ ତ ସେ ତାକୁ ପହିଲା ଦେଖିଲା । ଶୁକୁରକୁ ଦେଖି ସେ ବାଲ ବଲ କର ଅନେଇ ଥିଲା ସେ ଦନ। ଶୁକୁରକୁ ନୁହେଁ—ତା’ ହାତର ମୁଆଁ ଟାକୁ। କେଡ଼େ ବଡ଼ ମୁଆଁ ସେ—ତା ମୁଆଁରୁ ବଡ ହବ। ଶୁକୁର ବୋଉ ରତନୀକ କାଖେଇ-ଥାଏ। ତା’ ହାତରେ ମୁଆଁ ଟିଏ ଧରେଇ ଦେଇ ତାକୁ ଭୁଲେଇ ନେଇଥିଲା ସେ ଦନ। ରତନୀ ମନେପକେଇ ହସିଲା । ସେଇ ଭୁଲରେ ସେ କଣ ପଡ଼ିଗଲା ? ଶୁକୁର ଭୁଲେରେ ନୁହେଁ ? ଶୁକୁର ଉପରେ ସେ ରଗିଥିଲା ସେ ଦନ । ତୋର ରଗକୁ କଣ ଶୁକୁର ଆଜି ଶୁଝି ନେଇଛି ?

ଜାଗର ଯାତରା ଗୋଲଭିତରେ—ଅମେଇସା ରାତର ଅନ୍ଧାର ଦହରେ ଶୁକୁର ବୋଉ ରତନୀ ବୋଉ କ’ଣ କଥାବାର୍ତ୍ତା ହେଇଗଲେ। ଦହେଁ ଦହିଙ୍କ ମୁହଁରେ ଚଣା ଉଖୁଡ଼ା ଦେଇ କେତେ ହସିଲେ। ସଙ୍ଗୀତ ବସିଲେ—ସଂଗୀତ ନୁହେଁ—ସମ୍ବନ୍ଧୁଣୀ। ମନେ ପକାଇ ରତନୀ ପୁଣି ହସିଲା । ତାର ସଫା ସଫା ମନେ ନାହିଁ ସେ ଦନ କଥା । ଏଗୁଡ଼ା ଖାଲି ତା ମନରେ କଲପନା ପରି । ସପନ ଦେଖିଲା ପରି ଲାଗୁଛି । ସେ ସପନ ହଜି ଗଲାଣି। କେତେ ଜାଗର ଜାଗର ଭିତରେ ମହାଦୀପ ଜୁଟି ଲିଭିଗଲାଣି !

ସେ ଦିନ ସେ ଶକୁରକୁ ଦେଖିଲା ବୋଲି ପିନା କହୁଛି, କିନ୍ତୁ ସତ ସତ ସେ ତାକୁ ଦେଖି ନ ଥିଲା । ଆଉ କାହାକୁ ବା ଦେଖିଥିବ । କାହା କଥା ନେଇ ସେ କେଉଁଟି ଯୋଡୁଛି । ହୁଏତ କାହାରିକୁ ସେ ଦେଖିନାହିଁ ।

କିଜାଣି । ହୋଇ ଥିଲେ ବା ହୋଇଥିବ—ସେଦିନ ସେଇ ମହାଦେବ ମନ୍ଦିର ତଳେ ଶକୁର୍ ରଜନୀଙ୍କର ପଛରେ ଦେଖା । ସେକଥା କହୁଁଲେ କହିବ ମନ୍ଦିର ଆଗ ବୃଷଭଟା । ରଜନୀର କିନ୍ତୁ ମନେ ନାହିଁ । ସେ ବୃଷଭଟା ସେମିତି ଠିଆ ହୋଇଛି—ଟିକଏ ବୋଲି ବଢ଼ି ନାହିଁ କି ଛୁଡ଼ ନାହିଁ । ରଜନୀ କେଡ଼େଟେ ହୋଇଗଲାଣି ।

ନା—ନା—ଏକଥା ଖାଲି ସପନ । କେଉଁଦିନ ସେ ସପନ ଦେଖିଥିଲା କିଜାଣି ।

ଆଉ ଦିନେ ସେ ସେମିତି ସପନ ଦେଖିଲା—ଆଗ ଜନମରେ ସେ ହୋଇଥିଲା ରାଣୀ, ଆଉ ଶକୁର୍, ରଜା । ନାଁ-ନା-ରାଜକୁମାର, ଜେମାଦେଈ ! ଏ ରାଇଜର ରାଜକୁମାର, ସେ ରାଇଜର ଜେମା-ଦେଈ । ଦହିଁପାକ ବସି କଥା ଭାଷା ହେଉଥିଲେ ରାଣୀ ହଂସପୁରେ । ରାଜକୁମାର ଆସିଥାନ୍ତି ମାଲୁଣୀ ବେଶରେ । କେତେ ହସ, କେତେ ରହସ୍ୟ !

ଦୁଆରେ ଆସି ବାହ୍ମଣ ଭିକାରୀ ଡାକଦେଲା । ଶୁଣିଲେ ନାହିଁ କେହି । ଆଉ କିଛି କାନରେ ବାଜୁ ନ ଥିଲା । ବାହ୍ମଣଟା ଶରାବ ଜଣ କହୁ ଉଠିଲା । ଶତ୍ରୁଙ୍କ ପଡ଼ି ଗୁହାରିଲା ବେଳକୁ ସେ ଶାଇସ୍ୟ ଦେଉଛି—ତମକୁ ଆଗ ଜନମରେ ପ୍ରେମ ମିଳୁ—କିନ୍ତୁ ଦାନା ବନା ନମିଳୁ !

କାଦ ଭାଙ୍ଗିଗଲା । ଉପରେ ଘାସ ଉଠୁଥାଏ ପଡୁଥାଏ। କେତେବେଳେବେଳେ ସେ ଥିର ହେଲା । ଶୁକୁରି ବୋଧ ହେଲା ମନକୁ ଦାନା କନା ନ ମିଳୁ, ଯେଝା ଯେଝାକୁ ସୁଖ ପାଇ ରହିବେ ତ ? କିନ୍ତୁ ଦନା କନା ନ ମିଳିଲେ କଣ ସୁଖ ପାଇବା ବ ଏମିତ ଭୁଲିଯାଏ କି ସପନ ଫଳ । ଶୁକୁରି ସବୁ କଲିକତା ଭୁଲିଯାନ୍ତି ଆଜି ରଜନୀ—ରଜନୀ—

ନା-ନା-ସେ କାହିଁକି ରାଜକୁମାର ରାଜକୁମାରୀ ହେବାକୁ ଯିବେ । ରାଜାରାଣୀ ସେ କେବେ ନଥିଲେ । ରାଜାରାଣୀ ହେଇ ପୁଣି ଭିକାରୀ ଭିକାରୁଣୀ ହେବାରେ ଯେଉଁ ଦୁଃଖ, ସେ ଦୁଃଖ ତାଙ୍କର ନାହିଁ । ସେ ସେଇ ଭିକାରୀ ଭିକାରୁଣୀ ଅଇଲୁରୁ । ହୁଏତ କେବେ ଦିନେ ରାଜାରାଣୀ ହେବେ । ଶୁକୁରି କଲିକତାରୁ ଫେରିଲେ—

ନା-ନା-ଶୁକୁରି ସେ କି ଛଡା ଛଡା ହୁଅନ୍ତି । ସ୍ୱାମୀ ଗେରସ୍ତ ସବୁ ଆଜିକାଲି ଛଡା ଛଡ଼ା ବୋଲି କିଏ କହିଲା ? ଆଜି ଦୂର ହେଲେ ବ ସେ ଦୁହେଁ କେତେ ପାଖରେ ।

ଦିନ ଭୁଲିଯାଉଥାଏ । ସମସ୍ତଙ୍କର ଦିନ ଯାଏ । ଶୁକୁରିର ବ ଯାଉଥିବ—ଦୂର କଲିକତା ସହରରେ । ରଜନୀର ବ ଦିନ ଭୁଲି ଯାଉଛି ଏଠି—ସୁଖେ ଦୁଃଖେ । ଦିନ ଯାଉଛି—ଦିନପରେ ଦିନ କଟି ଯାଉଛି—ଏକ ଦୁଇ ତିନ ହେଇ—ଆଉ ଗଣି ହେଉ ନାହିଁ। ଏବେ ସେ ମାସ ଗଣି ଆରମ୍ଭିଲାଣି । କାହିଁ, ଶୁକୁରିର ଖବର କାହିଁ ?

ସତ ସତ କଣ ଶୁକରି ତାକୁ ଛାଡି ଭୁଲିଗଲା ! ଏଇ ଘର ଦ୍ୱାର, ଏଇ ପିଣ୍ଡା ଅଗଣା, ସବୁଠି ଶୁକୁରିର ଛାଇ । ସବୁଟି ଶୁକୁରି ଜଡ଼ିଛି—ବସୁଛି । ହେଇଟି—ସେଇଠି ସେ ବସି ହେସ

ବୁଣେ । ଓଃ—ସେଠି ସେ ବସି କରନ୍ତି ବାଡ଼ଅଏ । ଏଇ ଚଉକାଠ କେତେ ଅଳନ୍ତା ନ କରନ୍ତି ତା' ସଙ୍ଗରେ । ସବୁଠି ଶୁକୁର ଯେମିତ ଶଢା ଲେଖା ହେଲା ରୁପଧର ବସିଶ । ତାହିଁ ଶୁକୁରା ତାକୁ ଛାଡ଼ ଯାଇନାହିଁ ତ !

ଘରେ ଖାଇବାକୁ ନାହିଁ । ଶୁକୁରା ଯାହା ଦେଇ ଯାଇଥିଲା ଖରକକୁ, ସେ ସଇଲାଣି । ଉପସୁଣୀଠା କରବ କଣ ? ଶୁକୁରା ତାକୁ ଛାଡ଼ ଯାଇ ନଥିଲେ, ସେ ଅଜ ଏ ସ୍ଥାନସ୍ତା ହେଉଥାନ୍ତା କାହିଁକ ? ତାହାକୁ କହିବ ସେ ଏକଥା !

ମନେ ପଡ଼ଲା—ଭାଗୁ ମାହାନ୍ତି ! ତାହିଁ ? ଭାଗୁମାହାନ୍ତି ତ ସେଇପଟେ ଯାଇଚନ୍ତି ନିତ । ଅନ୍ଧ ତ୍ରିଗୁଣ ନାହାନ୍ତି । ଖାଲି କଟେଣର କନ୍ଟେଣଇ ଗୃହୁଁଥିବେ । ସେ ଗୃହଣୀଙ୍କ ଡ଼ରମାଡ଼େ । ତଥାପି ତାଙ୍କୁ ନକହୁ ଗୁରା ନାହୁ । ପର ଧୂରୁପଣା—ତାରେ କଏ କ'ଣ କହୁବ । ଝୁ—ବାପ ବୟସର ବୁଢ଼ାଠା, କଏ କଣ କହବ ? କହଲେ କହୁ । ସେ ଅଉ କଣ ପସସ୍ତଙ୍କ ମୁହଁରେ ହାତ ଦବକ ? କହବ ଯେ, କଣ କରବ ସେ—କିମିତ କହବ ତା ! ରତନୀ ଭାବ ମଧ ଭାବ ପାରୁ ନଥିଲା !

ଘାଇ ଅଧି ଢଳପାଟେର ହେଲାଣି । ରତନୀ ବସି ଘସ ଖାଉଛୁ ! ସାତ ସକାଳୁ ମୁହଁ ଅନ୍ଧାରିଆ ଦାନ୍ତ ଗୋହ୍ୱାଣ୍ଟିରୁ ଅଧ ପାଣଆଏ ଗୋବର ଅଣିଥିଲା । ଘସିପାଣି ହୋଇନାହିଁ—ଗୁଣ୍ଡା ଭରୁଣ ସେ ବସି । ନଧିଆ ବୋଉ ଠେଙ୍ଗାପର ଦାନ୍ତ କାଠିଠାଏ ମୁହରେ ଭର ମେଞ୍ଚା ମେଞ୍ଚା କ ଛେପମିଶା ଦାନ୍ତକାଠି ପାରୁ ଥୁ ଥୁ କରୁଛୁ, ଆସି ପହଞ୍ଚୁଲା—"କେଡ଼ଲ ବାଇଆ ମା, ସିବୁନି କ ଗାଧୋଇ ?"

ଏଇ ମାଇପିଟି,..ଦୁଃଖୀ ବୋଲି କି କ'ଣ, ଦେଲେ ଅପେ ଅହି ପସ୍କରେ । ଭଲମନ୍ଦ ପଦେ କଥା କହେ । କେତେ କଥା

କେତେ ଲୋକେ କହନ୍ତି ତା ନାଁରେ—ନା-ନା-ହଁ-ଛୁ-ଆଜି ତାର ବଳଅଛି ନା ବୟସ ଅଛି ।

ଯୁବା ବୟସରେ ଗିରସ୍ତକୁ ଖାଇଲା । ଏକୁଟିଆ ମାଇପି ଲୋକ—ଘରକୁ ଏକଲା ହେଲାକୁ, କରମ ଟୋପାଡ଼ଗଲାକୁ ପିନା ମିଏ ପାଦ୍ଧାପାରେ ତା କହୁକ—ଇଦ୍ରବାକୁ ବଦନ ଗାଇଲା । ପଣିଷ ଇମିତ । ନପାରଲା ଜୀବ ଉପରେ ସମସ୍ତିଙ୍କ ଅହନା । ଗରବ ମାଇପ ସମସ୍ତଙ୍କ ଝାପରା । ଯାହାର ଟଙ୍କାର ଅଛି, ଯେ ଜବଗଣ କରୁଛି, ସେ ଭଲ—ଲକ୍ଷେ ଅନଷ୍ଟ କଲେ ବ ଭଲ । ଯେ ବଚରା କାହାର ଭଲ ମନ୍ଦରେ ନଥାଏ, ଯେତେବେଳେ ପରର ଖିଜମତ କରେ କି ଦୁଃଖ ବେଳରେ ଦରଜ କରି ପଦେ କଥା କହେ, ସେଇ ଯେ ଖରାପ ।

ଦାନେଇଁ ଯାକ ଗାଧୋଇ ଗଲେ । ଶୀତ ଘୁଞ୍ଚିଥାଏ ଖରାମଣ୍ଡା ଭୂଇଁଉପରୁ, ଲୁଚିଥାଏ ଯାଇଁ ସାତ ତାଳ ପାଣିରେ ପୋଖରୀ ଭିତରେ । ଗୋଡ଼ ବୁଡ଼େଇଲେ ଦେହ ଶୀତେଇ ଉଠୁଛି । ଗାଧୋଇବାକୁ ଡ଼ରମାଡ଼ୁଛି, ତଥାପି ଗାଧୋଇବାକୁ ହବ ।

କାଣ୍ଡିଆ ବୋଉ ଝାମା ଇଟାରେ ଫଟା ଗୋଡ଼ର ମଳି-ବଳକାକୁ ଛଡ଼ଉ ଛଡ଼ଉ କହୁଲା—"କଲେ, କିଛି ଖବର ବାତନ ଅଇଲା—ଝିଅ କି ଏବସା ?"

"କାଇଁ ? କିଛି ନା ।" କଁସା ଖଡ଼ୁର ଜାବ ତଳେ ମଣିବନ୍ଧର କଳା ଦାଗକୁ ସଫା କରୁ କରୁ ଦାଇଆ ମା ନାହିଁ କଲା ।

"ତୁ ଚତୁରୁ କମିତ ନେଲୁ ?"

"ଠାକୁରେ ଜାଣନ୍ତି ନାନି । ମୋତେ ତ କିଛି ବୁଦ୍ଧି ଧିଶୁନାହିଁ, କମିତ ଚଳିବ । ସେଇଠା ପଗୃଇବ ପଗୃଇବ ବୋଲି ସକାଳ ପହରୁ ତୋତେ ମନେ ମନେ ଖୋଜା ହଉଚ । କୋଉଟିକି ହେଲେ ଧାନ କୁଟେଇ ନେଇ ଗୃଲ ଧାଙ୍ଗରେ ।"

ଧାନକୁଠା ? ହଁ, ଧାନକୁଠା । ଧାନ ସେ ନକୁଟିବ କାହିଁକି ? ଲୋକେ କହୁବେ ଭୁଆସୁଣୀଟା, ଘଇତା ଥାଉଁ ଥାଉଁ, ଘଇତା ବଳବନ୍ତା ଯାଇଣ ରୋଜଗାର କରିବାକୁ ମାଇପ ପର ଘରେ ଧାନକୁଟିବ !

ବଉଳୀ କୁଳରେ କାଳି ଲାଗିଯିବ । ଏଇ କଥା ଖଣ୍ଡ ଭଲ କାଳିଏର— ସେ ଆଜ ଘସିଲେ ମାଜିଲେ ବି ଛାଡ଼ିବ ନାହିଁ ।

“କାହାର ଧାନ କୁଟିବୁ ?” ନଧିଆ ବୋଉ ପଚାରନ୍ତି—“ଗାଁ ଯାକ ଯେତେଟିଁ ଧାନକୁଠା ଯାଉଛି—ସେତକ ଗାଁ ସଣ୍ଢକୁ ତ ନାଅଣ୍ଟ ।”

ସେତେବେଳକୁ ଧାନକାଟି ବଳଦ ଉପରେ ଲଦ ମୂଲିଆ ଫେରିଲେଣି ବିଲରୁ । ଏଥର ଧାନ ସେତେ ଭଲ ହୋଇ ନାହିଁ । ପଛନ୍ତି ବରଷା । ବୁଣା ହେଲା ଡ଼େରିରେ । ଆଗେ ବୁଣ୍ ପରେ ବୁଣ୍ ଗରଭଣାକୁ ସବୁ ହୂଣ୍ ମୁଣ୍ ହୋଇ ପାଚ ଆରମ୍ଭ କଲା । ତଥାପି ଧାନ ତ, ଧାନନୁହେଁ—ଦାନା—ଜୀବନ—ମା ଲକ୍ଷ୍ମୀ । ଆଉ ଦିନ କେଇଟା ପରେ ଏଇ ବଳଦ ଉପରେ ପଲାଣ ପକାଇ ମା ଲକ୍ଷ୍ମୀ ଗୁରୁବାର ସେଧ ଭୋଗ ଖାଇ ଖଳାରୁ ବାହାରି ଚାଲିଯିବେ ତାଙ୍କ ଚଞ୍ଚଳା ନାଆଁକୁ ସାର୍ଥକ କରି—ବଡ଼ ଲୋକଙ୍କ ଘରେ ଅଳସ ଭାଙ୍ଗିବା ପାଇଁ ।

ବିଲରେ ଖାଲି ଧାନର ଲହଡ଼ି ଖେଳୁଛନ୍ତି । କିନ୍ତୁ ଧାନ କାହିଁ ? ମାସ କେଇଟା ପରେ ଗାଁରେ ହା ହା କାର । ଧାନ ଖୁଣ୍ଟି ଖୁଣ୍ଟି, ସାଉଣ୍ଟି ସାଉଣ୍ଟି ଏଇ ମାସେ ଦମାସ କେତେ ଲୋକ ଚଳିଯିବେ—ଶିଳୋଞ୍ଛ ବୃତ୍ତି ଧରି । ତା ପରେ ? ଅଚ୍ଛା ଅଚ୍ଛା ଲୋକଙ୍କ ଘରେ ବି ସେଇ ଭାଜୁଣି—ଆଉ ଧାନକାହିଁ ? ଧାନକୁ କିଏ କ'ଣ

କୁଅଢ଼େ ହର ନେଇ ଯାଇଛ—ମା ଲକ୍ଷ୍ମୀଙ୍କୁ କୋଉଁ ଅସୁର ଆସି ହରନେଲେ ସମାନେ । ଲଙ୍ଗଳ ଫାଳରୁ ଜନମିଲା ସୀତାଙ୍କୁ ଦଶ ମୁଣ୍ଡିଆ ରାବଣାସୁର ମାୟାମୃଗ ଦେଖାଇ ଛଳକରି ନେଇଗଲା ସମାନେ । କେଉଁଠୁ ଅସୁର ସେ ରୂପ ଦେଖିଛ ! ତା ହାତ କେତେ ଟାଣ ଇସପାତରେ ବନ୍ଧା ହୋଇ ନ ଥିବ !

“ଗଣ୍ଡୁଙ୍କୁ ନଅଣ୍ଟି ?” ବାଇସ୍ତା ମା ପଚାରିଲେ ।

“ଅଧୁର କେତେ ଗଣ୍ଡେ-ତ ଖାଲି ବସିଚନ୍ତି—”

ବାଇସ୍ତା ମା ହାତରୁ ରକତ ଶୁଖିଗଲା । ଭେଲ ଭେଲକ ନିଧିଆ ବୋଉକୁ ଚାହିଁ ସେ କହିଲା—“ମୁ କ’ଣ କରିବ ନାନି ?”

“ମୁଁ ଦେଖେ । ଅଣ୍ଟା, ବସ୍ତୁପୁର ଯାଏ ଯିବୁ ?”

“ବସ୍ତୁପୁର ?” ଚମକି ପଡ଼ିଲା ରତନା ।

“ହଁ, ବସ୍ତୁପୁର ଇମିତି କେତେ କୋଶ ହୋଇଗଲା କି ? ଛୁ, ଏ ଗାଁ ସେ ଗାଁ ତ ଲାଗିଛି । ମଝିରେ ହାଡ଼ କେଇ ଖଣ୍ଡ । ରାଜେନ୍ଦ୍ର ଘର ତ ହୋଇଚାନିକିଅଁ ବଣ ପାଖରୁ ଚାହିଁଲେ ଦିଶେ !”

ତଥାପି ବାଇସ୍ତା ମା କିଛି କହିଲା ନାହିଁ । ନିଧିଆ ବୋଉ କହି ଚାଲିଥାଏ—“ଏ ଗାଁରେ ତ ଆଉ ଧାନ କୁଟା କାହାର ନାହିଁ । କେଇଟା ଘର କୁଟି ଖାଆନ୍ତି ! ଆଗରୁ କୁଟା ଚାଉଳ ବଜାରକୁ ଯାଉଥିଲା— ଏବେ ତ ବଜାରରୁ ଚାଉଳ ଆସୁଛି—ମଇଲିଆ ପାଣିଆ କିଣି ଖାଉଚନ୍ତି । କଳ ହେଙ୍କି କଳ ହେଙ୍କି । ରାକ୍ଷସ ଭଳି ଶୁଣ୍ଢ ଟେକିଛି ଉପରକୁ ଭସ୍ ଭସ୍ ଧୂଆଁ ବାହାରୁଛି—ମୁଁ ତ ଦେଖି ନାହିଁ—ସମିସ୍ତେ କହୁଚନ୍ତି ।

“ଏଇ ରାଉତ ଘର କୁଟି ଖାଆନ୍ତି ସବୁଦିନେ । କିମିତି କିଣି ! ତାଙ୍କର କଲିକତାରେ ଥାଆନ୍ତି ସମସ୍ତେ । ଏଠୁ ଚାଉଳ

ଲୁଚି ହୋଇ ଯାଏ, ସେଠି ଖରଚ ହେବାକୁ । ବଡ ଭଲମଣିଷ ସଇ । ବାଙ୍କ-ଚୁକୁର ପାଇବୁ ନାହିଁ । ନିତ କୁଟିଲ, ନିତ ଆଣିଲ । ଘରେ ସେମିତ ଝିଅ ବୋହୂ କ ବାବୁଭଇସ୍ନା ହୋ ହୋ ନାହିଁ । ବାସ୍ ଅପଣା କାମ କଲି ଗୁଲି ଅସିଲ । ଥାଇ ଥାଇ ଗଣ୍ଡା ଝିଜକଟିଏ ଥାଏ—ସେଇ ଗୃହସ୍ଥର । ଘରେ ସେଇ ମାଲିକ୍, ଘର ମନୁଷ । ତା' ମନ ଯିଏ ନେଇ ପାରିବ—ତାକୁ ସେ ସବୁ ବହୁଦେବ । ଯେତେବେଳେ ପରସନ ଥିବ ବୁଢୀ କହୁବ—ନେ—ତୋର ଯାହା ଲୋଡ଼ା ତା'ନେ । ମୋର କଣ ସରିଯାଉଛି କି ? ସେଠି ଯଦି ମନକରିବୁ ତ ଦିନକେଇଟାରେ ତୁଇ ହୋଇଯିବୁ ଗୃହସ୍ଥଘର ମାଲିକାଣୀ । ମନଇଚ୍ଛା କାମ କରିଯିବ, ଖୁସିରେ । କେହିପଦେ କହିବାକୁ ନାହିଁ, ମୁଁ ତ ଯାଇ ପାରୁନାହିଁ ସବୁଦିନେ । ଦୁନିଆଯାକ ସମସ୍ତେ ତ ଖୋଜିବେ—ନିଧିଆ ବୋଉ—ନିଧିଆ ବୋଉ । ନିଧିଆ ବୋଉ ଧିଅରେ କି ଜର ନାଗିଛି କିଜାଣି । ନିଧିଆ ବୋଉ କେତେ କା'ର ହବ ? ନିଧିଆ ବୋଉ ତ ଗୋଟାଏ—ଆଉ କ'ଣ ଦଶଟା ପାଞ୍ଚଟା ହେଇଛି କି ? ହଁ, ବଳ ଥିଲା, ବୟସ ଥିଲା, ନ ହେଲା ସମସ୍ତଙ୍କର କରୁଥିଲି, ଧରୁଥିଲି, ଗଣ୍ଠୁଥିଲି ଖାଉଥିଲି । ଆଉ ପାରୁନାହିଁ—ଏ ବୟସରେ । ସତେ ତୁ ଯଦି ଯାଆନ୍ତୁ ସେଠିକି ବାଇସ୍ନାବୋଉ, ତୋ ଭଳି ମଣିଷଟେ ପାଇଲେ ଗୃହସ୍ଥାଣୀ କେଡ଼େ ଖୁସି ହେଇଯାନ୍ତା !"

ତଥାପି ଡ଼ର ମାଡୁଛି । ଏତେବାଟ । କିଜାଣି କିମିତିକା ଲୋକ ଗୃହସ୍ଥାଣୀ । କିଏ କ'ଣ କହିବ କାଳେ—ଏତେ ଦୂରକୁ ଯାଇ ଧାନ କୁଟୁଛି ବୋଲି ।

ଯାହାହେଉ ପଛେ, ଯିବାକୁ ହବ । ନଗଲେ ନ ଚଳୁଛି । ଗଲେ କୁଳକୁଟୁମ୍ବକୁ ନାକ, ନଗଲେ କୁଳ ଭାସିଯାଉଛି । ଘର

କଣ ! ଯାହା ହଉ ସେ ଯିବ । ତଥାପି ଡର ଲାଗୁଛି । ଡର ଲାଗିବ ପ୍ରଥମେ ପ୍ରଥମେ—ଶୀତ ଦିନ ପାଣିରେ ବୁଡ଼ିଲା ପରି । ବୁଡ଼ି ପଡ଼ିଲେ ହୁଏତ ଡର ଭାଙ୍ଗିଯିବ ।

ବୁଢ଼ୀପଡ଼ା ବାଇଧୁଆ ବୋଉ ଉଠିଆସି କହିଲା—"ହଉ ଦେଖେଁ ।"

ସେମିତ ଡର ତା'ର ଭାଙ୍ଗି ଗଲାଣି କେତେ—ଶୀତ ଛାଡ଼ି ଯାଉଚି ।

"ଦେଖେଁ କ'ଣ ହେଲା ! କହିବୁ ତ ଆଜି ନେଇଯିବି । ମୋର ବେଳ ହବ ନହବ ।"

"ନାଃ, ଚାଲ ।"

"ଇଃ, ଛଟକା !" ନଧିଆ ବୋଉ ନୁଗା ପାଲଟି ପାଣି କଳସୀ ଧରି ବାହାରିଲା । ବାଇଧୁଆ ବୋଉ ବି କଳସୀ ନେଇ, ପାଣି ଉପରୁ ଧାଳ ଅଡ଼େଇ ପାଣି ଭରୁଥିଲା ।

ପାଣି ଆଣିବାକୁ ହବ, ସେମିତ ପେଟ ବି ପୋଷିବାକୁ ହବ । ଦଳ ଅଡ଼େଇ ଦେଲା ପରି ନାଜକୁ ବି ଏଡ଼େଇ ଦେଇ ଯିବାକୁ ହେବ । ପେଟପୋଷ—ନାହିଁ ଦୋଷ !

ନଧିଆବୋଉ କ'ଣ କହୁ କହୁ ଗୁଳିଯାଉଥିଲା । ଭଲ କଥା । ତାର ହିତକଥା । ସେ କାଲି ଏତିକି ବୁଝୁଛି । ଖାଲି ତା' ଆବାଜ ଶୁଣିଛି । ଆଉ କିଛି ଶୁଣି ପାରିନାହିଁ । ତା ମନଟା ଘାଣ୍ଟି ଚକଟି ହେଉଥାଏ ।

ଘରକୁ ଆସି ଲୁଣ ଟିକେ ନେଇଗଲି ପଖାଳ ଖାଇ ବସିଲା । ଭାତଗୁଣ୍ଡାକ ଲାଗିଲା ଛାଣ୍ଟିରେ । କାଲି ରାତିକା ରନ୍ଧା ଭାତତ ! ପଖାଳ ଦେଇଥିଲା ସେତେବେଳେ କେ—କେତେ ଡେରିରେ । ଝିଗଲାଣି । ଭାତଗୁଡ଼ାକ ସେମିତ ଜଳଜଳ ଯେମିତ ଜୀଇଛି ।

ସେଥିପାଇଁ ତଣ୍ଟିରେ ଲଟିକି । ନା—ଭୋଏ ମନେ କରୁଛି । ଆଖି ଛଳ ଛଳ ହୋଇଗଲା । କୋଳରେ ଛୁଆଟା—ଦୁଧ ଖାଉଛି ଶୁଖିଲା ଥନରୁ ।

କାଲିଠୁଁ ସେ ଯିବ ଧାନକୁଟିବାକୁ । ଏ କଥା ଶୁକୁରୀ ଜାଣିଲା କେମିତି ଯେ ଗାଳି ଦଉଛି ତାକୁ ? ଶୁକୁରୀ ଥିଲେ ବଡମାଛ ଧାନକୁଟି ଯିବାପାଇଁ କେବେ ଛାଡନ୍ତା ନାହିଁ । ସେ ନାହିଁ । ଟଙ୍କା ପଇସା ବି ନାହିଁ । ଖଟି ପତର ବି ନାହିଁ । ଭୁଅସୁଣୀ ମାଇପଟା, କରେ କ'ଣ ? କୋଳରେ ପୁଣି ଦୁଧଖିଆ ଛୁଆଟାଏ ।

ହେଲେ ବି ସେ ଯିବ କେମିତି ? ଶୁକୁରୀ ମନା କରିଛି—ଶୁକୁରୀ ମନା କରୁଛି—ସେ ଯିବ କିମିତି ? ଶୁକୁରୀ ମନାକୁ ନ ମାନି ସେ ଯିବ ପରଘରେ ଧାନକୁଟିବାକୁ ? ଶୁକୁରୀକୁ ଛାଡ଼ି ସେ ଚାଲିଯିବ ଏମିତି ? ଅଜାଡାଲିକା ଘଇତା ମାଇପେ କଣ ସତ ସତ ଏମିତି ଛଡା ଛଡା ହୋଇଯାଉଛନ୍ତି ? ଚାହିଁକି ? କାହାଲାଗି ?

ମୀତଗୁଣ୍ଡାକ ପାଟିକୁ ନେଇଛି, ତାକୁ ଦାଣିଲା ଯେମିତି ସେ ଭାତ ତା ପାଟିରେ ଅଟକି ଯାଉଛି—ଯାଉନି' ତଣ୍ଟି ଭିତରକୁ ।

ଠାମଢ଼ା । ଶୁଖୁଆର ମୁଣ୍ଡ କେଇଟା ପଡ଼ିଥିଲା ଶୁକୁରୀ ଦଣ୍ଡାସିରେ କଣ୍ଢିକାଳରୁ । ଭାତ ଗୁଣ୍ଡାକ ମୁହଁରେ ଭରି ସେ ଉଠିଗଲା ପଡର ଗଣ୍ଡାଏ ଜାଳି ମୁଣ୍ଡ କେଇଟାକୁ ପୋଡ଼ିଆଣି ଖାଇବ । ଦିଅସିଲି କାଠିଟାଏ ବି ନ ଥିଲା ପାଖରେ । ଶୁକୁରୀ ଦଣ୍ଡାସିଟାକୁ ଧରି ଲଗେଇ ମହାନ୍ତି ଦାଣ୍ଡକୁ ଯାଇ 'ମାଉସୀ ମାଉସୀ' ଡାକିଲା ।

ଦିନ ଏଇମିତି ଯାଏ । ଦଇବକୁ ତାଙ୍କ ଘର ଚୁଲିରେ ନିଆଁ ଥିଲା—ଖିଅଗିଅ ସଇଲାଣି କେତେବେଳୁ । ସେଟି ଶୁଖୁଆ ପୋଡ଼ିବାକୁ ନାଗମାଡ଼ିଲା ତାକୁ—ଏଇ ମୁଣ୍ଡ କେଇଖଣ୍ଡ । କାଠି

ଖଣ୍ଡକୁ ଭାଙ୍ଗି ଶମ୍ଭୁଟା କଣ୍ଠ କାଠ ଅଙ୍ଗାର ଖଣ୍ଡେ ଉଠେଇ ଆଣିଲା ଘରେ କୁଣ୍ଠା କେରେକରେ ନାଁ ଧରେଇବ ବୋଲି।

ବିକଳଇଟା ଅସି ପଖାଳ ହେଡ଼ାଣିରେ ମୁହଁ ମାରିଦେଲା । ସେ ତ ଅମୃତ ଲାଗୁନାହିଁ । ସୁଖ ବୋଲି ବଡ଼ ପାଟା ଭାଗ୍ୟରେ ଲୁଟିକାଏ ବି ପଡ଼େଇ ନ ଥାଏ, ସେ କିଛି କଥାକୁ 'ଅସୁଖ' ବୋଲି ମନେକଲେ ବଳେନାହିଁ ଦୁନିଆରେ । ଭାଗ୍ୟ ଯାହାକୁ ଅମୃତ ପାଇଛି, ସେ ଆଜ କାହାକୁ ଅମୃତ ପାଇଲେ ଦୁନିଆ ହସିବ—ଭାଗ୍ୟ ହସିବ—ମରଣ ବି ହସିବ ।

ସେଇ ଦଳେଇ ଅଇଣ୍ଠାକୁ ସେ ଖାଇଲା । ଜବରଦସ୍ତି ଗେଳିଲା—ଖାଲି ସେଇ ପିତାଶୁଖୁଆମୃଣ୍ଡର ମଡ଼ା ପୋଡ଼ା ଗନ୍ଧକୁ ନାକଅଗରେ ଲଗେଇ । ସେମିତି ଏଇ ଖାଇବା ପାଇଁ, ଏଇ ପେଟକୁ ଦାନାଗଣ୍ଡାଏ ଦେବାପାଇଁ, ତା ଭୁଲ, ତାର ଶୁଦ୍ଧ, ତାର ସଜ୍ଜିତ ସବୁକୁ ସେ ଶୁଖୁଆ କରି ଖାଇ ଯାଉଛି ।

ଯୁଦ୍ଧ ! ଭୀଷଣ ଯୁଦ୍ଧ ମଣିଷ ଭିତରେ ଓ ଖାଇବା ଭିତରେ ଏ ଲଢ଼େଇ ଲାଗିଛି । କିଏ କାହାକୁ ଖାଇବ ! ମଣିଷ ତାର ଆପଣା ଖାଦ୍ୟକୁ ନଖାଇଲେ 'ଖାଇବା' ତାକୁ ଶୁଖୁଆ କରି ଖାଇଯିବ । ସେଥିପାଇଁ ରଉମା ଅଜ ଖାଦ୍ୟକୁ ଶୁଖୁଆକରି ଖାଇ ଶିଖିଛି ।

କଲିକତାରେ ଶୁକୁରା କ'ଣ ଏଇଆ ଖାଉଥିବ ? ଘିଅ ଦୁଧ ତାକୁ ମିଳୁ ନ ଥିବ ? ଭାତ ଡାଲି ସେ ସନ୍ଧି ନଥିବ ! ତା ହେଲେ ସେ ଆଜ ରଉମାଠୁଁ ଛଡ଼ା ହେଲା କେମିତି ! ସେ ତ ଏତେ ପାଖରେ, ଏତେ ନିକଟରେ । ଯିଏ ଶୁଖୁଆ ଖାଇ ଶିଖିଛି, ସେ ପଗୁଷଡ଼ା ଶଜରେ ତୃପ୍ତ ହୋଇ ପାରୁଛି, ସେ ଯେତେ ଦୂରରେ ଥାଉ ପଛେ, ଆଉ ଜଣେ ଶୁଖୁଆଖିଆ ପଗୁଷଡ଼ାରେ ପୋଷା ଜୀବଠାରୁ ଦୂର ହୋଇ ନପାରେ—ଛଡ଼ା ହୋଇ ନପାରେ । ଏଇ

ଶୁକୁଆ ଏଇ ଗଳିକି ଏଇ ଅଳିଆ ଜୀବନଟାଇ ଘାଙ୍କର ଯୋଡ଼—ଫାସ—ଗଣ୍ଠି ।

ତା'ର ଭିତରେ ଘାଙ୍କର ଦିନପାଏ

ସେଇଦିନ ଦିନଶେଷରେ ରତନୀ ସଞ୍ଜ ପକେଇ କବାଟ କିଳି ଦେଉଛି—ସଞ୍ଜ ଗଡ଼ିଗଲାଣି—ଘନ ଅନ୍ଧାର—ମୁହଁକୁ ମୁହଁ ଦିଶୁନାହିଁ—ସେ ଏକୁଟିଆ ଡ଼ରେ, କବାଟ ଅଜାଡ଼େଇ ଅଣୁଥିଲା । ବାହାର ଗଳାଖଂକାର ଶୁଣି ପୁଣିଥରେ ଦୁଆର ମୁକୁଳେଇ ଗୁହିଁଲା—ଜଣେ ମଣିଷ ଠିଆ ହୋଇଛନ୍ତି ରାସ୍ତା ଉପରେ—ଖାଲି ଛାଇଟା । ତାକୁ ଡ଼ର ମାଡ଼ିଲା । ସେ କବାଟଟାକୁ ବନ୍ଦ କରିଦେଲା ଜୋର୍‌ରେ ।

ମନ ହେଲା ଚିଢ଼ିଏ କାନପାରିବାକୁ । ସେ ପାଖରୁ କିଏ ଶୁକୁରି ନାଁ ଧରି ଡ଼ାକିଲା ନା କ'ଣ ! 'ଶୁକୁରି !' ଆଜି କାହା ମୁହଁରେ ଶୁକୁରି ନା ଶୁଣିଲା କ୍ଷଣି ତାକୁ ଲାଗିଲା ସତେ ସତେ ଶୁକୁରି ହୋଇଛି ତା' ପାଖରେ ଆସି ଠିଆ ହୋଇଛି ।

ଭାଗ୍ୟମାହାନ୍ତି କହୁଥିଲେ—"ଶୁକୁରି ଟଙ୍କା ପଠେଇଛି ।"

ଶୁକୁରି ଟଙ୍କା ପଠେଇଛି ! ଛାତିଟା ଦାଉଁକିନି ନାଚି ଉଠିଲା । ଗୋଟେ ଛନିଆ । ଆନନ୍ଦରେ ବି ଛନିଆ ଥାଏ । ରତନୀ ଧୀରେ ଧୀରେ କବାଟ ଖୋଲିଲା । ଭାଗ୍ୟମାହାନ୍ତି ତା' ଘର ଦୁଆର ମୁହଁ-ଯାଏ ଗୁଞ୍ଜ ଆସିଲେଣି । କେତେ ଟଙ୍କା ? ରତନୀ ମନେ ମନେ ଫଟୁଥିଲା ।

ଭାଗ୍ୟମାହାନ୍ତି ଟଙ୍କା କାଢି କହିଲେ—"ନେ' ଧର !"

ରତନୀ ହାତପାତି ଦେଲା । ନାକଟା ଚେପିଛି ତା' ଦେହରୁ ନିଷ୍ଠିଦ୍ନ ଲାଗିଲେ ଟଙ୍କା ଧରିବ ବୋଲି । ଭାଗ୍ୟମାହାନ୍ତି ତା' ହାତ

ଚଟ୍‌କରେ ଟଙ୍କା ଦଶି ତା' ମୁଠାଟାକୁ ମୁଠେଇ ପକେଇ କହୁଲେ—"ନେ ରଖ୍—ହେପାଜତରେ ରଖିବୁ—ହଜେଇବୁ ନାହିଁ ।"

ଅଜଣା ଭୟରେ ରତନୀ ଶିହରି ଉଠିଲା । ଟଙ୍କା ଭାଳେ ହଜିଯିବ । ଏଇ ଭୟ ହେଲେ ହେଇଥିବ ଅବା !

ଭଗୁମାହାନ୍ତି ହାତ ଛାଡ଼ ଦେଇଥିଲା । ଗଲା ବେଳକୁ କହୁଗଲା "ରତନୀ ହାତଟା ତୁଅଙ୍କ ହାତ ଭଳି ବଡ଼ କଅଁଳ—ହାଣ୍ଡୁଆ ବାଣ୍ଡୁଆ ଘର ଝିଅ ବହୁଙ୍କ ହାତ ଭଳି ତ ଲାଗୁ ନାହିଁ ।"

ରତନୀ ଏଥର ଉତ୍ତର ଖୋଲ୍ ବୁଝିଲା । ହଠାତ୍ ବୁଝିଲା । ସେ ଟଙ୍କାକୁ ସେ ଭଗୁମାହାନ୍ତି ଉପରକୁ ଫିଙ୍ଗି ଦେଇଥାନ୍ତା । ତାର ମନ ହେଉଥିଲା । ଭଗୁମାହାନ୍ତି ଚାଲି ଗଲଣି ସେତେବେଳକୁ ! ରତନୀ ଟଙ୍କା ନେଇ ନାହିଁ—ନିଅଁ ନେଇଛି !

ଶୁକୁର କାହିଁକି ଏ ଟଙ୍କା ପଠେଇଲା ? ତାକୁ କିଏ କହୁଥିଲା ? ସେ ଧାନକୁଟି ପେଟ ପୋଷିଥାନ୍ତା । ସେଇ ଅନ୍ନ—ସେଇ ଭଲ—ଲକ୍ଷେ ଗୁଣ ତା' ପାଇଁ ।

ଶୁକୁର କାହିଁକି ଟଙ୍କା ପଠେଇଲା ? ପଠେଇଲା ତ ତା' ପାଖକୁ ନପଠେଇ ଭଗୁ ମହାନ୍ତି ପାଖକୁ କିଆଁ ପଠେଇଲା ? ଭଗୁ ମାହାନ୍ତି ନିଅଁ ନା ଚୂଲ୍ ନା ଗାଛ ?

ଟଙ୍କାଟିଏ । ଟଙ୍କାକରେ ସେ ଚଳିବ । ମାସ ମାସ ଚଳିବ । କେହି ଚଳିଥିଲା ନା ? ଟଙ୍କାକରେ ସେ ନିଜପେଟ ପୋଷି ଏଇ ଟୁଆଟାକୁ ବି ପୋଷିବ ପାଳିବ । ଏ ଟଙ୍କା ସେ ନ ନେଇଥିଲେ କ'ଣ ହେଇ ଥାଆନ୍ତା ?

ନା-ନା-ଶୁକୁର ଟଙ୍କାଟିଏ କେବେ ପଠେଇ ନାହିଁ । ଏଇ ଭଗୁମାହାନ୍ତି—ଭଗୁ ମାହାନ୍ତି ହଉଛି ନାଟର ଗୋବର୍ଦ୍ଧନ—ସେଇ ସବୁଟଙ୍କାଯାକ ମାଡ଼ି ବସିଛି । ଶୁକୁର ଶହେ ପଚିଶ ପଠେଇ ଥିବ ।

ନହେଲେ ଦଶ ପନ୍ଦର ପଇସା ଥିବ ଖୁବ୍ କମ୍‌ରେ । ଆଜି କଣ ଟଙ୍କାଟିଏ ପଇସା ସେ—କିଏ ପଚାରେ ! କ'ଣ କରିବ ସେ ଟଙ୍କାକରେ ? ନା—ସେ ଧାନ କୁଟିବ, ଧାନକୁଟି ପିବ ।

ତହିଁଆର ଦିନ ନିଧିଆ ବୋଉ ଯେତେବେଳେ ଆସି ପଚାରିଲା —"କିଲୋ ? କଅଣ ହେଲା ? ଯିବୁନା ରାଜଗଡ଼ ଘରକୁ ?" ରତନୀ ହଁ କି ନାହିଁ କିଛି କହି ପାରିଲା ନାହିଁ । ସେ ମନେ ମନେ ଛଅନ୍ଧ ହୋଇ ଯାଇଥିଲା । କିନ୍ତୁ ଗଡ଼ର ଚକ୍ର ନଥିଲା । ଶେଁ ଶେଁ ହୋଇ ପଚାରିଲା—"ନିଧିଆ ବୋଉ ନାନୀ, ମୋତେ ଚାଉଳ ସେରେ ଉଧାର ଦବୁ ?"

ରଡ଼ନୀ ବନ୍ଧୁରଲା—ଚାଉଳ ଧାର କରି ସେ, ଚଳିବ ଏଇ ନାଗେ କିଛୁଦିନ । କିଣି ଖାଇଲେ ଟଙ୍କାଟାରେ କେତେ ଚାଉଳ ହେବ, କେଇଦିନ ଚଳିବ ସେଥିରେ ? ତେଲ ଲୁଣ ଶୁଖୁଆ ଶାଗ ତ ଅଛି ପୁଣି ! ସେଇ ଟଙ୍କାକରେ ସେ ଦୋକାନ ସଉଦା କରିବ । ଆଜି ଉଧାର ଚାଉଳକୁ ସେ କଥାଟେ କହିଦେ ଶୁକ୍ରବାର ଟଙ୍କା ପଠା-ଇଲେ ନ ହେଲେ ନିହାତି ବେଳକୁ ଧାନ ପଧ କୁଟିବାକୁ ପଡ଼ିବ ତ ଧାନକୁଟି ଶୁଝିବ ।

ନିଧିଆ ବୋଉ ନାହିଁ କଲା ନାହିଁ । ଗୁଞ୍ଜାଟେଇରେ ସାଙ୍ଗେ ସାଙ୍ଗେ ବାଢ଼ି ଦେଲା ।

ସେତେରେ, ସେରକୁ ଦ'ସେର, ହେଲା ହେଲା ତିନିସେର ହେଲା । ନିଧିଆ ବୋଉ ଯେ ଥର ଚାଉଳ ଦେବା ବେଳେ ପଚାରେ—"କିଲୋ ! କ'ଣ ଥଣ୍ଡା କଲୁ ? ରାଜଗଡ଼ର ତ କାଲି କହୁଥିଲେ ତୋ କଥା । ସେଇ ରାଜଗଡ଼ର ରାଣ୍ଡୀ ଝିଅଟା ମ ! ମୁଁ ତାକୁ ଭୋଜଦିନୁ କହିଲିଣି ତୁ ଯିବୁ ଯିବୁ ବୋଲି । ସେ ଏବେ ମୋତେ କହୁଛି—ହଉ ଆସୁ । ତୋର ସୁଦ୍ଧା ବୟସ ବୋଲି ସେ

ଟିକିଏ ମୋଟା ଭଡ଼ ହେଉଥିଲା । ସ୍ୱଭାବର ସେ ପାଗଳା ପୁଅଟା ଘରେ ଅଛି ନା । ମୁ କହୁଲି—ଆଃ—ରଞ୍ଜନୀ—ଇମିତ ବନ୍ଧୁ ଗାଁ ଟୋକାଙ୍କରେ ନାହିଁ

"ପାଗଳା ପୁଅ ?" ରଞ୍ଜନା ପଚାରିଲା । ତା ମନରେ କାହିଁକି ଖଟକା ଲାଗିଲା ।

"ନାହିଁ ଲୋ, ପାଗଳା କାହିଁକି ହୁଅନ୍ତା । ଭଲ ଜୁଆନ ଟୋକାଟାଏ । ସ୍ୱଭାବ ତାକୁ ଯେତେ ପଢ଼େଇଲା ପଢ଼ିଲା ନାହିଁ । ଚଗଲା ଧଇଲା । ଖାଲି ଫେଲ୍ ଫେଲ୍ । ତା' ସାନ ଭାଇ ପଢ଼ିଯାଉଛି— କେତେ କଅଣ ଏବେ ସେ ପଢ଼ିଗଲାଣି । ଏଇଟାର ଆଉ ପାଠ ହେଲାନାହିଁ । ଏଣେ ତେଣେ ବୁଲିଲା । କେଇମାସ ହେବ ଘରେ ଆସି ବସିଛି । ଏଇ ବାଟେ ସାଇକେଲରେ ଦିନରେ ଶହେ ଥର ଯାଉଛି ଆସୁଛି, ତୁ ଦେଖି ନଥିବୁ କି । ଅସ୍ଥି ସୁନ୍ଦର ହଉଲ ହାଉଲ ଜୁଙ୍ଗା ଜୁଆନଟିଏ ମ ! ହିଁ ବଳିଲା ବଳିଲା ହାତ ଗୋଡ଼, ଦେହଟା ମଜବୁତ । ଏକା ପିଲାଟିର ସ୍ୱଭାବ ଚରିତ୍ର ଭାରି ଭଲ । ପାଠ ନପଢ଼ିଲେ କଣ ହେଲା—ଦୟା ଧରମ ଅଛି । ମନଟା ତାର ବଡ଼ ଉଦାର । ଗରିବଙ୍କ ଦୁଃଖ ଦେଖିଲେ ସେ ରହିପାରେ ନାହିଁ । ସେଦିନ କିଏ ଗୋଟେ ଆସି ଦୁଆରେ କାନ୍ଦିଲା । ଦେଇ ଦେଲା ଟଙ୍କାଟେ । ମୁଁ କେବେ ହାତପାତ ମାଗିନାହିଁ । ମାଗିଲେ—ଯାହା ମାଗିଲେ ଦେଇ ଦିଅନ୍ତା । ଟଙ୍କାର କଉଁ ଏବେ ଅଭାବ ଯେ ।

ରଞ୍ଜନାର ମନରେ କିମିତି ଟିକିଏ ଆଶା ହେଲା । ତା ଦୁଃଖ ଜାଣିଲେ ଯଦି—କ'ଣ ହେବ କିଏ ଜଣେ । ପୁଣି ଗୁଞ୍ଜିଲା ତା ଛାତିରେ ଲାଗିଗଲା—ଜୁଙ୍ଗା ଜୁଆନଟାଏ ।

ଡର ଆଉ ଦରକାର, ଦୁଇଟା ଭିତରୁ ଦରକାର ବଡ଼ ହେଲା । କାଖୁଆ ବୋଝ ଧାର୍ ଶୁଝିବାକୁ ହବ । ଖୁଲୁସତ କାହିଁ ଆଉ ଟଙ୍କା ପଠେଇଲା ନାହିଁ । ଧାନ ସେ କୁଟିବ, ନକୁଟି ଗୃସ କଅଣ । ସେ କାଷ୍ଟା ଜବାବ ଦେଲା—କାଲି ଯିବ ।

ସେଦିନ ସଞ୍ଜରେ ପୁଣି ସେ ଭୂତଟା ଆସିଲା । ସୁଲୁସୁଲିଆ ପବନ ବହୁଥାଏ । ଖୁବ ଶୀତ । ବାଦଲ ଖଣ୍ଡେ ଭାସି ଭାସି ଚାଲିଚି ଜହ୍ନକୁ ଢୋଉଁଚି ଲୁଚେଇ ରଖି ଦଣ୍ଡକେ ପୁଣି ଛାଡ଼ିବ ଧରିବା ପାଇଁ ଛାଡ଼ି ଦଉଥାଏ ଯେମିତି ।

ଭାଗୁମାହାନ୍ତି ଆରମ୍ଭ କଲେ—"ପଇସା ଅଛି ନା ସବୁଗଲାଣି, ବାଇସ୍ତା ବୋଉ ? ସଇଲେ ମୋତେ ମାଗିବୁ । ମୁଁ ତ ନଇତି ଏଇବାଟେ ଯାଉଚି । ନାଇଁ କ'ଣ ଗୋଟାଏ ? ଖୁଲୁସ ପାଞ୍ଚ ଟଙ୍କା ପଠେଇଚି । ତୋ ପାଖରେ ଖରଚ ହୋଇଯିବ—ମାଇପି ଲୋକ—କିଏ ଠକି ଭୁଲେଇ ନେଇଯିବ—କି କୁଆଡ଼େ ପକେଇ ଦେବୁ—ସେଥିପାଇଁ ଖୁଲୁସ ନେଇଥିଲା, ମୁଁ ରଖିଚି—କହିବୁ ତ ଦେଇଦେବି ।

ରତନୀ ଏଥର କଥା ନକହି ରହିପାରିଲା ନାହିଁ । ରାଗରେ ତା ଭିତର ଉଷୁମ ହେଇ ଆସୁଥିଲା । ନାକର ଥଣ୍ଡାଟା ଭାଙ୍ଗି ଯାଉଥିଲା ତା' ଗରମରେ । ତା' ପଇସା ରୋଜଗାର କରି ଟଙ୍କା ପଠେଇବ କଲିକତା ମୁଲକରୁ—ଇଏ କିଏ ହୁଚେଇ ପଣ୍ଡା ଆସିଲେ ଏଠିକି, ତା' ପଇସାକୁ ମାଡ଼ି ବସିବେ ଏଠି ! ସେ ବଟେଇ ଦେଇଥାନ୍ତା ସାଫ୍ ସାଫ୍ । କିନ୍ତୁ ପାରିଲା ନାହିଁ—ଭାଗୁମାହାନ୍ତିଙ୍କ ଡର ଆଉ ଲାଜ । ନକହି ନକହି ତଥାପି କହିଲା—ମୁଁ ପାଞ୍ଚ ସେର ଚାଉଳ ଧାର କଲିଣି—ଲାଗାନାହିଁ ।"

"ଅଛି ଅଛି, ବେଶ୍ ବେଶ୍, ଆଜି ଶୁକ୍ରବାର କି ? ଦେଇ ଦେବ । ଏଇଲେ ତ ପାଖରେ ନାହିଁ ଟଙ୍କା । ଦେବେଁ—ଓ ଟଙ୍କାଟିଏ ଅଛି—ନେଇ ଥା—ବାକୀ ତିନି ଟଙ୍କା କାଲି ଦେଇଗଲେ ହେବ ତ ?—ନେ—"

ଏଥର ଆଉ ଭୃଗୁ ମହାନ୍ତି ଟଙ୍କାଟାକୁ ଆଣି ହାତରେ ଗୁଞ୍ଜି ଦେଇ ଗଲେ ନାହିଁ । ଟଙ୍କା ଧରି ସେ ଠିଆ ହେଲେ ତା' ଜାଗାରେ । ଭାବୁଥିଲେ କି କଅଣ ରତନୀ ଯାଇ ତା' ହାତରୁ ଟଙ୍କା ନେଇ ଆସିବ । ରତନୀ ଗଲା ନାହିଁ ।

"ଚାଲେ ନେ—ନେଇଯା—ନଉନୁ—ମଲୁମ ନାଁ । ନାଇଁ ଆଉ ବୋଉଠି, ନା—ମୋର ପାଖରେ" କହୁଁ କହୁଁ ପାଖକୁ ଲାଗି ଆସିଲେ । ରତନୀ ହଁ କି ହୁଁ କିଛି କହିଲା ନାହିଁ । ସେ ଭିତରେ ଭିତରେ ଥରୁଥାଏ । ରାଗରେ କି ଭୟରେ କି ଜାଣି !

ଭୃଗୁମହାନ୍ତି ଏଣିକି ତେଣିକି ଦି'ଥର ଚାହିଁଲେ । ରତନୀ ଦେଖି ପାରିଲା । କେହି ନାହାନ୍ତି କୁଆଡେ । ସେ ନିଶ୍ଚିନ୍ତ ହେଲେ କି ଭୟ କରି ବୁଝି ପାରୁ ନଥାଏ । କାଳେ କିଏ ଦେଖି ନେବ । କିନ୍ତୁ କେହି ଯଦି ନ ଆସନ୍ତି ତେବେ ଏ କଥାଟା ଆଗେଇ ଆଗେଇ କେତେ ଦୂର ଯିବ କିଏ କହିବ ।

"ଭଲରେ ଲାଙ୍ଗୁଳି !" କହି ରତନୀର ସେଇ ଶ୍ଲେଟ ଓଣତର ଅପେର କାନରୁ ଗୋଟେ ପାଖି ଧରି ପକେଇଲେ । ରତନୀ ଚମକି ପଡ଼ି ପଛକୁ ହଟି ଯାଉଥିଲା । କିନ୍ତୁ ବେସବମ 'ହେଇଯିବା ଉପରେ ଗୋଡ଼ ଅଟକି ଯାଇଥିଲା—ଅଟକାଇଲାରେ ପଶିଲାପରି ।

ଭୃଗୁମହାନ୍ତି ପଣତ କାନରେ ଟଙ୍କା ବାନ୍ଧି ଦେଇ ଗଲେ ବାହାର ଖଣ୍ଡେ ଆଗକୁ, ରତନୀ ସେମିତି ଅନେଇ ଥାଏ—ଦାରୁ-ଭୂତ ପରି । ଦପାଦ ଆଗକୁ ଯାଇ ପୁଣି ଦି'ଥର ଏଣିକି ତେଣିକି

ଗୁହିଁ—ସେବ୍ରପର୍ ତା’ ପାଖକୁ ନାଚିଆସି କହୁଲ—“ରତନା, ଭୁଲବୁ ନାହିଁ—ମୋ ଗଣଟି ।”

ଗୁରୁ ମହାନ୍ତ୍ର ଗୁଲିଗଲ । ରତନା ସେମିତ ଅନେଇ ଥାଏ, “ରତନା, ଭୁଲବୁ ନାହିଁ, ମୋ ଗଣଟି !” ଏକଥା ଗୁରୁ ମହାନ୍ତ୍ର କହୁଗଲ ନା ! ଏଇ କଥା ତାକୁ ଯେମିତ କଏ ଜୋରକୁ କହୁଣ ଅଗରୁ । ସେ କଥା ସେ ଦିନ କେଡ଼େ ମିଠା ଲଗିଥିଲ—ଆଜ ଏମିତ ଭର୍ପି ଯାଉଣ କମିତ ଦେହଣ୍ଟା ଯାକରେ ।

ନାଁ, କେହି ତାକୁ କହୁନାହିଁ ସେ କଥା ଅଗରୁ । ତାର ମନ ତାକୁ କହୁଛୁ ସେ କଥା । ଶୁକ୍ରୁବ ଯେତେବେଳେ ଗୁଲିଗଲ—ଯିବ, ଯିବ ହେଉଥାଏ—ରତନା କେତେଥର ମନରେ ଭାବନ୍ତୁ—ତାକୁ ସେ କ’ଣ କହୁ ବଦେଶ ଯିବ । ଧିବୁ ଦିନକୁ ମନେ ରଖିଲ ଭଳି କ କଥାଟେ ସେ କହୁଯାନ୍ତା । ସେଇ କଥାକୁ ଘେନି ସେ ଧାନ କାଟନ୍ତା । କନ୍ତୁ ସେ କଛୁ କହୁଲ ନାହିଁ । ନିର୍ମମ୍ବା ପୁରୁଷ ସେ । ପାଟି ବ ଫିଟେଇଲ ନାହିଁ । ଖାଲ୍ ଏତକ କହୁଗଲ—ବାଇସ୍ବା ଲଡ଼ିଲ । ବାସ୍ବା. ତ ଲଡ଼ିଶ—ବାସ୍ବା କ’ଣ ଲଗିନାହିଁ କ । ସେ ନକହୁଥିଲେ କଣ ଲଗି ନ ଥାନ୍ତା କ । ବାସ୍ବା କ’ଣ ତା’ର—ଶୁକ୍ରୁବର ଏକା ଏକା—ରତନାର ଭାଗ ନାହିଁ ।

ତଥାପି ସେ ଧାଇଁ ଯାଇଁ ବାସ୍ବାକୁ ବଛାଲୁ ଟାଣିଆଣି ଗୁଡ ଭିତରେ ଯାକ ଧରିଲ ।

ଶୁକ୍ରୁବ ଛଡ଼ା ଛଡ଼ା ନୁହେଁ । ଶୁକ୍ରୁବ ତା’ ପାଖରେ । ଶୁକ୍ରୁବ ତାର ଖୁବ୍ ପାଖରେ । ହେଇଟି ଶୁକ୍ରୁବ କହୁପାଉଛ—ବାଇସ୍ବା ତାକୁ ଲଡ଼ିଲ—ବାସ୍ବା ତାକୁ ଲଡ଼ିଶ—ଶୁକ୍ରୁବର ବାଇସ୍ବା ରତନାକୁ ଲଗିଛୁ । ବାଇସ୍ବାର ବାପ ଶୁକ୍ରୁବ । ଶୁକ୍ରୁବ ଆଉ ରତନା ଭିତରେ ବାଇସ୍ବା ଲଡ଼ିଛୁ—ବାନ୍ଧିଛି—ଶୁକ୍ରୁବକୁ, ଆଉ ରତନାକୁ । ଶୁକ୍ରୁବ ତାଠୁ ଛଡ଼ା ଛଡ଼ା ହେବ କମିତ ? ହେଇ ପାରବ କମିତ !

ପଣତର ଝଙ୍କାଟାକୁ ଅଣ୍ଡାଳି—ପୁଣି ଭଲ ଭବ ଗଣ୍ଠିଟାଏ ପକେଇ ଦେଲା । କ'ଣ ମନହେଲା ପୁଣି ତାକୁ ଫିଟେଇଲା । ସେଇ ଅନ୍ଧାରରେ ସ୍ଲେଟ ଠେକଟିଏ ଅଣ୍ଡାଳି ଅଣ୍ଡାଳି ବାହାରକଲା । ତାହି ଦହରେ ଝଙ୍କାଟିକୁ ନେଇ ଗଲେଇ ପକେଇଲା ।

ଦାଣ୍ଡରେ ଟୁକ୍‌ଟୁକନା ଶବ୍ଦ । କିଏ ! ରତନୀ ଡରିଲା ।

"ମୁଁ !" ନଧିଆ ବୋଉ ପାଟି । କିନ୍ତୁ ଖୁବ ଅସ୍ତେ— ଡାକୁଥିଲା ସେ ।

ରତନୀ ଯାଇ କବାଟ ଖୋଲି ଦେଲା । ଜହ୍ନ ଆଲୁଅରେ ନଧିଆ ବୋଉ ମୁହଁଟା ହସିଲା ହସିଲା ଦିଶୁଥିଲା । ସେଟି ଗୋଟାଏ ଫୁଲ୍ଲ ହସ । ସେ ହସ, ହସ ନୁହେ—ସେ ଗୋଟାଏ କାଳହସ— ମହାକାଳ ଫଳର ହସ ସମାନ । ସେ ହସ ହସି ନଧିଆ ବୋଉ ରତନୀକୁ ଖୁସି କରିବାକୁ ଯେତେ ଖୁଣ୍ଟୁ ନଥିଲା, ତାଠୁଁ ବେଶୀଥିଲା ଆପଣାକୁ ଖୁସି କରିବାପାଇଁ—ଆପଣାକୁ ହସେଇବାର ଇଚ୍ଛା, ଯଉଁ ହସ ପରର ସୁଖ ଦେଖିଲେ ଉଠେ, ସେ ହସ ନୁହେଁ । ପରର ଦୁଃଖରେ, ପରର ପତନରେ ସେ ହସ ହସେ ମଣିଷ । ପରକୁ ପକେଇ ନିଜେ ଉଠିଲେ ଯଉଁ ହସ ହସେ, ମଣିଷ ସେ ହସ ବି ନୁହେଁ, ଯିଏ ଖସଡ଼ାବାଟରେ ଖସି ଗୋଡ଼ହାତ ଛଡ଼େଇଲାଣି, ସେ ଆଉ ଜଣକୁ କଚଡ଼ା ଖାଇବାର ଦେଖିଲେ ତା ଭିତରୁ ଯଉଁ ହସଟା ଉଠେ, ସେଇ ହସ ଯିମିତି ଏ ।

"କିଲୋ, ସେ କିଏ କି ?"

"କାହିଁ !" ରତନୀ ଚମକି ପଡ଼ିଲା ।

"ଇସ୍ ମୁଁ ଯିମିତି କିଛି ଦେଖିନାହିଁ—ଭାରି ମାହାଲିଆ ଟିପିଏ !"

"ଦେଖିଛୁ ତ, ପୁଣି ଛଇ ହଉଚୁ ?" ରତନୀ ରାଗିଗଲା ।

"ବଡ଼ ମାଛ ପଡ଼ିଛି ରତନୀ, ଜାଣିବୁ ସେହ୍ମା ଶକୁଡ଼ ନାଗେଇ —ସାବଧାନରେ ଢୁପିଆରେ ବନଶୀ ଧରିଥିବୁଟି ! ମାଛକୁ ଖେଳେଇ ଖେଳେଇ ସେ ହାଲିଆ ହବ ତେବେ ଯାଇଁ ବନଶୀ ଟାଣିବୁ । ନଇଲେ ବନଶୀ, କଣ୍ଟା ସବୁ ଯିଅଡ଼େ—ଜାଣିଥା ।"

"କି ଅକଥାଗୁଡ଼ା କହୁ ଯାଉଚୁ ତୁ ନଧିଆ ବୋଉ ନାନୀ । ଲେକେ କଣ କହୁରେ ।"

"ଅକଥା କଣକଲି ? ଏକଥା କୋଉଟି ହଜନ ଦନଥାଏ ?" ତୋ ବଅସ, ତୋ ରୂପ ଯଦି ମୋଟିଁ ଥାଆନ୍ତା—ଯା ହାଃ—ଦେଖନ୍ତୁ ପରୁଣତା ଭାଗୁ ମାମାନ୍ତୁଙ୍କି ଯଦି ତୃହି ଧରି ନ ଝଟାନ୍ତି ନ ଦସାନ୍ତି ତ ମୋ ମୁହଁ ନୁହେଁ ।"

"ଛି ପାପ କଥା; ନାଜ କଥା ମିଛାକ କହନା ନାନୀ !"

"ପାପ କଥା ? ନାଜ କଥା ? କି ପାପ ? କି ନାଜ ? ମଣିଷଙ୍କୁ ନାଜ ନାହିଁ ? ମଣିଷଙ୍କର ପାପ ନାହିଁ—ସେ ଆସି ପରହିଆ ପର ବହୂ ଭୁଆସୁଣୀଙ୍କି ଅଣ୍ଟାରିବେ, ଖଣ୍ଡ ଅଧରେ ଛପି ଛପି ଆସି ପୀରତି କରିପିବେ, ତାଙ୍କୁ ସବୁ ସୁହବ, ଆଉ ଆମେ ମାଇପେ ହେଲୁ ବୋଲି ଆମର ମନ ନାହିଁ, ଅବମାନ ନାହିଁ—ଆମେ କୋଉଁଟି ଟିକେ କାହାକୁ ଗୁହିଁ ହସିଦେଲେ ତ ଆମେ ହେଇଗଲେ ଅସତୀ, ଦୋଗୁଚରଣୀ, ହେମଣୀ ବେଶ୍ୟା ।"

ରତନୀର ମନେ ହେଲା, ତା ଭିତରୁ କେତେଦିନର ଜମିଲା, ଦମ୍ଭିଲା ଉହ୍ମର ନଆଁ ଯେମିତି ଥରି ଜଳୁଛି । ସେ କାଳେ ଭୁସ୍କୁଡ଼ ପଡ଼ିବ, ସେଥିପାଇଁ ସେ ଅଡୁର ଡରିଲା ।

"ମଣିଷଙ୍କୁ ସେ ଶୋଭାପାଏ ।" ରତନୀ ମୁହଁ ଶୁଖେଇ କହିଲା ।

"ଶୋଭାପାଇବ ନାହିଁ ? ତାଙ୍କର ହାମତଅଛି । ଏ ଗାଲରେ ଚୂନ ସେ ଗାଲରେ କାଳି ଲଗେଇ ବି ସେ ବଡ଼ ଦାଣ୍ଡରେ ଘୂଡ଼

ଫୁଲ୍‌ଭଳି ଗ୍ଭଲ୍‌ପାରନ୍ତି । ଆଜ ଆମେ ପାଇପେ—ଆମେ ଖାଲ୍‌ ଘର ଭିତରେ କାନ୍ଦନ୍ତାଣ୍ଡି । ଆମେ ମନକଲେ କ'ଣ ତାଙ୍କପରି ଅଲ୍ପକୁକ ବେହିଆ ହୋଇ ପାରିବା ନାହିଁ ?"

"କ'ଣ ଯେ କହୁ ନାନୀ !" ରତନୀ ହସିଲା ।

"ମୁଁ ସତ କହୁଚ—ହକ କହୁଚ । ଭାଗୁ ମାଦାନ୍ତ୍ରୁ, ବୁଢ଼ାଟା, ସେ ତୋ ସାଙ୍ଗରେ ବଡ଼ ଅଧରେ ପୀରତି କରିବାକୁ ଲଡ଼ ଲଡ଼ ଛପି ଛପି ଆସୁଥିବ, ତାକୁ ନାଜ ମାଡ଼ୁନ୍ଲ ନାହିଁ—ଅଜ ତୁ ଯୁବତୀଟା—ଗିରସ୍ତ ଘରେନାହିଁ—ତୁ ଯଦି ତାହାକୁ କେତେବେଳେ ଭିଲରେ ପଦେ କଥା କହିଦେଲୁ, ତ ଦୁନିଆ ଓଲଟି ପଡ଼ିବ—ତୁ ନିଲଜୀ ହୋଇଯିବୁ । କ ତାହିଁକ ?"

ରତନୀ ଗ୍ଭଡ ଥରି ଉଠିଲା । ତାର କମ୍ପିତ ମନେ ହେଉଥିଲା, ରତନୀ ଗୋଟେ କ ନୂଆ କଥା କହୁଚ—ଗୋଟେ ନୂଆ ବାଟ ଦେଖାଉଚ—ଯଜ ବାଟଟା ବଡ଼ ସିଧା । ବାପ ଘରକୁ ଯିବାବେଳକୁ ସେ ହବୁଦନେ ଯେଉଁ ବାଟେ ଯାଏ, ଏ ସେ ବାଟ ନୁହେଁ । ଅନୁର ସିଧା ସଳଖ । ଏ ବାଟରେ କାହାରିକ ଉପର ଜଙ୍ଗଲ ନାହିଁ । ତାହାରିକ କହ ବୋଲି ଯିବାକୁ ହୁଏ ନାହିଁ । ଅପଣା ମନକୁ ବାହାରିହି ଗ୍ଭଲ୍‌ଯିବ—ସ୍ୱାଧୀନ୍‌ । ତଥାପି ଏ ସିଧା ବାଟଟା ବଡ଼ ନିଛଟିଆ । ହୃଦ୍‌ଗତ କୁଳାଏ ନାହିଁ । ଭାରି ଭୟ । ନା-ନା-ସେ ବାଟେ ସେ ଯିବ ନାହିଁ । କାହିଁକି ଯିବ ? କ ଗରଜ ? ଯେ ବାଟରେ ନ ଶୁଭୁବ ନାହିଁ । ଶୁକୁଙ୍କୁ ନକହି ସେ କଉଠିକି ଯିବ ! ନା-ନା-ଯଜ ବାଟରେ ଶୁକୁଟ ନାହିଁ, ସେ ବାଟ ତା'ର ନୁହେଁ । ଶୁକୁବ ସେ ଛଡ଼ା ଛଡ଼ା ହୋଇ ନ ପାରନ୍ତି ।

"ଅଲୋ ତୁଣ୍ଡିଟା," ନନ୍ଦିଆ କନାଇ ମୁଣ୍ଡ କହୁଚ—"ମୁଁ କଣ କହୁଚୁ, ତୁ ତା ସାଙ୍ଗରେ କହ ବୋଲି—ପାପ ପୀରତି କର-

'ବୋଲ୍ । ଏ କଥା କିଏ କହିବ ! ମୁଁ ଠିକ୍ ତାର ଓଲଟା କଥାଟା କହୁଛି । ମୁଁ ତୋତେ ସାବଧାନ କରି ଦେଉଛି । ଯୁବା ବୟସ । ମନ ଚଞ୍ଚଳ । ଚଟ୍ଟାଦେଣ୍ ଫେଣ୍ଡ଼ିଯିବୁ ନାହିଁ, ଭୁଲିଯିବୁ ନାହିଁ, ଠିକ୍ଏ ଖେଳେଇ ଖେଳେଇ ମାଛ ଧରିବୁ । ଧରିବାର ହେଲେ ଧରିବୁ, ନହେଲେ ଛାଡ଼ିଦେବୁ । ଭାଗୁ ମାହାନ୍ତି ପଇସାବାଲା ଲୋକ । ପର ପଇସାରେ ଘର କରିଛି । ବାହ୍ମଣ ଘର ପଇସା, ରାଣ୍ଡିଖଣ୍ଡିଙ୍କ ପଇସା—କେଉଁ ଦିନ ! ସହିବ ନାହିଁ—ସେ ପଇସା ତାକୁ ସହିବ ନାହିଁ । ଏ ଶୈଳ୍ୟର ସାଙ୍ଗ ଦେମାସ ଗଡଘରବୁଡ଼ାଙ୍କୁ ଦୟାନାହିଁ — ଧରମ ନାହିଁ ! ଏ ପରଛନ୍ତି ଶପୁଛନ୍ତି—ଯାଙ୍କ ତଣ୍ଟି ଯିଏ ଚେପୁଛି ଶପିବ; ତାର ସେତେ ଧର୍ମହବ । ଯାଙ୍କ ପଇସାକୁ ଯେତେ ଲୁଟିବ ସେତେ ଭଲ । ଯାଙ୍କର କି ପଇସା ? ପର ତଣ୍ଟି ଚାଟି ଘର କରିଛନ୍ତି—ଯାଙ୍କର କି ଧନ ? ବୁଝିଲୁ ନା, ମୁଁ କଣ କହୁଛି ?"

ନଧିଆ ଚବାଳ ଉଡ଼ନୀର ଆହୁରି ପାଖକୁ ଲଗେଇ କହିଲା, —"ତୁ କେବେ ଧରା ଛୁଅଁ ଦେବୁ ନାହିଁ । ସାବଧାନ ! ମୋ କଥା ମାନି ଥା' । ମୁଁ ଯେମିତି କହୁଛି ସେମିତି କର । ଖାଲି ଠିକ୍ଏ ଠିକ୍ଏ ଅଙ୍ଗୁଳି ଦେଖଉଥିବୁ ପୁଣି ଲୁଚେଇ ଦେଉଥିବୁ । ଠିକ୍ଏ ବେଶି ଦେଖେଇ ଦେଲେ, ଏକାଠାକେ ବାହାରିଲା ଯିବଟି ! ସେ ସବୁତ ବାହାଗିଲା ମଣିଷ । ଭାଗୁ ମାହାନ୍ତି କି ଯେ ଚିହ୍ନି ନାହିଁ, ତା ସାତ ବାପକୁ ଚିହ୍ନି ନାହିଁ ସେ । ତୁ କିଛି କହିବୁ ନାହିଁ । ଖାଲି ସେ ଯେତେବେଳେ କଥା କହିବ, ତୁ ପଦେ ପଦେ ଜବାବ ଦେଉଥିବୁ । ଦିଲ୍ ଖୁଲ୍ ଲୁଚି ଯିବୁ ନା । ସେ କଣ ଦେଉଛି ଆଗେ ଦେଉ । ଟଙ୍କା ପଇସାରେ ଭୁଲିଯିବୁ ନାହିଁ । ବଡ଼ ବେଳେ ଲୋକଟେ ଶିଖ ଏତେ ନାଗର । ଲୁଗା ଦେବ—ବେଢ଼ୀ ଦେବ । ତଥାପି ତୁ ହୁଣ ପଡ଼ିବୁ । ଖାଲି ଦେଲେ ଦେଲେ ଏଣେଇ ଏଣେଇ ରହିବୁ

ଦଉଥିବୁ—ନହେଲା ଖୁବ୍ ବେଶୀ ହେଲେ ୫୦ କଣିଆ ହସ ଫିକେ—"

ହାତରେ ଠେଲିଦେଲା ନିଧିଆବୋଉ ରତନୀକୁ ଗେଲ୍‌ରେ—ଥଟାରେ ! ରତନୀର ଦେହ ନିଆଁ ହେଇଗଲା । ସେ କ'ଣ ବୋଲି କଣ କାନ୍ଦିଆଳର ଆଖି ଭଏ ହେଇଥିଲେ । କହୁଁ କହୁଁ ସେ ଆପଣାକୁ ସମ୍ଭାଳି ଭୁଲି ପଡ଼ିଗଲା ।

କରଞ୍ଜ ଗଛ ଉପରେ ବାଦୁଡ଼ି ଡେନାଝାଡ଼ା ଫଡ଼୍ ଫଡ଼୍ କରି ଉଡ଼ିଗଲେ ସେତିକି ବେଳେ ।

"ହଁ ଲୋ, ମୁଁ ଏଥର ଜାଣେ ସେ ଭାଗୁମାହାନ୍ତି କ—ରୁ ଯଦି ଟିକିଏ ଅଣ୍ଡେଇ ଦେଇ ରଖିବୁ, ଟିକିଏ ହାଣ ଦେଖେଇବୁ ତ କେତେ ଗହଣା, କେତେ ଶାଢ଼ୀ, କେତେ ଶଙ୍ଖ ପାହା ଗୁହାରୁ ତା' ।"

ଗହଣା ? ରତନୀର ଆଖି ଝଲସି ଗଲା । ଗହଣା ନାଇଲେ ଅସୁନ୍ଦର ଯେମିତି ସୁନ୍ଦର ଦିଶେ, ଗହଣା ପିନ୍ଧିଲେ ପାପଷ୍ଠା ବି କ'ଣ ସେମିତି ଲାଗେ ? ଜହ୍ନ ସେତେବେଳକୁ ବଡ଼ ବୁଡ଼ି ଆସିଲାଣି । କମିତିଆ ବନମାଟି ରଙ୍ଗ ଧରି ଆସୁଥାଏ । ଲାଜପାଣ-ଗାଲ ପରି ।

ନିଧିଆ ବୋଉ ଗୁଳିଗଲା । ଗୁଳିଗଲା ନୁହେଁ—ସେ ଗୁଳିବାର ଅର୍ଥ ସେ ପୁଣି ଆସିବ—ଏଣିକି ନିତି ନିତି ଆସିବ ସେ ଏଇ ଜହ୍ନ ଭଳି । ତାର ଆଉ ଅନ୍ଧାର ପକ୍ଷ ନ ଥିବ । ଭାଗୁମାହାନ୍ତି ଅସୁ ନ ଅସୁ ସେ 'କହିନୁ ନିତି ଆସିବ । ଆଉ ଭାଗୁ ମାହାନ୍ତିର ଛୁଞ୍ଚପରି ସେ ତା' ପଛେ ପଛେ ଗୋଡେଇ ଥିବ । ତାକୁ ଦୁଃସ୍ବପ୍ନର ନିବଣ ନଢ଼ଲା ଯାଏ ଯେମିତି ତାକୁ ଆଉ ଛାଡ଼ିବ ନାହିଁ ସେ । ରତନୀ ନିଧିଆ ବୋଉକୁ ଡରିଲା ।

ନିଧୂଆ ବୋଝ ଆଗରେ ସେ କିଛି କଥା ଲୁଚେଇ ପାରେ ନାହିଁ । କେମିତି ଲୁଚେଇବ ? ଭାଗୁମାହାନ୍ତି ଯଉଁଦିନ ଆସେ, ସଉଁଦିନ ଯାହା କହେ, ସବୁ ସେ ନିଧୂଆ ବୋଝ ଆଗରେ କହି ପକାଏ । ତା' ମନଭିତରେ ସେ ପାପ ରଖିବାକୁ ଡରେ । ପାପ ? ହଁ ପାପ ! ଯଉଠାକୁ ମନ ଭିତରେ ଲୁଚେଇ ରଖିବାକୁ ଇଚ୍ଛା ହୁଏ ସେଇଠା । ଖୋଲି କହିଦେଲେ ପାପର ମାତ୍ରାଟା ଯେମିତି କମିଯାଏ ।

ଭାଗୁମାହାନ୍ତି କି ସେ କଥା କି କହେ ନାହିଁ । ତଥାପି ତାର ଡର ହୁଏ । ଭାଗୁମାହାନ୍ତିର ଛାଇ ପଡ଼ିଲେ ସେ ଚମକି ପଡ଼େ । ଭୂତକୁ ଡର ମଣିଷ ସମସ୍ତଙ୍କ ଆଗରେ ନ କହିବାଯାଏ ମଣିଷ ଯେମିତି ଶାନ୍ତି ପାଏ ନାହିଁ, ବତନୀ ସେମିତି ନିଧୂଆ ବୋଝ ଆଗରେ ନ କହିଲେ ଥୟ ଧରି ରହି ପାରେ ନାହିଁ । କେମିତି ରହିବ ? ଏଇ ନିଧୂଆ ବୋଝ—

କେତେ କଥା ନ କହିଛି ସେ ତା ଆଗରେ । କେତେ କଥା ନ ଜାଣେ ସେ । କେତେ କଥା ଅଙ୍ଗେ ନ ନିଭେଇଛି ସେ । ତାର ପ୍ରେମ ଗୋଟିକେ ଘଟଣା ଗୋଟିଏ ତା ଜୀବନର । କେତେ କହିଛି—ଆଉ କେତେ ଅକୁହା ରହିଛି । ଯାହା କହିଛି ତାଠୁଁ ଯେମିତି ରହିଛି ଢେର ବେଶି । ଯାହା ଜୀବନ, ଯୋଥି ପୁରାଣ ପରି ଏତେ ଗହନ, ପୁଣି ଏତେ ମନଲଗା ତା ଆଗରେ ଲୁଚେଇ ହବ କେମିତି ଏଇ ଶ୍ରେଷ୍ଠ ଶ୍ରେଷ୍ଠ କଥାଗୁଡାକ । ଲୁଚେଇ ପାରିବ କେମିତି ମଣିଷ ! ଲୁଚେଇଲେ ବି ତା ଜାଣିନବ ସେ ।

ଏଇ ନିଧୂଆ ବୋଝ—

କିଏ ଅଛି ତାର ? ପୁଅ ବୋଲି ସେଇ ବଳଟେ । ତାର ବା କି ପୁଅ ? ପାଳକ ପୁଅ, କି ଝୁଅ ବୋଲି କି ଝୁଅ—ବେଧ ଝୁଅ

କି ଗଧକୁଅ କିଏ ଜାଣେ । କି ଜାତି ବୋଲି କି ଜାତି । ଜାତି ପଛରୁ ଛାଡ଼ କି ଯାଏ ।

ସେଦିନ ସେ ଫମ୍ପା ଫମ୍ପା କହୁଥିଲା—ଜାତି ? କି ଜାତି ? ମୋର କି ଜାତି ? ମୋତେ ଗାଁଯାକ ସମସ୍ତେ ମିଶି ଜାତିରୁ କାଢ଼ି ଦେଇଚନ୍ତି । ମୁଁ ବି ସେମିତି ଗାଁବାଲାକୁ ଜାତିରୁ କାଟି ଦେଇଛି । ଛଟାର ଏଡିକି, ମୁଁ ମୋ ଜାତି ନେଇ ବୁଲୁଥାଏ—ଗାଁ ଅଗକୁ ଭଲ ମନ୍ଦରେ ଧାଏଁ ନାହିଁ । ଆଜି ଗାଁର ଅଧେ ଭେଣ୍ଡିଆ ଲୋକ ଏଇ ଅଜାତି ପାଖକୁ ଦଉଡ଼ି ଆସନ୍ତି । ଜାତି ମାରୁଛନ୍ତି । ଦେଖି ନାହିଁ ମୁଁ କି ଜାତି । କାହାର ଜାତି ଅଛି ? କିଏ ଜାତି ନ ମାରିଛି ? ଆଜି ମୁଁ ଗଣ୍ଡ ମାଇପିଟିଏ ବୋଲି ମୋର ଦେହରେ ଅଠା ଲାଗି ଯାଇଛି । ଶ୍ରେଷ୍ଠୀ ବରାଡ଼ ଅସୁର୍ପାକୁ ଚାଉ । ପଇସାବାଲା, ଥିଲା ଘର ଲୋକେ, ଇଞ୍ଜି ମିଞ୍ଜି ପଢ଼ୁଚନ୍ତି, ସହର ବଜାରରେ ପଠାଣ ଚମାରଙ୍କ ଖାଉଚନ୍ତି, ତାଙ୍କ ଜାତି ଯାଉନାହିଁ—ସେ ଆସିଲେ, ଗାଁରେ ହେବେ ମୁଖିଆ, ବାହ୍ମଣ ପାଖରୁ ପାଆନ୍ତି ଯାଏ ସମସ୍ତେ ମାନିବେ ମୁଣ୍ଡିଆ ତାଙ୍କୁ—ପାଣି ପଠାଣ କବରସ୍ଥାନ ଯାଏ ହୁଅନ୍ତୁ, ଦି ଅକ୍ଷର ବହି ପାଠ ପଢ଼ି ଫିରି ଆସିଲା—ତା ଗୋଡ଼ତଳେ ପଡ଼ିମିବେ, ତା ଯୋତା ଧରିବେ, ଅଇଣ୍ଠା ଗୁଣ୍ଡିବେ—ସମସ୍ତେ—ସେତେବେଳକୁ ଜାତି ଯାଏ ନାହିଁ—ଆଉ ମୁଁ ମାଇପିଟିଏ ବୋଲି, ନିର୍ଗୁଣ ବୋଲି, ମୋର କେହି ନାହିଁ ବୋଲି, ଗୋଟିଏ ଅବନ୍ଧ ବେଙ୍ଗଆରସୀ ଜୁଆଟିଏ ଆଣି ପାଳିଲି ବୋଲି ମୋ ଜାତି ଗୁଳିଗଲା । ମୁଁ ଏ ଗାଁ ଯାକ ସମସ୍ତଙ୍କ ଜାତି ନ ନେଇ ଛାଡ଼ିବି ?"

ଜାତି ନବା ପାଇଁ ସେ ଯିବା ଧମକ ଦେଲା, କିନ୍ତୁ ଜାତି ସେ ଅନେକଙ୍କର ନେଇଛି—ଏ ଗାଁରୁ । ସେ ନିଜେ ଥରେ ହସି ହସି ଖିଆଲରେ କହିଲା—"କାହା ଜାତି ନ ମାରିଛି ମୁଁ ।"

ହଁ, ଏଇ ନିଧିଆ ବୋଉ । ତାହା ଜାତି ନ ମାରିଲେ ସେ । ଗାଁର ସବୁଯାକ ବଡ଼ ଢେଉଆ, ବଡ଼ ପଣ୍ଡା, ଯିଏ ଜାତି ଜାତି କରି ଛାତି ଫୁଲାଇ ଚାଲନ୍ତି, କୁଳ ମର୍ଯ୍ୟାଦାକୁ ମୂଲ କରି, ଜନମକୁ ବଡ଼ ବୋଲି କହୁ ସମାଜରେ ଯାହା ହେଲେବି ଚାଲନ୍ତି—ଶ୍ରେଷ୍ଠ ଜାତି ଇତର ଜାତି ବୋଲି କହୁ କହୁ ସମସ୍ତଙ୍କୁ ନାକ ଟେକନ୍ତି—ତାଙ୍କର ଯେ ବଡ଼ ଜାତି, ବଡ଼ପଣିଆ କୋଉଠି ଥାଏ !

ଜାତି ? ଜାତି ଅଛି ମନୁଷ୍ୟ ମନର ଗଣ୍ଠି ଭିତରେ । ସେଦିନ ନିଧିଆ ବୋଉ କେତେ ଦମ୍ଭରେ କହିଲା ଏ କଥା । ଶ୍ରେଷ୍ଠ ଜାତିକି ଛୋଟ ଜାତି କରୁଛି ଏଇ ଟଙ୍କା—ଆଉ ବଡ଼ ଜାତିକୁ ଶ୍ରେଷ୍ଠ ଜାତି କରୁଛି ଏଇ ଟଙ୍କା । ମାଇପେ ଯଦି ଟଙ୍କା କମେଇ ପାରିବେ, ତେବେ ତାଙ୍କ ଜାତି ଏତେ ସହଜରେ ଯିବ ନାହିଁ । ବାଳୁଙ୍ଗ ପଣ୍ଡା ନାହାକ ଘର ଗରିବ ହେଇଗଲେ । ସେଦିନ ପୁଣି ତାଙ୍କ ପୁଅ ବାହା ହେଲା ଖଣ୍ଡେଇତ ଘରେ । କହିଲେ କହୁଚନ୍ତି—ସେ ଖଣ୍ଡେଇତ ନାହିଁକି ହେବେ—ମହାନ୍ତିଙ୍କ କେତେ ମହାନ୍ତିଙ୍କ ଘରେ ବନ୍ଧୁ କରି-ଛନ୍ତି । ସତକଥା ହେଉଛି—ଖଣ୍ଡେଇତ ବି ନୁହେଁ—ନିପଟ ମଣ୍ଡି ଚଷା । ନିର୍ଘାତ ଚଷା ଘରେ ବନ୍ଧୁ କରି ପକେଇଲେ । ଯାଙ୍କର ପୁଣି ପୁଅ । ପୁଅକୁ ବି କନିଆ ମିଳିଲା ନାହିଁ, ଆପଣା ଜାତିରେ । ନୂଆ କଥା ଛାଡ଼ ।

ଆଉ ଭୂୟାଁ ଘର କଥା କିଏ ନ ଜାଣେ ! ଭୂୟାଁରୁ ମହାପାତ୍ର । ମହାପାତ୍ରରୁ ପୁଣି ମହାପାତ୍ର । ଏଇକ୍ଷଣି କିଏ ଖାଲି ପୁଣି ବୋଲୁଛି କେଉଁନା—ଆମେ ଯେମିତି । ବଳ ପଇସା । ବଢ଼ନ୍ତେ ଯେମିତି, ଛୁଟନ୍ତେ ଚଷା । ଏଇ ପଇସାର କାରସାଦି । ପଇସା ହେଲେ ଜାତ ଆସି ପିଠି ପଛେଇ ଦବ । ଉଜାଘର ଆସି ବନ୍ଧୁ କରି ଗୁଳିପିବ—ଭୂୟାଁ ଘରେ କଲେ ତ । ମଣିଷ-ଜାତ ପଇସା ।

ଏଇ ପଇସା—ନଧିଆ ବୋଉ ଭଳେ କହୁଛି—ଜାତି ଦିଏ ଅଉ ଜାତି ନିଏ । ଜାତି ନେଇ ସାରୁ, ଅଜାତିଆ ଫମ୍ପା ମଣିଷଟାକୁ ପୁଣି ଜାତିଆ ପୋଷାକରେ ସଜେଇ ଗୁଜେଇ କମିତି ଠାବଫ କରି ଦିଆ କରିଦିଏ ଯେ, ଜାତି ନାହିଁ ବୋଲି କିଏ କହିବ ? ଜାତି ଅଛି ଏଇ ପୋଷାକରେ—ଏଇ ଫେସନରେ । ଜାତି କ'ଣ ଅଉ କୋଉଠି ଥାଏ । ତମେ ଆମେ ହାଣ୍ଡୁଆ ବାଣ୍ଡୁଆ ଇତର ଜାତି କାହିଁକି ? ପୋଷାକ ନାହିଁ—ଫେସନ ନାହିଁ ବୋଲି—ଟଙ୍କା ପଇସା ଅମକୁ ଭଲ ପିନ୍ଧେଇ, ଭଲ ସଜେଇ ବାହାରକୁ ଦେଖେଇ ହବାକୁ ଗୁଡ଼ ଦେଉ ନାହିଁ ବୋଲି । ଭିତରେ କୁକୁରଠୁଁ ବି ହୀନ ହେଇ ବାହାରେ ବାବୁ ବୋଲି ଅପଣାକୁ କହି ପାରିବାର ସାହସ ନାହିଁ ବୋଲି ।

ସାହସ କମିତି ହବ ? ପଇସା ହେଲେ ସବୁ ହବ—ଅଉ ସେ ବାବୁଆନ ପାଠ ଧ' ଅକ୍ଷର । ସେ ବି ପଇସା ହେଲେ ହବ—ନ ହେଲେ ନାହିଁ ।

ନଧିଆ ବୋଉ କଥା ସବୁ ଭାଗବତର ଶୁକ ପରୀକ୍ଷିତ ସମ୍ବାଦ ଭଳି । ନଧିଆ ବୋଉ ଏତେ କଥା ଜାଣିଲା କୋଉଠୁ ? କଣ ନଧିଆ ବୋଉ ପରି ହେଲେ ସବୁ ମାଇପେ ଏତେ କଥା ଜାଣି ପାରିବେ । ଅଛା, ନଧିଆ ବୋଉ ଅଧିକା କଣ ହେଇଚି ? ହେଇନାହିଁ କଣ ? ଡର ବୋଲି ତା ପାଖେ ଛୁଇଁ ନାହିଁ । ଏ ଡର ତାର ଭାଙ୍ଗିଲା କମିତି ?

ନଧିଆ ବୋଉ ଥିଲା ଅଜାତି । ନଧିଆ ବାପ ଜୁଆନ ଥିଲା-ବେଳେ ଯୁା ପ୍ରେମରେ ପଡ଼ିଲା । ପଡ଼ିବା କଥା, ନଧିଆ ବୋଉ ଏବେ ବି—ଏ ବୟସରେ କେଡ଼େ ସୁନ୍ଦର ସତେ ! ବୟସ ଗୁଳାଣ୍ଡ ପାର ହୋଇ ଗଲାଣି ! ତଥାପି ସେ ବନ୍ଧୁଟି ଏ ଭଳି ବେଳେ ବେଳେ

ଦଶି ଯାଏ। କହୁଥିଲା, ଅଗରୁ ବଡ଼ ଅଡ଼ୁର ମୋଟା ମୋଟି ଥିଲା ଏବକୁ ଝଡ଼ ଗଲଣି। ଝଡ଼ିଯିବା କଥା। ବଅସ ତ ପୁଣି ଯାଇଛ ତାହାର ବହୁତ ବୟସ।

ନଧିଆ ବାପ ଥିଲା କରଣ। ଖାନଦାନ ଘର ଥିଲା। ପଛନାହାକ ପଡ଼ାରେ ତା ଘର। ଏବେ ବି ତାର ସେ ଘର ଅଛି, ତା ବାପ ଗୋସାଇଙ୍କ ଉପରେ। କାନୁଡ଼ା ହେଇ ଠିଆ ହେଇଛି ଭଜଘର। ପାଖକରେ ଅଛି ତା'ର ବଅଁଶରେ ତା ଭାଇର ଝିଏ ପୁଅ ଓ ପୁତୁରା ହବ—ଏବେବି ବଅଁଛି ସେ କୁଳରେ ବତି ଦେବାକୁ।

ନଧିଆ ବୋଉ ଗୃହଣୀ। ଚଷାଘର ଝିଅ। ହେଲେ କ'ଣ କ ଗୋରା ସେ। ବୟସ ବେଳରେ କେଡ଼େ ତୋରା ଦଶୁ ନ ଥିବ। ନଧିଆ ବାପ ତା ରୂପରେ ଭଲଯିବା ଇମିତ କ ବଡ଼ କଥା କ!

ନଧିଆ ବୋଉ କପାଳରେ ଧାନ କୁଟିବାର ଥିଲା, କୁଟୁଛି। ପେଟ ପୋଷୁଛି। ବାପ ଘର ବି କେହୁ ପଗୁରନ୍ତି ନାହିଁ। ନଧିଆ ବୋଉ ତାଙ୍କ ଝିଅ ବୋଲି ଚିହ୍ନା ବି କେହି ଦିଅନ୍ତି ନାହିଁ। କେଉଁ ସଂପର୍କ ବହୁବ ବା କମିତ!

ଏ ଜାତ କାହାଁକ ରହୁବ ? ନଧିଆ ବୋଉ ସେଦନ କହୁଲା, ଯଉଁ ଜାତ ବାପ ମାଙ୍କ ପେଟରୁ ମମତାକୁ କାଢ଼ି ଟିକ ଟିକ କାଟି ଫିଙ୍ଗି ଦଏ, ଯଉଁ ଜାତ ଭାଇକ ଭଗାର କର ଠିଆ କରଇଦଏ, ସେ ଜାତକୁ ପୁଣି ଏତେ ଖାତର। ଛି! ଥୁଃ! ଧିକ ସେ ଜାତ, ଜାତ ବଡ ହୋଇଗଲା। ରକତର ଭାଇ ଭଉଣୀ, ପୁଅ ଝିଅ ସଂପର୍କ ତୁଟିଗଲା ?

ନଧିଆ ବୋଉର ଜାତ ନାହିଁ—ପତି ନାହିଁ—କିଛି ନାହିଁ!

ପ୍ରତିବର୍ଷ ଏଇ ମାଘ ଏକାଦଶୀକୁ ତିନିଦିନ ଧରି ଚବିଶ ପ୍ରହରୀ କୀର୍ତ୍ତନ ହୁଏ, ତାଙ୍କ ଗାଁରେ । ଦଳଦଳ ଡାଇଫା ଡାଇଫା କୀର୍ତ୍ତନ କରି ଆସନ୍ତି କେତେ କେତେ ଗାଁରୁ । ସମସ୍ତଙ୍କୁ ନିମନ୍ତ୍ରଣ ଯାଏ । ଦାସଙ୍କ ଘର ସେଥିରେ ଥାନ୍ତି ମୁଖିଆ । ଗାଁ ସାକ ସମସ୍ତେ ରୁନ୍ଧା ଦଅନ୍ତି । ଦାସଙ୍କ ଘର କୁଳାଣ ଅକୁଳାଣ ସବୁ ଭୁଲନ୍ତି । ତିନି-ଭାଇରେ ଗୋଟିଏ ଭଉଣୀ ନିଧିଆ ବୋଉ । ବୁଢ଼ା ଦାସ ବଞ୍ଚିଥାଏ । ବୃଦ୍ଧୀର । ନିଧିଆବୋଉ ସେତିକିବେଳକୁ ଯୁବତୀ ।

ନିଧିଆ ବାପ ପଞ୍ଚନାହାକବଡ଼ା କୀର୍ତ୍ତନ ଦଳର ଗାହାଣି । ଟେକଡେଙ୍ଗୁ ସୁନ୍ଦର କଣ୍ଠଥିଲା ତାର । ନିଧିଆବୋଉ କହେ । ସକାଳୁ ସେ ଯେତେବେଳେ ପ୍ରଭାତି ବସେଇ ଦିଏ—ନିଧିଆ ବୋଉର ନିଦ ଭାଙ୍ଗିଯାଏ—ନିଦ ଆଗରୁ ଭାଙ୍ଗି ଯାଇଥାଏ—କାନ ଖାଲି ଢୋଲେଇ ପଡ଼ିଥାଏ ସେଇ ସ୍ୱରକୁ ଅନିଷା କରି । ସେଇ ଅଧୁଆନ୍ଧାରରେ ସେ ଆସି ନିଧିଆବାପକୁ ଛୁଏଁ । ଠାକୁରଙ୍କୁ ଦଣ୍ଡବତ କରେ ସେଇ ଦୂରରୁ । ତା ଆଖିରୁ ଲୁହ ଝରିପଡ଼େ । ସତେ ଯେମିତି ସାହାନ୍ତି ଏହାରର କେଉଁ ଦେବତା ଉଠିଆସନ୍ତି ବାସିଶେଯରୁ, ସିଏ ଗୀତଦାନ କରୁଛନ୍ତି ତାଙ୍କର ପାଦରେ ଲୋଟି ହୋଇ ପଡ଼ିବାକୁ । ଅନ୍ଧାରର ଛାତି ଫାଟିଯାଏ । ପବନରେ ଧୂଳି ଥରିଉଠେ । ଜନ୍ଦୁଥିବ । ଫାଟି ଫାଟୁଥିବ । ନିଧିଆବାପର କଣ୍ଠ ହୋଇ ଯାଉଥିବ ଗମ୍ଭୀର, ନିଧିଆ ବୋଉର ଛାତି ଅବଶ—ଅଦମ୍ୟ ।

ଦଳ ଦଳ ହୋଇ କୀର୍ତ୍ତନଧାଳୀ ଆସନ୍ତି । ଜଣ ଜଣଙ୍କ ଘରେ ଗାଁ ଭିତରେ ବାଣ୍ଟି ହୋଇ ରହନ୍ତି । ଗାଆନ୍ତି ସମସ୍ତେ ଠାକୁର ବାଡ଼ରେ । ପଞ୍ଚନାହାକ ପଡ଼ାର ଜଣେ ପାଳ ହୁଅନ୍ତି ସବୁଦିନେ ଦାସଙ୍କ ଘର ତଳପାଢ଼ୀରେ । ଦାସଙ୍କ ଘର ବଡ଼ ଗୃହସ୍ଥିଘର । ଅମାର

ମଠରେଇ ବସିଶ । ସେ ଗାଁର ମୁଣିଆ ସେଇ । ଭଲ ମନ୍ଦ ତାଙ୍କର ପାଖରେ ପଡ଼େ ।

ପଞ୍ଚନାହାକପଡ଼ା ଜଣେ ସାଆନ୍ତଙ୍କ ଚର୍ଚ୍ଚା ଦାସଙ୍କ ଘର ଛଡ଼ା ଆଉ କିଏ କହନ୍ତା ! ନିଧିଆବାପ ଏଞ୍ଚନାହାକପଡ଼ା ଦଳର ନେତେ ଟୋକା ଅଛନ୍ତି, ସଭିଙ୍କଠୁ ଭଲ ଗାଏ—କାହିଁକି, ଯେତେ ଛାଇଫା ଅସନ୍ତି ସମସ୍ତଙ୍କ ଭିତରେ ମଉସ ବାହାରିବ ସେ । ଟିଣ୍ଟିଗ ହାଣ ଜଣେ ବି ଥାଏ ପଞ୍ଚନାହାକପଡ଼ା ଦଳର—ବୁଢ଼ା । ଗାଇବାର କାଇଦା ଜାଣେ । ଢୋଲ ଦ୍ୱିଷିଦେଲା ପରି ଗଳା । ତଥାପି ତା’ ଦାଢ଼ରେ ଗୋଟେ ସ୍ୱଜାଣ୍ଡଶୀ ସରଗ ଥାଏ, ଶୁଣିବାକୁ ମନ୍ଦ ଲାଗେ ନାହିଁ—ଭଲ ଲାଗେ । ବଡ଼ ଋଙ୍ଗରେ ଗାଏ ବୁଢ଼ା । ସେ ନିଧିଆ ବାପାକୁ ବଡ଼ ଭଲପାଏ । ସମସ୍ତେ କହନ୍ତି, ନିଧିଆବାପ ତା’ର ଗୁରୁ ।

ବଟଷେ ଲୁହେଁ ଅଧେ ଲୁହେଁ; ବରଷ ବରଷ ଧରି ନିଧିଆ ବାପକୁ ନିଧିଆ ବୋଉ ଦେଖିଛି । ଭୋଗ ଦେଇଶ—ପାନ ଟେକିଛି—ପାଣି ଦେଇଛି ପିଇବାକୁ—ଛୁଆଟି ବେଳୁ । ଯୁବତୀ ହେଲାରୁ, ଘରେ ରହିଲାରୁ ଯାଇଁ ଟିକା ସଂକୋଚ ହେଲା—ବାହାରକୁ ନ ଅସି କବାଟ ଫାଙ୍କରୁ ଗୁହେଁ । ନିଧିଅବାପ ଯେମିତି ସବୁବେଳେ ସେଇ କବାଟ ଫାଙ୍କକୁ ଗୁହିଁ ବସିଥାଏ—ଯେତେବେଳେ ଅଜ ଣାଦକରେ ଦେଖିବାର ବାଟ ନ ଥାଏ ନିଧିଆ ବୋଉର । ଯେତେବେଳେ ଗୁହିଁବ ସେତେବେଳେ ନିଧିଆବାପଟା ଯିମିତ ଜଳ ଜଳ କରି ଅନେଇଶ । ଛି, କେଡ଼େ ଝୁଟ ସେ ।

କାର୍ତ୍ତିକ ସଙ୍ଗଗଲେ—ଟୋଲ କରତାଳର ଝାଉଁ ଝାଉଁ ଶବ୍ଦଟା ଧ ନେ ଦ’ହନ ପାଏ ଯେମିତ କାନ ଭିତରେ ବାଜୁଥାଏ, ନିଧିଆ ବାପର ରୁସହା କି କେତେଦିନପାଏ ତା’ ଅଖି ଅଗରେ

ନାଚେ । ଧୀରେ ଧୀରେ ହାତ ହଜିଯାଏ । ପୁଣି ଗୃହଯାଏ ବୁଦଶେ ।
ନିଧିଅବାପ କେଉଁଠି ହେଉଥିବଣି, କେଡ଼େ ସୁନ୍ଦର ଦଶିବଣି,
କେଡ଼େ ମିଠା, ଅଦ୍ଭୁର ମିଠା ଗଳାରେ ଗାଇବଣି । ନିଧିଅବୋଉ
ଅନେଇ ବସିଥାଏ । ପୁନେଇ ପରବ ଆସିବା ଦିନକୁ
ଯେମିତ ହେଇ ଆସିବ ଆସିବ ଖବୋଲ୍ ଗ୍ଲାତରେ ଗୋଟାଏ ଅନନ୍ଦ
ଛନକା ପଶିଯାଏ । ଚବଣ ପ୍ରହର ଜୀଉନ ଅସିବାର ଆଶା ସାଙ୍ଗରେ
ନିଧିଅବାପାର ବଜେ ହେବାର ବରଣୀ ସୁଖଟାକୁ ସପନ ଦେଖିବାବେ
ସେମିତ ଗୋଟାଏ ଚମକ ବ ନିଧିଅବୋଉର ହୃଦକୁ ହଲାଇ
ଯାଏ ।

ଏମିତ ଦ'ବରଷ ଛନବରଷ ଗଲା । ନିଧିଅବୋଉର ସେଇ
ବରଷ ବାହାଘର ହେଇଥାନ୍ତା । ସବୁଠିକ୍ ହେଇଯାଇଥିଲା—ଅସନ୍ତା
ବଇଶାଖରେ । ସେ ବରଷ କ ଦୁର୍ଯୋଗରେ ସେ ଜୀଉନ ଅବସ୍ଥ
ହେଲା କେଜାଣି !

ପହୁଲଧନ ଅଧିବାସ । ଜୀଉନ ଫରୁ ସବୁ କେତେ ସ୍ତବ୍ଧ
ହେଇଗଲା । ନିଧିଅବାପ ଜୀଉନ ଧଇଥିଲା, ହଠାତ୍ କାଶ ଉଠେଇଲା ।
ସେତେବେଳକୁ ଘରେ ମାଇପେ ଯାକ କଏ କେମିତ ଶୋଇ
ଗଲେଇଣି । ଏକା ଗୁହିଁଥାଏ ନିଧିଅବୋଉ—ଅଜ ଡା' ସାଙ୍ଗରେ
ବସିଥାଏ ସଣ୍ଡ ସପନ ବୋଉ । ସପନାବୋଉ ତାଙ୍କ ଘରେ
ବୋଲହାକ କରେ । କାମ କାର୍ଯ୍ୟ ଦନେ, ଭଲମନ୍ଦ ହେଲେ ତାଙ୍କ
ଘରେ ରହିଯାଏ—ଗଣ୍ଡେ ଖାଇ ଦେଇ ସ୍ତବ୍ଧରେ ଶୋଇ ପଡ଼ିବା
କଥା । ଯୋଖସ୍ତ ଘାଟକୁଗଲେ ନିଧିଅବୋଉ ସାଙ୍ଗରେ ସେ ଯାଏ ।
ଦରବୁଢ଼ୀ ମାଇପଟା । ତାର ଗୋଟେ ଗୁଣ—ସେ ସବୁବେଳେ
ହସୁଥିବ । ନିଧିଅ ବୋଉକୁ ଭାବ ଥଟ୍ଟା କରେ । କେତେ କଥା

କହେ । କେତେ କଥା ଶୁଣାଏ । କେତେ କଥା ଶିଖାଏ ତ । ଲବଣ୍ୟବତୀରୁ ପଦ ଗାଏ । ବିଦଗ୍ଧଚିନ୍ତାମଣିରୁ ଗୀତ ଛନ୍ଦେ ।

ହଠାତ୍ କାଶ ଉଠେଇଲା ନିଧିଆ ବାପର । କାଶି କାଶି ବେଦମ ହୋଇ ପଡ଼ିଲା । ଆଉ ଗାଇ ପାରିଲା ନାହିଁ । ଜଣେ କିଏ ଡାକିଲା—ପାଣି ପାଣି ! ପାଣି ପାଖରେ ନଥିଲା । ସେ ଉଠିଗଲା ଦାସଙ୍କ ଦୁଆର ମୁହଁକୁ । ଯେମିତି ନିଧିଆବୋଉ ଘଣ୍ଟରେ ଲାଗିଛି । ସେ ଉଠିପିବାକୁ ମନକରୁଥିଲା, ଉଠିପାରୁ ନଥିଲା—କେତେ କାଳରେ କାଶଟା ଗୁଡ଼ ଫାଟିଯିବ ନାହିଁ ତ ! ସପନାବୋଉ ଉଠିଗଲା ପାଣି ଆଣିବାକୁ । ନିଧିଆ ବୋଉ ଦମ୍ଭଧର ଗଲା ତା' ପଛେ ପଛେ । ପାଣି ନେଇ ଦାସେ ହିଁ ପାଖ ଆସିଲେ । ନିଧିଆବାପ ସେତେବେଳକୁ ଦାଣ୍ଡ ଦୁଆରକୁ ଝପି ଚଉପାଢ଼ୀ ପାର ହୋଇ ଦାଣ୍ଡ ପରସ୍ତ ଅଗଣା ଅଧା ଅଧିରେ ଆସି ହେଲାଣି ।

ଘର ଦି' ପରସ୍ତ । ଭିତର ପରସ୍ତରୁ ବାହାରିବାକୁ ପଛ ଦୁଆର, ତା'ର ସାମନା ବାହାରେ ଠିଆ ହୋଇଛି, ନିଧିଆ ବାପ ତା' ପରେ ଚଉପାଢ଼ୀ । ସେଇ ଚଉପାଢ଼ୀରେ ପଟ୍ଟନାୟକ ପଡ଼ା କୀର୍ତ୍ତନିଆ ରହନ୍ତି । କେହି ନଥିଲେ ସେତେବେଳେ ସେଠି । ସମସ୍ତେ କୀର୍ତ୍ତନପାଖରେ ଥାଆନ୍ତି । ତାଙ୍କର ପାଳି ପଡ଼ିଥାଏ । ଚଉପାଢ଼ୀର ଗୋଟେ କଡ଼କୁ, ଦାଣ୍ଡରୁ ଆସିଲା ବେଳକୁ ଡାହାଣ ଘରୁ ବାହାରିଲେ ବାଆଁ ହାତ ଦୁଆର ପଡ଼ିବ—ଦାଣ୍ଡ ଦୁଆର—ଖୁବ୍ ଲମ୍ବ ଚଉଡ଼ା । ଚଉପାଢ଼ୀଟା ଟିକିଏ ଉଚ୍ଚ । ଦୁଆର ବାଟେ ଯିବାପାଇଁ ରାସ୍ତାଟା ଅଳପି ନିଚ୍ଚ । ସେଇଠି, ଦୁଆର ମୁହଁରେ, ବନ୍ଧକୁ ଗୁଡ଼ ସପ ପକେଇ ମାଇପେ ବସି ଦାଣ୍ଡ ଦେହାରେ, ମେଳଣ ଯାତ୍ରା, ସଂକୀର୍ତ୍ତନ ସବୁ ଦେଖନ୍ତି । ସେଇଠି ବସି ନିଧିଆ ବୋଉ ସପନା ମା କୀର୍ତ୍ତନ ଦେଖୁଥିଲେ ।

ନଧିଆବାପ ଆସି ଘର ଭିତରେ ବାହାର ଅଗଣାରେ ଥାଇ କାଶୁଥାଏ । ଘର ପରସ୍ତରେ କଳ ଲାଗିଥାଏ, ନଧିଆ ବୋଉ ଆଉ ସପନୀ ବୋଉ ଭିତରେ । ଏ ଠେଲୁଥାଏ ତାକୁ, ସେ ଠେଲୁଥାଏ ଯାକୁ । ନଧିଆ ବୋଉ ହାତରେ ଥାଏ ପାଣିଚୋପା । ଢେଙ୍କଣେ କାଣି କାଣି ଅଟସୁ ନଧିଆ ବାପ ।

ନଧିଆବାପ, ନଧିଆ ବୋଉ ହେଇ ନଥାନ୍ତି ସେତେବେଳକୁ । ନଧିଆ ବାପ ତ ସେ କେବେ ହେଇ ନାହିଁ । ନଧିଆ ଆସିଲା, ନଧିଅ ବାପମଲାର ଦ' ତିନି ବର୍ଷକେ । ଘୋଷାଏ କଥାକୁ ପଣ୍ଡିତ । ନାଁ ଜଣ ଚେଳାଣି—ମନେ ନାହିଁ । ନଧିଆ ବୋଉର ଗିରସ୍ତ, ସେଥିପାଇଁ ନଧିଆ ବାପ ।

ନଧିଆ ବାପ ବୁଝିପାରି ପହଲ ମୁହିଁ ଖୋଲିଲା—"ଏମିତ ଲାଜକଲେ ଚଳିବ ?"

ଏକଥା ପରେ ନଧିଆବୋଉ ଆଉ ଠିଆ ହେଇ ରହି ପାରିଲାନାହିଁ । ପାଣି ଗିଲାସକୁ ଧରି ବାହାରି ଆସିଲା । ବଢ଼େଇ ଦେଲା ନଧିଆବାପ ହାତକୁ । ସପନୀବୋଉ ହସି କରି କରି ହସିପକେଇଲା । ପଳେଇଲା ଘର ଭିତରକୁ । ବୁଢ଼ୀ ମାଇପିଟା । କ ବେସରମ ।

ଏକା ପଡ଼ିଗଲା ନଧିଆ ବୋଉ । ଏ ସୁବିଧା ଆଉ ମିଳୁଛି କଏ ? ନଧିଆବାପ କେମିତେ ... ଲା—ଅନେକ କଥା ଅଛି—ବେଳହେଲେ କହନ୍ତି ।

ନଧିଆବୋଉ ... ଧୂମ ପକେଇ ଚହଲା, ସେ ଚଷ୍ଟି ଚହିନାହିଁ ... ନଧିଆ ବାପ ।

ସିଣପେ ଗୁଡ଼ାକ ବଡ଼ ସାହସୀ । ସେ ଟିକିଏ ଆଗ ସାହସ ଦେଖେଇଲେ—ମାଇପେ ଜେଣିକି କମ ସାହସୀ ହୁଅନ୍ତି ନାହିଁ ତ ! କ'ଣ କରିବ ନିଧିଆ ବୋଉ । କି ସାହସ ତାର !

ନିଧିଆବୋଉ ପଚାରିଥିଲେ ରଖା ପାଇ ଯାଇଥାନ୍ତା । ସେ ଘରକୁ ନଯାଇ ସେଇଠି ସେମିତ ଠିଆ ହେଇଥାଏ । ମନଟି ତ ଥାଏ ଶୁଣିବାପାଇଁ—ଯାଉଚ କମିତ ।

“କାଲି ସଞ୍ଜରେ ଏତିକି ବେଳକୁ—ସମସ୍ତେ ଶୋଇ ପଡ଼ିଥିବେ – କହିବ ।”

ନିଧିଆ ବାପ କହିଲା । ନିଧିଆବୋଉ ତେବେ ବି କାଠ ପେନ୍ତୁଲାଟାପରି ସେମିତ ଠିଆ ହୋଇ ଶୁଣୁଛି । କି—କହିଲାନାହିଁ—ବାଉଁଅ ଝିଅଟା ସାଙ୍ଗରେ ଘର ଅଧରେ ଏକୁଟିଆ କି କଥା! କେଉଁଷ କ'ଣ ଖାଇ ନିଧିଆବାପର !

ନିଧିଆବାପର ଆହୁରି ସାହସ ବଢ଼ିଲା । କହିଲା—“କୋଉଟି କହିବ ? ଅନେକ କଥା—କେବେ କେବେ ବେଳ ଲାଗିବ । ଏଠି ସୁବିଧା ହେବ ନାହିଁ । କିଏ ଦେଖିବ ।”

ଆଉ ନିଧିଆ ବୋଉ ! ନିଧିଆବୋଉ ଆଉ ଥାଏ କୋଉଠି । ସେ ନିଜଭିତରେ ଥାଏ ଯେ ଝୋର କରି ଧମକେଇ ଦେଇ କହିବ—ଏସବୁ କି କଥା କହୁଚ ? ଛିଃ । ତା ହେଇଥିଲେ ନିଧିଆବାପ ଚୁପ୍ ନ ହେଇ ତା ରୂପାର ଗୁଣ ଥିଲା ? ଓଲଟ ନିଧିଆ ବୋଉକୁ ଘୁଶ ଲାଗୁଥିଲା ଶୁଣିବାକୁ ।

ନିଧିଆବାପ କହୁଥାଏ—“ମୁଁ କାଲି ଏତିକିବେଳକୁ ଉମ ବାଡ଼ି ପଛପଟ କିଅଁରୁଦା ମୂଳେ ଅପେକ୍ଷିଥିବି । ସେଠିକି କ'ଣ ଯିବ ? କେହିଯିବେ ନାହିଁ, ବୁଝିଲୁ ? ଖବର ନେଉଥାଏ—”

କଥା ସଂକଳ୍ପ କଲ ଜାଣେ ନାହିଁ । ସଂକଳ୍ପ ତାର ଆପେ ଆପେ ହୋଇଗଲା । ଅକୁହା, ଅବୁଝା ସଂକଳ୍ପ ।

ସତ୍ୟାନାଶର ସଂକଳ୍ପ—ଅପବାଦର ସଂକଳ୍ପ—କଳଙ୍କ ପଶରା ମୁଣ୍ଡରେ ଦାଣ୍ଡ ଦାଣ୍ଡ ବୁଲିବାର ସଂକଳ୍ପ—ନିଧିଅବୋଉ ଜାଣି ନ ଥିଲା ।

ହଁ, ଘୁଞ୍ଚାଇଥିଲା ସେ ନିଧିଅବ ପକ୍କୁ । ସେ ସୁଖ ପାଇବାରେ ପାଗ ନାଗ ହେବାର କଳ୍ପନା ନ ଥିଲା । ସେଇଦିନଠୁଁ, ସେଇ ରାତିରୁ ନିଧିଅବୋଉକୁ କୁହୁଳ ଲାଗିଗଲା କେଜାଣି, କି ନିଶା ଚେଇ ପୋଷିଗଲା କେଜାଣି, ମନ ଟାଣିଲା, ମନଟା ଚଞ୍ଚଳ ହେଲା, ଅଙ୍ଗେ ନଚିଲା, କମିତ ଯେ ଠିକିଏ ଦାଗ ପାଗ ହୁଅନ୍ତେ । ସେଦିନ ରାତିସାରା ଆଉ ତା ଆଖିରେ ନିଦ ନାହିଁ । ତହିଁଆରଦିନ ଧନଟା, ଖିର ଭଳିଆ ଧନଟା ତା ଦେହରେ ଝୁଲୁଥିଲା ପରି ଲାଗିଲା । ଧନର ଅପଣା ଭାଷାରେ ଧନଟା ଶୁଣୁ ଥିଲା ତଳେ କେତେବେଳେ, ଜଣାପଡ଼ିଲା ନାହିଁ ଦୁଇ ଅକ୍ଷରରେ ଆଖଡ଼ା ବତୀ ଲଗାଇ କୀର୍ତ୍ତନ ପେଠଳାବେଳେ କର୍ମ ଛଟିଲେ, ଗମକ ଲାଗିଗଲା, ସେତେବେଳେ । ନିଧିଅ ବୋଉର ସଂକୀର୍ତ୍ତନ ଲାଗିଥାଏ ମନ ଭିତରେ । ବାହାର କୀର୍ତ୍ତନ ଦିଗକୁ କିଛି ଶୁଭୁନାହିଁ—କିଛି ଦିଶୁନାହିଁ ଆଜି ।

ସଞ୍ଜ ପଡ଼ିଲା । ଝଡ଼ର ପବନରେ ଦେଇ ଦାଣ୍ଡର ଗଛ ଗଣ୍ଡ ଗୁଳିଗଲା । ନିଧିଅବୋଉ ଦାଣ୍ଡ କଅଣ ହେଉଛି ବୋଲି ଦେଖିବାରେ ଯାଇ ଝାଉଁଆ ଘରେ ଶୋଇଥାଏ । ପାଖରେ ଶୋଇଥାଏ ସପନ ବୋଉ । ତାକୁ ସେ କିଛି କହୁନାହିଁ । ସପନିବୋଉ ନିଦରେ ଘୁଙ୍ଗୁଡ଼ି ମାରୁଛି । ସେପାଖରେ ଗଡ଼ଲା ନାହିଁ । ଘରେ ଦିଏ ଯେଉଁଠି ଶୋଇ ଗଲେଣି । ନିଧିଅବୋଉ ଉଠି ବାଡ଼ କବାଟକୁ ଧୀରେ ଧୀରେ ଖୋଲିଲା । ପୁଣି ଅଜାଡ଼ି ଆଣିଲା—ଅଚ୍ଛେ କି ।

ବାଡ଼ପାଖେ ସେ ମାଟେଇ ନାହିଁ ସତରେ । ଭାରି ଡର । ଭୂତ ! ଅଙ୍କା ଅଜ ଭୂତବସ୍ତୁ ନାହିଁ । ଭିତରେ ଯଉଁ ଜାଗାଟାରେ ଭୂତ ମାଉବଡ଼ସ ସେଟ ଅଛ ଯେମିତି କିଏ ହଜାର ହଜାର ମଣିଷ ନେଇ ଦଳମର୍ଦ୍ଦନ କରୁଛି । ସେ ଏକୁଟିଆ । ଜଣାପଡ଼ୁଥାଏ ତା ଭିତରେ ଯେମିତି ହଜାର ମଣିଷଙ୍କ ଦମ୍ଭ ! ଡର କୁଆଡ଼େ ଉଭେଇ ଗଲା ! ସ୍ମୃତିରେ ଯେଉଁଠି ଡର ଥାଏ, ସେ ଜାଗାଟା ଯେମିତି ଆଜ ଗୋଟାଏ କି ପ୍ରକାର ଅଗ୍ରହରେ ଭରପୂର ହୋଇଛି ଅଜା । ଜନ୍ମ ସେଇ ଅଗ୍ରହ ଭିତରେ ଅଛି ଆଶଙ୍କା । ତା'ଗୋଡ଼ ଥରୁଥାଏ । ସେ କଣ୍ଢ ବଡ଼ ହୋଇପଡ଼ୁଥାଏ । ତଥାପି ଧୀର, ସ୍ଥିର-ସାବଧାନ-ସତର୍କ । ଜ୍ଞାନ ନ ଥାଏ—ଗୋଡରେ କଣ୍ଟା ଭୁଷିଲେ ହୁଏତ ଜଣା ପଡ଼ିବ ନାହିଁ । ତଥାପି ସଚେତ, ତଥାପି ସେ ଜାଣେ ସେ କେଉଁଠିକି ଯାଉଛି ।

ନଧିଆ ବାପ ଆସିଛି ତ ? ନଧିଆ ବାପ ନାଁରେ ସବୁ ଅଛି କେନ୍ଦ୍ର—ସବୁକୁ ସତ ନଧିଆ ବାପ ତାହାର ଆସିଲା ସେଇ ଶବ୍ଦ ଦିଆ ସଙ୍କେତ ଥାନ କିଆ ବୁଦା ମୂଳରୁ । ସେ ଯେମିତି ଶୁଣି ପାରୁ ଅଖିଲା ମୂନିଆ କବ ଶୁଣୁଥିଲା ନଧିଆ ବୋଉ ଆସିବାକୁ !

ନଧିଆ ବାପ ତାକୁ କ'ଣ କହୁବ ସବ ! ହଁ, ସେ କଣ କହୁଲା, ନାଧିଆ ବୋଉ ଶୁଣି ନାହିଁ । କ'ଣ କହୁଲା ସବ—ତାର ମନେ ନାହିଁ । ସେ କିଛି ଶୁଣିପାରୁ ନଥିଲା । ତାର କ'ଣ ହୋଇ ଯାଇଥିଲା । ସେ ଗୁହଆଡ଼େ ଦେଖୁଥିଲା ଖାଲି ନଧିଆ ବାପ—ଆଉ କିଛି ନା—ଆଉ କେହି ନାହିଁ ! ହୁଏତ ସେ ବି ନଥିଲା ।

ସେଦିନ ଗଲା । ତହିଁ ଆରଦିନ—ପୁଣି ତହିଁଆର ଦିନ—ତିନିଦିନ ଖାଉଁନ ହେଲା—ଯେମିତି ହଜାର କଥା ! ତିନିଦିନ.

ଯାଇ ନିଧିଆ ବୋଉ ନିଧିଆ ବାପଙ୍କର ଭେଟ ହୁଏ ସେଇ [illegible] କୁଞ୍ଜ ତଳେ।

ଦଣ୍ଡକର ଭୁଲ, ଦଣ୍ଡକର ଅବିଚାର, ଦଣ୍ଡକର ମୋହ, ଦଣ୍ଡକର ନିଶାଟିଏ, ତାକୁ ଯଦି ଭୁଲ ବୋଲି, ଅବିଚାର ବୋଲି, ମୋହ ବୋଲି, ନିଶା ବୋଲି କୁହାଯାଏ, ତେବେ ସେତିକ ପାଇଁ ସାରା ଜୀବନ, ଟିକଟିକେ ଦଣ୍ଡ ଘଣ୍ଟା ପହର ଦିନ ପକ୍ଷ ମାସ ବର୍ଷ ଯୁଗର ଜୀବନ—ସେ ଜୀବନ ସୁଅର ଗତି ବଦଳି ଯାଏ। ମଣିଷ କ'ଣ ଥାଏ, କ'ଣ ହୋଇଯାଏ ସତେ! ମଣିଷ ନିଜ ଭାବରେ ନିଜେ ଯେତେ ନ ବଦଳେ, ସମାଜର ଦୁଃଖ ଭାବରେ ସେ ବଦଳି ଯାଏ ବେଶି। ଓଲଟ ପାଲଟ ହୋଇଯାଏ ସବୁ।

ନିଧିଆ ବୋଉ ମାନେ ନାହିଁ। କହେ—ଭୁଲ କ'ଣ? ଏଇ ଦଣ୍ଡକ ଭୁଲ୍ ସମସ୍ତେ କରନ୍ତି। ବାହାହବାଟା ତ ଏଇ ଦଣ୍ଡକର କାମ—ଦଣ୍ଡକର ଭୁଲ୍। ହାତ ଗଣ୍ଠି ପଡ଼ିବାକୁ ଏମିତି କେତେ-ବେଳ ଲାଗେ କି?

ଝିଅମା କହେ—"ଅଚ୍ଛା, ହାତ ଗଣ୍ଠିକି ତୁ ନିନ୍ଦା କରୁଛୁ—ପ୍ରଜାପତି ଘଟଯୁକ୍ତ ସେ। ସେଥିରେ ପୁଣ୍ୟ ଅଛି।"

"ପୁଣ୍ୟ ଥିଲେ ସେ ପୁଣ୍ୟ ପ୍ରଜାପତିର। ଦେଖ ବୁଢ଼ିଁରେ, ସମସ୍ତଙ୍କ ଆଖି ଆଗରେ ଯଉଁ ପାପଟା ହୁଏ ସେ ପାପ, ପାପ ନୁହେଁ। ସେଠି ପ୍ରଜାପତି ଆସି ପାପକୁ ପୁଣ୍ୟ କରି ଦେଇ ଯାଆନ୍ତି। ଅସଭ୍ୟ କଥାଟା ଗୋଲଗୋଲରେ, ସମସ୍ତଙ୍କ ସାମନାରେ ପଡିଲେ ସଭ୍ୟ ହୋଇଯାଏ। ଲଗ୍ନ ବେଦୀରେ ହରିବୋଲ—ଆପଣା ମନରୁଚିରେ ଦୁଇଜଣ ଯାହା କରିବେ, ସେଇଟା ଅସଭ୍ୟ କଥା। ପାପ କଥା। କାହିଁକି ପାପ ହବ? ଯଦି ସେଥିରେ ପାପ ହେଉଥାଏ ତ ସେ ପାପକୁ କାମଦେବ ଆସି ପବିତ୍ର କରି ଦେଇ ଯାଆନ୍ତି—ଗନ୍ଧର୍ବ ଆସି

ଥାଆନ୍ତା କି, ଏଇ ବାପ ମାଙ୍କୁ ସବୁ ଆଠ ପଟେ ଲେଖେ ଚୂନକାଳି ଦେଇ ଘୁଞ୍ଚନ୍ତ । ଏଇ ଭାଗ୍ୟମାନ୍ତ୍ର ସବୁଙ୍କୁ ଶହେଥର ଉଠାବସା କରନ୍ତ । ଅଳ୍ପ ବୟସ ନାହିଁ, ଉଜଣି ବୟସ ନାହିଁ । ନିଧିଆବୋଉର ନଡ଼ିନେ ନାହିଁ । ନିଧିବୋଉର ସିନା ବୟସ ନାହିଁ, ତା ବୋଲି ରତନାର କ'ଣ ବୟସ ପଡ଼ିଗଲାଣି କି ?"

ରତନା ଚମକି ପଡ଼ିଲା । ଏମିତି ବେଳେ ବେଳେ କଥାଟାକୁ ରତନା ଅତିକୁ ଢାଳିଦେଇ ନିଧିଆବୋଉ ରତନାକୁ ଉଠେଇ ଦିଏ ।

ରତନା ସେଦିନ ସନ୍ଧ୍ୟାସନ୍ଧ ଉଭା ଉଡ଼ି କାତର ହୋଇ କହିଲା—"ନିଧିଆବୋଉ ନାନି, ରାଜତ ଘର ଧାନକୁଟି ଦେଇ ଯାଉଥିଲି ପରା !"

ରତନା ଖାଲି ଡରୁଥିଲା । ରାଜତ ଘରକୁ ସେ ଯିବ—ଭାଗ୍ୟମାନ୍ତ୍ର ଡରେ । ସେଠି ତ ଅଳ ନୁଆ ଡର ନାହିଁ କିଛି ? ଏଇ ବୟସ, ଏଇ ଦଶା ବୟସ, ଏଇ ନିଆଁ ଲଗା ବୟସ ! ଏ ବୟସ ଯାଉ ନାହିଁ କାହିଁକି ? ନିଧିଆବୋଉ ଯେଉଁ ବୟସକୁ ଝୁରି ହେଉଛି—ରତନା ଅଳ ସେଇ ବୟସକୁ ଡିଙ୍ଗେଇ ଦେବାକୁ ଚାହେଁ । ସେ ବଦଳ କିନ୍ତୁ କରିବ କିଏ ?

ଶୁଝିବା ନାହିଁ । ଶୁଝିବା ପାଇଁ କେବଳ ହୁଏରେ । ଶୁଝିବା ଯେତେବେଳେ ଗୁଳିଗଲା, ଏଇ ଘର ଦୁଆର ଆଉ ବାଇଦ୍ଧାଙ୍କୁ ତା' ହାତରେ ଟେକିଦେଇ ସେତେବେଳେ ସେ ନ କହି କି କହି ଯାଇଥିଲା—ଏସବୁକୁ ସାଇତି ରଖିବା ପାଇଁ । ସେ ଗଲାବେଳକୁ ଯାହା ଯେଉଁଠି ଯିମିତି ଥିଲା, ସବୁ ସିମିତି ରହିବ । ତା ସଙ୍ଗରେ ଏ ଯଉବନ କି ? ଏ ବୟସ କି ?

ଶୁକ୍ରୁଷ କଣ ବ'ର ଏ ବୟସକୁ ବୁଝିପାଏ ନାହିଁ ! ଶୁକ୍ରୁଷ ଅସିବାବେଳକୁ ଯଦ ତାର ଏ ବଅସ ଗଡ଼ିଯାଇଥିବ, ତେବେ ଶୁକ୍ରୁସ କ'ଣ ତାକୁ ଆଉ ସେମିତି ଆଗପରି ସୁଖ ଦଇବ ? ବା'ଇସ୍କୁଲକୁ ସେ କୋଳରେ ଯାକିନେଇ ଗେଲ କଲା । ତା' ବୟସର ବଉଳ ଦେହରେ ଚଣା ଲାଗିଲାଣି ।

ସେଦିନ ପଡ଼ିଲା ଅମେଇସା । ଏବେ ତ କେତୁଆ ଅମେଇସା ଗଲାଣି । ଶୁକ୍ରୁସର ଖବର ନାହିଁ । ଚଣ୍ଡାଳ ଭାଗୁମାହାନ୍ତି ଅସୁତ ମନ୍ଦିରେ ମନ୍ଦିରେ । କିଛି ହେଲେ ଖବର କହୁନାହିଁ ! ଏ ଘରେ ଅଉ ରହିହେବ ନାହିଁ । ଏ ଘରେ ଭୂତ ଲାଗିଲାଣି । ଏ ଭାଗୁମାହାନ୍ତିଟା ତ ଗୋଟେ ଭୂତ । ଭୂତ ହୋଇ ତାକୁ ଗୋଡେଇଛି । ଶୁକ୍ରୁସ—ଶୁକ୍ରୁସ—ତୁ ଅସିବୁ ନାହିଁ ?

ଭାଗୁମାହାନ୍ତି କି ସେ କଥା ବି କହେ ନାହିଁ । ସେଇ ତାର ଆପଣାଛୁଆଁ କେତେ କଥା ବକିଯାଏ । ମତ କି ମିଛ କି ଜାଣେ । କହେ ଶୁକ୍ରୁସ ଚିଠି ଦେଇଥିଲା, ଭଲ ଅଛି । କାହିଁକି ଚିଠି ? ଧନେନହେଲେ ଦେଖାଏ ନାହିଁ । ଋତନାପାଖକୁ ଖପା ଦବାକୁ ଶୁକ୍ରୁସକୁ କିଏ କଣ ମନା କରିଥିଲା କି ? କାହିଁ ଖପା ନାହିଁ ? ଟଙ୍କା କାହିଁ ? ସେଇ ପାଞ୍ଚ ଟଙ୍କା ଦେଇ କଣ ବୁଢ଼ା-ହୋଇଗଲା, ଏଇ ପାଞ୍ଚ ମାସ ଭିତରେ ?

ପନ୍ଦ୍ରୁଆ ଅଷ୍ଟମୀକି ଭାଗୁମାହାନ୍ତି ଖଣ୍ଡେ ଶାଢ଼ୀ ଦେଇଚ ଇଛି । ଏକଥା ସେ ନିଝୁଆଁବୋଉକୁ ବି କହିଦେଇଛି । 'ନେ ହିଁଅ' ବୋଲି କହି ଲୁଗା ଦେଇଗଲା ସେ । ନ ନିଅନ୍ତା କିମିତି । ଭାଗୁ-ମାହାନ୍ତି କ'ଣ ଏବେ ବି ପେଟ ଭିତରେ ଗଲାଜି ରଖିଛି ? କିଏ ଜାଣି ! ଠାକୁରେ ଜାଣନ୍ତି ।

ଗଡ଼ଚଣ୍ଡୀଠାରେ ଧାନକୁଣ୍ଟାରେ ବେଶ୍ ମନଲାଗୁଛି । ହେଲେ, ସହରର ସେଇ ବଡ଼ପୁଅଟା ଖାଲି ଫେରବା । ସେ ବାଟେ ମେ ଦଶଥର ନିଟପଟ ହବ—କେଣେଇ କଣେଇ ଗୁହାଁ ଦଉଥିବ । ଚଗଲାମି । ସେ ଭଉଘର କୁଅ । ଚଲ୍‌ବଢ଼ା ମାଧ୍ୟାଙ୍କ ବୁଲାଚ । କେତେ କେତେ ସୁନ୍ଦର ସୁନ୍ଦର ଝିଅ ବାହୁ ସେ ଦେଖି ନଥିବ । ସେ ଗୋଟେ ଏଇ ରଉଣୀ ଭଳି ଅପରିଚ୍ଛନ୍ନ ଅଧନା ମାଇକିନାକୁ ଅନାଇଁ ବାହୁଁଛି । ଇଚିତ ବାଟଗୁଲଗଙ୍କ ଲେଖେ ତ କ'ଣ ଏଣିକି ତେଣିକି ଗୁରଅଙ୍କୁ ଅନେଇ ଦେଉଛନ୍ତି ବା ! ଯିଏ ଆସିବ ନିଜ ଗୁଲାଚ ଏ ବାଟେ । ଆଖି ପଡ଼ିଯାଉ ଥିବ । ଆଉ କଣ ଆଖି ବନ୍ଦ କରି ବାଟଗୁଲନ୍ତା !

ସେଦିନ ଅଟେମଇସା—ହାଟପାଳି । ଇସ୍କୁଲର ମାଷ୍ଟର—ଧନା ମାଷ୍ଟର ସେଇବାଟେ ହାଟରୁ ଫେରିଲାବେଳେ—ତମର ଚିଠିଖଣ୍ଡେ ଆସିଚ ବୋଲି ପୋଷ୍ଟକାର୍ଡ଼ ଖଣ୍ଡେ ପକେଇ ଦେଇଗଲା । ରଉଣୀ ପୋଷ୍ଟକାର୍ଡ଼ ଉଠେଇ ଝାଡ଼ଝୁଡ଼ି ଯତନରେ ରଖିଲା । ଯେମିତି ନିଧି ପାଇଲା ସେ ! ଆଜି କାଏ ଦେଇଥିବ ଶୁକୁରସାହା । ଯେମିତି ଶୁକୁରର ଆତ୍ମା ଆସିଚ ତା' ପାଖରେ । ମାହାପୁରୁଙ୍କୁ ଜୁହାର ହେଲା । ତଳେ ପଡ଼ିଯାଇଥିଲା ବୋଲି ଚିଠିକି ବି ଜୁହାର ହେଲା । ହିଦ୍ୟା, ସରସ୍ୱତୀ ! କାନ୍ତ ପକ୍ରୁଡ଼ନେ କୁହାଳି ଦେଲା ସେ ତା'ଧ ହାତର କେଉଁଠି ଶୁକୁରର ଚିଠି ଲେଖା ଯାଇଥିଲା—ସତେ ଯେମିତି ଶୁକୁରର ଚିଠି ଲେଖାଯାଇଚ—ଆଉ କାହା ଆଖିକି ଦିଶୁ ନ ଦିଶୁ, ରଉଣୀ ବେଶ୍ ଦେଖି ପାରୁଥିଲା—ସେଇଟିକି—ସେଇଅକ୍ଷରକୁ ନମସ୍କାର ସେ ଜୁହାର ହେଲା ।

କିଏ ପଢ଼ି ଦିଅନ୍ତା ! ଏତେବେଳେ ତାର ମନେପଡ଼ିଲା । କିଏ ଲେଖିବ ? ଆଃ, ମାଷ୍ଟରବାବୁ ତ ଚାଲିଗଲେ । ଚଣ୍ଡାଳ ଚିଠିଟିଏ ପଢ଼ି ଶୁଣେଇ ଦେଇ ଯାଇ ନଥାନ୍ତା । ଯାଇଥିଲେ କ'ଣ ଉଚିତ ଦର ପାଉଥିଲେ ତାର ? ହଁ, ନିଧିଆ ବୋଉ ତ ପଢ଼ି ଜାଣେ । ନିଧିଆ ବୋଉକୁ ସେ ଡାକିବ । ଡାକିବ କେ, ଦେଖିଲେ ଏତେ ସୁନ୍ଦର ପବନ ଚିଠିଟାକୁ ସେ ନିଧିଆ ବୋଉ ପରି ମାଇପଟା ମୁହଁରୁ ଶୁଣିବ ନା ?

ଛି, ନିଧିଆ ବୋଉର କ'ଣ ହେଉ ଯାଇଛି କି ? ନିଧିଆ ବୋଉ କ'ଣ ମଣିଷ ନୁହେଁ ? ନିଧିଆ ବୋଉର ଗିରସ୍ତ ନାହିଁ ବୋଲି କ'ଣ ନିଧିଆ ବୋଉ କେବେ ଗିରସ୍ତ ସୁଖ ପାଇ ନାହିଁ ?

ପାଇଛି ? ନିଧିଆ ବାପ କ'ଣ ତାର ଗିରସ୍ତ । ନିଧିଆ ବାପକୁ କ'ଣ ସେ ହାତ ଧରି ବାହା ହେଇଥିଲା ? ଠାଏଁ—ଠାଏଁ—ଠାଏଁ ତ ନୁହେଁ—ଚୂଳ ମଣିଆ । ସେହି ଜାଣିବ କୁଆଡ଼ୁ ଗିରସ୍ତ ସୁଆଗ—ଗିରସ୍ତ ଶରଧା ? ମାଟି ଆଣିଲା, ଶାଢ଼ୀଟି ଆଣିଲା, ଟେଗୁଣିକର ଆଣିଲା ଛୁଣି ଫନ୍ଦ—ସଉକ । ସେ ତ ତାର ନିଜର ନୁହେଁ । ବାପ ମା ପିଲାରୁ ଦିଆ ତ ତାକୁ ବଣ୍ଡକରି ଦେଇ ଯାଇ ନାହାନ୍ତି ! ତାର ମୁଆଁସ ବା ହବ କିମିତି ? କାହାର ମୁଆଁସ ବା ଛୁଅନ୍ତା କାହିଁକି !

ଅହା, ଝରଣ କେତେ ଦୁଃଖୀ ସତେ ! ନିଧିଆ ସେ, ପଢ଼ୁ ସେ ଏ ଚିଠି । ଚିଠିଏ ହେଲେ ତ ଆନନ୍ଦ ହବ ତାର ? ହବ ନାହିଁ ? ଆଉ କଣ ଦଂସା କରିବ ? ନିଧିଆ ବୋଉର ପାହା ନାହିଁ, ଝଡଗା ତା ପାଇଛି—ନ ଦେଖେଇବ କାହିଁକି ?

ନିଧିଆ ବୋଉ କାହିଁ ? କୁଆଡ଼େ ପଳେଇଲା ? ଆଜି ଅମେଇସା । କାହାଘରେ ଯାଇ ପିଠଉ ବାଟୁଥିବ ।

ଧନୀ ମାଷ୍ଟର ଘର ଏମିତି କେତେ ଦୂର କି ? ସେ ତା'ର ପାଖକୁ ଯାଇ ଫେରି ଆସିବନି ? ଲାଜ ? ଆଉ କି ଲାଜ ? ଧାନ କୁଟି ପେଟ ପୋଷିଲାଣି ସେ ତାର ଆଉ କି ଲାଜ ? ଧାନ କୁଟିବାପାଇଁ କୋଉଠି କୋଉଠି ବାହୁଡ଼ିଲା ସେଥର, ନାଳିମାଡ଼ୁନାହିଁ, ଏଇ ଗାଁ ଭିତରେ ଗଡ଼ି ଖଣ୍ଡେ ବାଟ ଯିବାକୁ ନାହିଁ ? ବେଳହେ, ଅନ୍ଧାର ହୋଇ ଆସୁଣି । କିଏ କ'ଣ ଭାବିବ । ଭାବୁଥିଲା, ସେ ଆଉ ଅସୁ ଥିଲେ ବାହାରକୁ ନାହିଁ । ଜଲ କି ସେଥ କିଛି ସେଠେ ଥିଏକରି କହିଗଲା ନାହିଁ ଧନୀ ମାଷ୍ଟର । ମାଷ୍ଟରଟା କମିତି ଲୋକ କି ! ଅକଲ ନାହିଁ ପଶିଲାଣିଦେ ।

ଭାବୁ ଫେରି ରତନୀ ପୁଣି ଜବାବ ଦେଖିବ । ବାଘବୁଆ ଭଲ ଅଛି । ସେ ଭଲ ଅଛି । ଧାନକୁଟି ଖାଉଥାନ୍ତି । ଚମତ୍କ ପଢ଼ିଲା ରତନୀ । ଏଇଆ ଲେଖିବ ସେ ! ଶୁକୁଟକୁ ଦୁଃଖ ହବ ନାହିଁ ? ସେ କେମିତି କେତେ ଦୁଃଖରେ ରହୁଥିବ । ବିଦେଶ ଜାଗା । ଟଙ୍କା ପଇସା ଅଣ୍ଟୁ ନଥିବ । ସେଥିପାଇଁ ଦେଇପାରୁ ନାହିଁ । ରତନୀ ଏତେ ଦୁଃଖରେ ରହୁଛି ଶୁଣିଲେ ତାର ଆହୁରି କଷ୍ଟ ହବ ! ସହିବ ନାହିଁ ତ ?

ସେ କ'ଣ ଲେଖିବ ନ ଦେଖି ଆଗ, ଏତିକି କଥା ପାଞ୍ଚୁ ଗୁଲପାଙ୍କର ବେଳକୁ ରତନୀ ଧନେଶ୍ୱର ଅବଧାନ ଘରପାଏ ଗଲା ଜୋର ଦେହୁଣ୍ଡରେ ଗୁଳିଗଲା ।

ଧନୀ ଅବଧାନର ଠୋକା ଦେଯୁଥ । ଘରେ ବୁଢ଼ୀ ମା । କିଏ କ'ଣ କହିବ ! କହୁ ପଛେ । ରତନୀ ଯାଇ ଦୁଆରେ ଠିଆ ହେଲା । ଧନୀ ଅବଧାନଘରୁ ବାହାରି ଆସୁଥିଲେ । ଆଖିପଢ଼ିଲା ରତନୀ ଉପରେ—"କିଏ ?"

"ମୁଁ ତ ରତନୀ ।"

"କୁଆଡ଼େ ?"

"ଭ୍ରୀପାଷ୍ଟା ପଢ଼ିଦେଲ ନାହିଁ ?"

ଧନୀ ମାଷ୍ଟର ଆଲୁଅ ଅଣି ଭ୍ରୀପା ପଢ଼ିଦେଲ । ରତନୀର ମନଟା ଖୁସି ହୋଇଗଲା । ଶୁକୁରୀ ଭଲ ଅଛୁ । ଟଙ୍କା କୁଳଉ ନାହିଁ । ହଉ, ଟଙ୍କା ନ ଦେଲା ନାହିଁ ପଛେ, ସେ ତ ଭଲରେ ଅଛୁ । ଧନୀ ମାଷ୍ଟରକୁ ଗୁହିଁ ରତନୀ ଦେଖିଲା—ଧନୀ କେଡ଼େ ଭଲ ମଣିଷଟିଏ ସତେ—ଶୁକୁରୀ, ପର ଭଲ । ଶୁକୁରୀ ଭଲଥିଲା ସବୁ ଭଲ । ଶୁକୁରୀର ଭଲ ଖବର ସେ ଶୁଣେଇଲା ।

ତହିଁ ଆରଦିନ ଧନୀମାଷ୍ଟରକୁ ଚିଠି ଲେଖେଇ ସେ ଶୁକୁରୀ ପାଖକୁ ପଠେଇ ଦେଲା । ଆଜି ଲେଖିଦେଲା, ପଠେଇଥିଲା ମାଷ୍ଟରଙ୍କୁ ଭାଗୁ ମାହାନ୍ତି ଡାକି ଟଙ୍କା ଦେଇଛି—ଏଣିକି ଟଙ୍କା ପଠେଇଲେ ଧନୀ ମାଷ୍ଟର ନାଁରେ ପଠେଇବ ।

ମନଖୁସିରେ କି ମନ ମୋଟରେ ସେଦିନ ଗୁଡ଼େଇଘର ଧାନ କୁଟିଗଲା ରତନୀ । ଦେହଟା ବଡ଼ ହାଲୁକା ଲାଗୁଥାଏ । ଏତେ ହାଲୁକା ଯେ ଉଡ଼ାଯାଉଥାଏ ବାହାପାରରେ ଛଳେ ନହକା ପଡ଼ିବ କି ଅଛି ।

ଧାନ କୁଟି, କୁଟି ସଞ୍ଜ ହୋଇ ଆସିଲା । ଆଜି ଧାନକୁଟାରେ ଛୁରି ମନ ଲାଗିଛି । ଯେମିତି ଶୁକୁରୀ ଆଜି ତା ମାଙ୍କରେ ଶୁଣୁଛି ଦାଉଛି । ଦେଖିଲା ବେଳକୁ ବେଳବୁଡ଼ ଗଲା । ଆଜି ନଥିଆ ଛୋଡ଼ ନାହିଁ । ଗଉଡ଼ ଖଡ଼ୀ କହିଲେ—ଆଜି ପଇସା ରତନୀ । ରତନୀର ଉହୁ ସିଡ଼ାରେ ଅପତ୍ତି ନ ଥିଲା । ଏଇ କୁଆଁଟା ଜଞ୍ଜାଳ ତାକୁ ଖାଇଲା । ପର ଘରେ ହୁଡ଼ିବ ମୁନିବ ବାନ୍ଧିବ କାଟିବ । ଯେତେବେଳେ ଧାନକୁଟେ, ହେଉଥିଲା ତାଆର ଭିତରେ କେଁ କେଁ

ଭୟ ଉଠିବ । ସେଥିପାଇଁ କାମରେ ଢେଳା ଦେଉଛନ୍ତି ବୋଲି ସେତେ ଗଞ୍ଜଣା ।

ବାହାର ଖିଡ଼ିକୀ ଖୋଲିଲା ନାହିଁ । ଗୁହ ବ ହୋଇଗଲା ଯାଇଛି ଛୁଙ୍କୁଛି ଛୁଙ୍କୁଛି । ଏକୁଟିଆ ଫେରିବାକୁ ରତନୀ ସାହସ ବ କଲା ନାହିଁ । ରହିଗଲା ।

ସେଇ ଢେଙ୍କି ଶାଳପାଖ ଘରର ଗୋଟେ କୋଣକୁ ଚେଙ୍ଗସ ମିଟେଣ୍ଡ୍ର ପାରି ରତନୀ ଶୋଇଛି । ଶୀତ ଅଛି ବାହାରେ—ଥର-ଭମ୍ପ । ରତନୀ କବାଟ କିଳି ଦେଇଛି । ପାଖରେ ଛିଣ୍ଡା ଶେଯ ଖଣ୍ଡିକ ଉପରେ ଲୁଆଣ, କତରା ଦୋହରି ପଡ଼ିଛି । ଦୁଧଦେଇ ଶେଇ ପଟେଇଛି । ରତନୀ ଆଖିକି ନିଦ ଅସୁଛି ଅସୁନାହିଁ । ନିଦ ଖାଙ୍ଗି ଖାଙ୍ଗି ଯାଉଛି ଟୁକୁର ମଟନପଡ଼ି, ପୁଣି ଲାଗି ଲାଗି ଆସୁଛି ତା'ର ଚିଠା ଚିଠା ସପନ ନିଶାରେ ।

କିଳା କବାଟକୁ କିଏ ଠକ୍ ଠକ୍ କଲା । ରତନୀ ଛାଟି ଭିତରେ କିଏ ଯେମିତି ଚମକି ପଡ଼ି ଡାକିଲା—'କିଏ ?'

ପୁଣି ଠକ୍ ଠକ୍ ହେଲା । ରତନୀ ଏଥର ଡରିଗଲା । କବାଟ ପାଖକୁ ଯାଇ କାନ ପାରିଲା । ସେ ପଟରୁ ଫୁସ୍ ଫୁସ୍ ହୋଇ କିଏ ଡାକୁଛି—"ରତନୀ, ରତନୀ !" ଚିହ୍ନା ଗଳାରୁ ବାରିନେଲା ସାମନ୍ତ ପୁଅ ।

ସେ ଡରରେ କବାଟ ଖୋଲିଦେଲା । ସାମନ୍ତପୁଅ ଘରଭିତରକୁ ପଶି ଆସିଲା । ରତନୀ ନଗାଟିପଟେଣ ଅଣ୍ଟାକୁ ପଡ଼ି । ଅନ୍ଧାର ଭିତରେ ପଣିଆ ସେଠିକି ନିଷ୍ଟିନ୍ତ ସେଦିନ ଭପ୍ ଥାଏ ବୋଲି ରତନୀ ଟେରିଚ ଜାଣି ନଥିଲା ଆଗରୁ ।

ସାଉତପୁଅ ନୀଳ ହାତ ଝେବ ପକେଇଲା ରତନୀର । ରତନୀ ହାତଟାକୁ ଝାଡ଼ି ଦେଇ ପାଟି କରିଉଠିଲା—"କିଏ ? କିଏ ତମେ ?"

"ଚୁପ୍ ରତନୀ ଚୁପ୍ । ଖୁଡ଼ୀ ଉଠିବ—ପାଟି କରନା ।"

"ଉଠନ୍ତୁ ଖୁଡ଼ୀ !" ରତନୀ ଅଦ୍ଭୁତ ଜୋରରେ କହିଲା ।

ରତନୀ ମୁହଁରେ ହାତଦେଇ ସାଉତ ପୁଅ ନୀଳ କହିଲା—"ମୋ ରାଣ ଅଛି ରତନୀ ପାଟି କରନା, ଶୁଣିଉଠିବ ।"

"ଉଠିଲେ ଉଠନ୍ତୁ । ତମେ କାହିଁକି ଏଠିକି ଆସିଛ । ଯା ତମେ ଶୁଣିଲା ନ ହେଲେ ମୁଁ ଖୁଡ଼ୀଙ୍କି ଡାକିଦେବି ।"

"ରତନୀ, ପାଟି କରନା ମୁଁ ଯାଉଛି । ଏଇ ନେ ତୋ ପାଇଁ ଏଇ ସାପଟୁଆ ଗଡ଼ି ଆଣିଥିଲି ରଖ୍ ।"

ତା ଉପରକୁ କଅଣ ପକେଇ ଦେଇ ସାଉତପୁଅ ନୀଳ ଚାଲିଗଲା । ରତନୀ ତାକୁ ଯେ କାହିଁକି ଉଠିଲା ବୁଝି ପାରିଲା ନାହିଁ । ତାର ମନେହେଉଥିଲା ସେ ଚାଲିଗଲାବେଳେ ତା'ର ଉପରକୁ ଘା'ର କାଳକୁଟ ନେଇ ଫିଙ୍ଗି ଦେଲାପାଇଁ । କିନ୍ତୁ ତା' ସେ ପାରିଲା ନାହିଁ ।

ଲୋଭ ! ଲୋଭ ନୁହେଁ । ତାର କ୍ରମେଣ ଦୟା ହେଲା ଏଇ ସାଉତପୁଅ ପିଲାଟା ଉପରେ । ହଁ ପିଲା, ପିଲାଟା—ନିହାତ ପିଲା । ସେ ଗୋଟେ ଝିଅ ଲାଗିରେ, ପିଲା ବୁଦ୍ଧିରେ ଏମିତି ନିର୍ବୁଦ୍ଧିଆ କାମଟେ କରି ପକେଇଲା ବୋଲି ରତନୀ ଜାଣିଲା ଶୁଣିଲା ମାଇପୁଅଟାଏ ତା ଉପରେ ରାଗିବ ନା ? ସେ କଣ କରୁଛି ନିଜେ ବୁଝେଇ ବୁଝି ନାହିଁ—ଅଜ୍ଞାନ । ଏଟା ଏତେ ବଡ଼ କଥା ବୋଲି ତାର ଧାରଣା ବି ହୋଇ ନଥିବ ।

ଦୁନିଆରେ ସବୁକଥା ଖେଳନା ନୁହେଁ, ସବୁ ଘଟଣା ଖେଳ ନୁହେଁ । ତୁଚ୍ଛ ଖେଳଘର ବି ଦୁନିଆରେ ଦିନେ ପ୍ରଚଣ୍ଡ ହୋଇ ଠିଆ ହୁଏ । ସେ କଥା ସେ ବୁଝି ପାରିନାହିଁ ।

ତାକୁ ଠିକ୍ ଏ ହସ ବି ମାଡ଼ିଲା । ଦାମ୍ଭିକ ବୋଲି ଗୋଟେ କଳସ ଥିଲୁ ସେ ଖେଳ ଘର ଖେଳାଳି ରହିବ କେଉଁଠୁ । ଅସହଜକୁ ଖାଲି ସହଜ ବୋଲି ଭାବିଲେ ଅସହଜ ସହଜ ହୋଇଯାଏ ନାହିଁ । ଏତେ ବଡ଼ ବଡ଼ ବଡ଼ ଲୋକଙ୍କୁ ଖାଏ ଶିଅଳ-ନ କରିଗଲେ ସେ କଥାଟାର ଓଜନ କମିଯିବ ନାହିଁ । କଳ୍ପ ଲୋକଙ୍କ ହାତ-ଗୋଡ଼ ଭାଙ୍ଗିଯିବା ସାର ହେବ ।

ବୁଝିନାହିଁ ସେ । ତିଳ ଲୋକ । ଏଇ ଅନ୍ଧାର ହିତରେ ପେଟ ଭିତରେ ଗୋଟେ ଦୁନିଆ ଯେ ଅଣ୍ଡା ଭଳି ଗୁହ୍ନି ବସିଛି ତାର ସନ୍ଧାନ ସେ ପାଇ ନାହିଁ । ଏଇ କ୍ଷଣକର ଖେଳ—ଘରରେ ଯେ ଆକାଶ ପାତାଳ ଓଲଟି ଯାଇ ପାରେ ତାର ଧାରଣା ବି ନିହାତ ନଥିବ ତାର । ତିଳ୍ପ ଲୋକ—ଅଲ୍ପଅଳ ।

ଈଶ୍ୱରଦୟା ହେଲା । ଦଯ୍ୟୁ କରି ନିଜକୁ ନାଜେ ହସ ନଥିବ ବଡ଼ମା ? ରଡମା ପରି ଗଢ଼ିବ ଛଡ଼ିରଖଇ, ବାରେଘରପଶା ମାଇକି-ଟାଏ ଏଇ ଗଉଡ଼ଘର ପରି ବଡ଼ଲୋକଙ୍କ ପୁଅ ପୁତୁରାଙ୍କୁ ଦୟା କି କରିପାରେ ।

ସାପ ସୁଆକୁ ସେ ଚିହ୍ନି ହେଲା ନାହିଁ । କାଳେ ଲୋକାନ୍ତୁ ଜଟି କିଏ ଦେଖିବ । ଚିହ୍ନିଲା ବି ନାହିଁ । ଯଥ ପାଇଥାଏ । ସ୍ୱକାନ୍ତ୍ର ପାଇଛି ବୋଲି ଫେରେଇ ଦେବାକୁ ଭାବିଲା । ପୁଣି ଡ଼ରିଲା—କାଳେ କିଏ କ'ଣ ଭାବିବ—କାଳେ ଚୁଆଟା ଧରା ପଡ଼ିବ । ଶେଷକୁ ଖୁବ୍ ଯତ୍ନ କରି ସେ କାନରେ ବାନ୍ଧିଲା ତାକୁ ।

ସଞ୍ଜାକୁ ସଞ୍ଜାକୁ ଛୁଟି ସେ ଚାଲିଗଲା ଘରକୁ—ସତେଷ୍ଟା ନିହାତି ମାମୁଲି ସବୁଦିନିଆ ରାତି ପରି ବିତିଥିଲା ତାଏ ଅତି ସହଜ ସରଳ ନିଦଉଠାଣି ଅଳସ ଗତିରେ ।

ଏତେ ସଞ୍ଜାକୁ ବି ଅଗଣୀ ଦାଶ ପୁଅ ଦୁଃଖୀଦାଶ ଉଠି ଦୋକାନ ପିଣ୍ଡାରେ ବସି ଦାନ୍ତ ଘଷୁଛି । ତାକୁ ଦେଖି ରତନା ଟିକିଏ ଦବକିଗଲା । ତାକୁ ଏତେ ଲାଜ କେବେ ଲାଗେ ନାହିଁ । ଅଜି ଏ ଲାଜ ସାଙ୍ଗରେ ଭୟ ବି ଥିଲା । ଜିଭ ଶୁଖୁ ଶୁଖୁ ଗଲା ଦୋକାର ଦାଣ୍ଡବା ବେଳେ ରତନା ଡରିଗଲା—ତାକୁ ଆଜ ଇଙ୍ଗିତ କରୁନାହିଁ ତ ସେ ।

ଏଇ ଦୁଃଖୀ ଦାଶ ! ସମସ୍ତେ କହନ୍ତି, ମଣିଷନୁହେଁ—ଦେବତା ।

ଅଗଣିଦାଶ ପୁଅ ଦୁଃଖୀଦାଶ । ଏଇ ବୀଜରୁ ଏଇ ତରୁ ! ସଞ୍ଜାକୁ ଉଠି ଅଗଣିଦାଶ ମୁହଁ ଗୁହୁଁଲେ ଦଣ୍ଡ ନାହିଁ । ବଇଷିମ ଦାଶ ବୋଲି ଭୁତ ନା ପଡ଼େ । ନାଁ ଧରି କେହି ଡାକନ୍ତି ନାହିଁ । ତା'ର ପୁଅ ଦୁଖି ଦାଶ । ବାପପୁଅ ଅକାଶ ପାତାଳ ତଫାତ୍ । ପରବର ଦୁଃଖ ଦେଖିଲେ ଦୁଖିଦାଶ ସହିପାରେ ନାହିଁ । ଗାଁ ଯାକର ଭଲ ମନ୍ଦ ତା' ଉପରେ ପଡେ । ଗାଁ ଯାକର ବୋଝ ଯେମିତି ତା'ର ମୁଣ୍ଡରେ ।

ବାପପୁଅଙ୍କର ପଟେ ନାହିଁ । ସେ ଅନେକ କଥା ।

ଦୁଖିଦାଶ ପାଠ ପଢିଥିଲା ସଂସ୍କୃତ ଟୋଲ୍‌ରେ ।

୧୯୩୦ ମସିହା । ଦୁଖିଦାଶ ପଢୁଥାଏ ଉପାଧି । ହଠାତ୍ ଗୋଳ ଉଠିଲା । ପଣାସଂକ୍ରାନ୍ତି ଦିନ । ଗରମ ଦିହି ଦହଣ । ପଣାସଂକ୍ରାନ୍ତି ଛୁଟି ଦିନଟା ବୋଲି ଦୁଖି ଦାଶ ଘରକୁ ଆସିଥାଏ ।

ଏ ସବୁ ଶୁଣିବା କଥା । ଦିନେ ଧନୀ ମାଷ୍ଟର ବସି ଗପ କରୁଥିଲେ—ଦୁଃଖି ଦାଶ କଥା । ନିଧିଆ ବୋଉ କି କେତେ କଥା କହୁଛି ।

ଜହୁଜହୁଦଅ ଦ'ସନ୍ଧର ବେଳ । ସମସ୍ତେ ଖାଇ ପିଇ ମାଡ଼ି ଘର ଛାଇ ତଳେ ଶୋଇଲେଣି । ଦୁଃଖିଆକୁ ଭଲ ଲାଗିଲା ନାହିଁ । ବିଞ୍ଚଣା ଗଣ୍ଡେ ଧରି ଦାଣ୍ଡରେ ଆସି ବସିଲା । ଘରେ ଯେମିତି ବେଶୀ ଗରମ ଦାଣ୍ଡଠୁଁ ।

ସେଇ ବର୍ଷ ଦୁଃଖି ଦାଶର ବାହାଘର—ଗଲା ଫଗୁଣରେ ଯାଇଛି । ଛୋଟ କନିଆ । ବୟସ ଦଶ ଏଗାର ହେବ । ଦୁଃଖିର ବାପ ସାଙ୍ଗରେ ଅପଡ଼ ହେଲା—ମ୍ୟୁ ଥର ସେଇ ବାହାଘର ନେଇ ।

ପ୍ରଥମ ଥର ଦୁଃଖିର ଆଉ ବାପ ଅଗଣି ଦାଶର ଖଟ ଖଟ ଲାଗିଥିଲା ପଢ଼ା ନେଇ । ଦୁଃଖି ଆହୁରି ଛୋଟ ଥାଏ । ହେଡ଼େ ବଡ଼ଛୋଟ ସେତେବେଳେ । ଅପର ପ୍ରାଇମେରୀ ପାଶ୍ କରିଥାଏ । ଦୁଃଖି କହିଲା ସେ ଇଂରେଜୀ ପଢ଼ିବ । ବାପ ଅଗଣି ଦାଶ ହାତେ ଲମ୍ଫ କରି କାଟି ପକେଇଲା । ଇଂରେଜୀ ପଢ଼ିବ ? ବିଦେଶୀ ଭାଷା । ସେ ସବୁ କରଣ ଖଣ୍ଡେଇତଙ୍କ ପୋଷାଏ । ବ୍ରାହ୍ମଣ କୁଳରେ ଜନ୍ମ ହେଇ କିଏ ଇଂରେଜୀ ପଢ଼ିଲାଣି ? ସେ ମ୍ଳେଚ୍ଛ ବିଦ୍ୟା । ଯେ ପଢ଼ିବ ତାର କୁଳଧର୍ମ ନାଶ ଯିବ । "ପଢ଼ନ୍ତୁ ଆଉ ଯିଏ ପଢ଼ିବାର । ମୋ ପୁଅକୁ ମୁଁ ପଢ଼େଇବି ନାହିଁ । ସେ ବିଦ୍ୟା ପଢ଼ିଲେ ଯାବତ ଅଖାଦ୍ୟ ଖାଇବ ମଣିଷ । ନ ଖାଇଲେ ତ ପଚି ହବ ନାହିଁ—ପାଠ ଆସିବ ନାହିଁ । ମାଛ, ମାଂସ, ଅଣ୍ଡା, କୁକୁଡ଼ା ନ ଖାଇଲେ ସେ ଭାଷା କହିବାକୁ ଜିଭ ତ ଲେଉଟିବ ନାହିଁ । ତା ଛଡ଼ା ସେ ଯଉଁ ପୋଷାକ ! ଇଂରେଜୀ ପଢ଼ିଲେ କଣ୍ଠ କୁଆଡ଼େ ଗଲା—ସମସ୍ତଙ୍କର ସେଇ ଗାଣ୍ଡିମୁଣ୍ଡା ।"

ଆଉ ଜଣେ ଟିଚରଣୀ କହିଲା—"ପ୍ୟାଣ୍ଟ କଣ ସମସ୍ତେ ପିନ୍ଧୁଛନ୍ତି ନା !"

"ଆଃ, ତୁମ୍ଭେ ପାରିଲ ନାହିଁ ? ମନୁଷ୍ୟ ତ ସେଇଆ କରିବାକୁ। ଯାହାକୁ ପଇସା ଅଣ୍ଟିଲା—ତାହାକୁ ନ ଅଣ୍ଟିଲା। ପଇସା ହେଲେ ତୋର ଇଂରେଜୀ ପଢୁଆ ଲୋକ ପିଆଣ୍ଟ ଛୋଟେଇ ଲଗେଇ ନ ଦେବ ଦେଖିବା ଭଲ। ଛି, ଛି, ଛି—ସେ ଯେଉଁ ପିଆଣ୍ଟ ପିନ୍ଧା ପୁଣି ! ବସି ପାରିବ ନା ମୁତି ପାରିବ ! ମୁତି ବସିବା ତ ଅସମ୍ଭବ। ମୁତିଲେ ମୁତିବ ଠିଆ ହୋଇ—ପିତୃ ପୁରୁଷଙ୍କ ମୁଣ୍ଡରେ ପାଣି ଢାଳିବାକୁ। ତା ଛଡ଼ା କଷ୍ଟ ନାହିଁ ? କଷ୍ଟ ନ ମାରି ଆମେ ଭାତ ଗିଳିବା ? ସପତ ପୁରୁଷଙ୍କୁ ଉଦ୍ଧାର କରିବା ?"

"ବାବୁ, ଇଂରାଜୀ ପଢ଼ିଲେ ବି ଅନେକ ଲୋକ ବଡ଼ ନୀତି ଆଗର ମାନି ଚଳନ୍ତି ।"

"ସେ ସବୁ ଭଣ୍ଡାମି—ଠକାମି—ହାମ୍ବୁଗ୍ । ଆମ ଏଇ ବାହ୍ମଣ୍ଟିଅଙ୍କୁ ଦେଖନ୍ତୁ ! ଖାଲି ଚଇତନ କାଟି ବେଦରୂପେ କଣ ନ କରୁଛନ୍ତି । ଗଲା ଯେତେବେଳ ମୂର୍ଖ ପ୍ରଜା ସମସ୍ତେ ଭକ୍ତି ଯାଜୁଚନ୍ତି । ସମସ୍ତଙ୍କ ଆଖିରେ ପଟି ଚଢ଼େଇ ଦେଉଚନ୍ତି ଏ ବାହ୍ମଣ । ସ୍ୱରଗକୁ ନିଶୁଣି ବାନ୍ଧିବେ—ଶଳେ ! ଠକ ହାମ୍ବୁଗ—ମନ୍ତ୍ର ନାହାନ୍ତି ବେଦରୂପେ—ଠକି ଠକି ଠକିବେ ଏଇ ମୂରୁଖ ଚମ ଆମଙ୍କୁ—ଦର ପାଠୁଆ ଗଣ୍ଡ ସାଧାରଣ ଲୋକଙ୍କୁ; କିନ୍ତୁ ଯିଏ ଦୁ'ଅକ୍ଷର ପାଠ ଶାଠ ପଢ଼ି ସିଦ୍ଧାନ୍ତ ହେଲାଣି—ତାକୁ ଠକି ଦେବା ଏତେ ସହଜ ନୁହେଁ । ବେଶୀ ଏଇ ଇଂରେଜୀ ପାଠୁଆ ଗୁଡ଼ାକ ସବୁ ପୁରୁଣା କାଳିଆ କଥାକୁ ମରହଟ୍ଟି ଅନ୍ଧ ବିଶ୍ୱାସ ବୋଲି ଥଟ୍ଟା କରନ୍ତି । ତାଙ୍କ ଆଗେ ଆଉ ବାହ୍ମଣଙ୍କ

ବାହୁପୁରୁଷି ଚଳେ ନାହିଁ । ବାହିଁନା ସେ ସ୍ୱାଙ୍କଠୁ ବଳି ଠକ । ମୂରୁଖ ବ୍ରାହ୍ମଣଙ୍କ ସେ ଠକାମିରେ ନ ପଡ଼ନ୍ତି । ତା ଦେଖି ଏଇ ବ୍ରାହ୍ମଣ ଠକ ଉଠୁଁ ବଳି ସିହାଣ ହେଲେ । ଏ ଡାଳେ ଡାଳେ ଗଲା ବେଳକୁ ସେ ପତରେ ପତରେ ବୁଲୁଛନ୍ତି । ଠକ ବ୍ରାହ୍ମଣେ ଦେଖିଲେ ଇଂରାଜୀ ପାଠୁଆଙ୍କୁ ଠକିବା ପାଇଁ ଇଂରାଜି ପଢ଼ିବା ଦରକାର ପଡ଼ିଲାଣି । ଇଂରେଜୀ ପାଠୁଆ ଯଦି ଠକିବେ ତ ସେଇ ଇଂରାଜୀ ପାଠୁଆଙ୍କଠୁ ଠକିବେ । ବାଙ୍କେ ଲୋକଙ୍କଠୁ ଠକିବାକୁ ଭଲ ଲାଗିବ ନାହିଁ । ସେଥିପାଇଁ ଦଳେ ଇଂରେଜୀ ପାଠୁଆ ବ୍ରାହ୍ମଣ ଅଜକାଲି ବେଶ ପୂଜା ଆହ୍ନିକ କରୁଛନ୍ତି । ଲମ୍ବା ଶିଖା ରଖିଛନ ନ ମାନ୍ତି ଅଳପ ଟୋପେ ଚନ୍ଦନ ମାରି ଦେଉଛନ୍ତି । ଗୀତା ଭାଗବତ ଅଭ୍ୟାସ କରୁଛନ୍ତି । ଦରକାର ବେଳେ ଇଂରେଜୀ ପାଠ ସାଙ୍ଗରେ ଗୀତା ଭାଗବତ ପଦେ ଦ'ପଦ ଉଦ୍ଧାର ବି କରି ଦେଉଛନ୍ତି । କଣ ନା—ଅମେ ଆଧୁନିକ ବିଦ୍ୱାନ । ଆଧୁନିକ ପୁଣ୍ୟାତ୍ମା—ସତା, ଶାନ୍ତି । ଯିଏ ଇଂରେଜୀ ନ ପଢ଼ିଛନ୍ତି ସେ ହେଲେ ପୁରୁଣା କାଳିଆ ମରହଟ୍ଟିଆ ଗୁଡ଼ାକ, ତାଙ୍କର ଆତ୍ମା କହିଁ ଯେ ପୁଣ୍ୟାତ୍ମା ହେବେ—ବିଦ୍ୟା କାହିଁ ଯେ ବିଦ୍ୟାନ ବୋଲେଇବେ । ଦେଖିନ ଅମେ ଯଦି ବ୍ରାହ୍ମଣ ବଇଷମ କହୁଦବ—ବେ. ମେ. ଢ. ସେ ପାସ କରିଚି—ସେ ଠକ ହଉ, ହ୍ୱାଗୁର ହଉ, ଏଇ ଇଂରାଜୀ ପାଠୁଆ ଗୁଡ଼ାକ ଯାଇ ତା ଗୋଡ଼ ଗୁହିବେ । ସ୍ୱାଙ୍କର ଗୋଟେ ଗୋଷ୍ଠି—ଏ ଇଂରେଜ ପାଠୁଆଙ୍କର । କଣ ଜାଣିଚ ଅମେ !"

"ଦୁନିଅଁ ଯାଉ ତ ସେଇ ପାଠ ଚଳିଲାଣି—ସେଇ ପାଠର ମାନ୍ ବୁଢ଼ିଅନ୍ତି ।"

"ମାଉଁ। ଦୁନିଅ । ଦୁନିଅଯାକ ଲୋକେ ଗୁହ ଖାଇବେ ବୋଲି ମୁଁ ବି ଗୁହ ଖାଇବ ।"

"ଏ ତ ଗୋଟାଏ ପାଠ-ବିଦ୍ୟା । ଏ ଆଉ କୋଉଁ ଗୁହ ଖିଆ କଥା ? ଅଗେ ଓଡ଼ିଅ, ବଙ୍ଗଳା, ଫାରସୀ, ନାଗରୀ ସ୍ମୃତିପାଠ ପଢ଼ୁଥିଲେ, ଆଜିକାଲି ଏ ନୂଆ ପାଠ ଇଂରେଜୀ ବାହାରିଛି । ବୁଦ୍ଧିଆ ଲୋକ ଯେ, ସେ ଏ ପାଠ ପଢ଼ିଯିବେ । ପଢ଼ି ଆସି ତମର ଉପରେ ହାକିମି କରିବେ, ଘୋଡ଼ା ଚଢ଼ିବେ, ତମେ ବସିଥା ।"

ହଁ, ହଁ, ଘୋଡ଼ା ଚଢ଼ିବେ । ତମର ଲାଗି । ତମ ମୂରୁଖଙ୍କ ଲାଗି । ତମେ ପିଠି ପତେଇ ଦବ—ସେ ଚଢ଼ିବ ନାହିଁ ? ମୂରୁଖ, ପାଷଣ୍ଡ ଗୁଡ଼ାକ, ଠାକୁର ବାହ୍ମୁଣ କୁଳ ତାଙ୍କୁଇ କାନ୍ଧରେ ବସେଇଚ । ମରୁନ ? ଗୁହ ଖାଉନ ? ଶ୍ରେଷ୍ଠ ଜାତି—ଶ୍ରେଷ୍ଠ ବୁଦ୍ଧି ।"

"ଖାଲି ଜନ୍ମଟାରେ କ'ଣ ବସେଇଚୁଁ କାନ୍ଧରେ ? ଗୁଣ ଅଛି, ବିଦ୍ୟା ଅଛି ବୋଲି ତ ବସେଇଚୁ ତାଙ୍କୁ । ତାଙ୍କୁ ତ ପୂଜା କରୁନୁ—ତାଙ୍କ ବିଦ୍ୟାକୁ ପୂଜା କରୁଚୁ ।"

ହଁ, ହଁ, ବିଦ୍ୟା—ବିଦ୍ୟା—କି ବିଦ୍ୟା ବେ । ବିଦ୍ୟାକୁ ପୂଜା କରୁଚନ୍ତି । କୋଉ ବାପ ଜନ୍ମକେ ପୂଜା କରି ଶିଖିଥିଲେ ନା ପୂଜା—ପୂଜା—ପୂଜା ଦେଖଉଚନ୍ତି । ଆରେ ବିଦ୍ୟାକୁ ପୂଜା କରୁନ ଯେ—କୁବେରକୁ ପୂଜା କରୁଚ—କୁବେରକୁ । ଇଂରେଜୀ ପାଠରେ ବିଦ୍ୟା ନ ଥାଏ, ଥାଏ ପଇସା, ଧନ । ଲୋକେ ଇଂରେଜୀ ପାଠ ପଢ଼ନ୍ତି ପଇସା ଅର୍ଜ୍ଜନ କରିବାକୁ—ବିଦ୍ୟା ଅର୍ଜ୍ଜନ ପାଇଁ ନୁହେଁ । ତମେ ପୂଜା କର ତାଙ୍କ ପଇସାକୁ—ତାଙ୍କ ପଇସା ଅର୍ଜନ କରିବାର କ୍ଷମତାକୁ—ବିଦ୍ୟାକୁ ନୁହେଁ । ବିଦ୍ୟା କ'ଣ ପଣ୍ଡିତ ବାହ୍ମୁଣଙ୍କର ନାହିଁ ?"

"ଏ ଗୁଡ଼ାକ ତମର ଅତ କଥା ନନା—ବରଷ ବରଷ ଧରି ଟଙ୍କା କଢ଼ଉ ସାରି ହାଡ଼ଭଙ୍ଗା ଖଟଣି ଖଟି ପାଠ ହାସଲ କରୁଚନ୍ତି ଆମ ପିଲାଏ—ଟିକିଏ ହେଲେ ବିଦ୍ୟା ଶିକ୍ଷା ହଉନାହିଁ ସେଥିରେ ?"

"ପହଲମାନ ଦେଖିଛ ? ପହଲମାନଠୁ ବେଶୀ ମେହନତ କିଏ କରେ ? ସବାଙ୍କୁ ଏତେ ନାଚ କୁଦ, ଛେଚ ବାଡ଼େଇ କେତେ ମାଣ ଜମି ଚଷେ ସେ କହିଲ ? ଏ ପାଠ ସେଇସ୍ୱା।"

"ତଥାପି କେତେ କଥା ଜାଣନ୍ତି ପିଲାଏ—ଆଖି ଖୋଲି ଯାଏ।"

"ହଁ, ହଁ, କିଏ ମନା କରୁଛି। ଲୋକଙ୍କ ଆଖି ଖୋଲିଯାଏ। ଲୋକେ ସ୍କୁଲକୁ ଚତୁର ହେଇ ଆସି କରୁ ପଟି ଚଟେଇ ଶିଖନ୍ତି। ଇଂରେଜୀ ପାଠ ନୁହେଁ ଏ ଲୋକଙ୍କୁ ଠକିବାର ନୂଆ ଫନ୍ଦ। ପୁରୁଣା ସ୍କୁଲକୁ ଆଉ ପଠାନ୍ତି ନାହିଁ ଏ ବାବୁ ଭୟଙ୍କର। ଲୋକେ କ୍ରମେ ସିହାଣ ହୋଇଗଲେଣି। ସାହୁ ମହାଜନ ଜମିଦାରଙ୍କ କସ୍ରମତ ଆଉ କାଟୁ ନାହିଁ। ସେଥିପାଇଁ ଏ ନୂଆ ଫନ୍ଦ। ଏ ତମର ନୂଆ ଫନ୍ଦ—ତମେ ଯେତେ ଗଉଡ଼ ମୂର୍ଖ ପରଜାଙ୍କୁ ଶୋଷୁଚ, ଏ ତମର ନୂଆ ଫନ୍ଦ।"

"ଟମାଡେ କାହିଁକ କହୁଚ ନନା—ମୁଁ ତ ନିଜେ ମୂର୍ଖ।"

"ଆଉ କାହାକୁ କହନ୍ତି ? ତମେଇ ତ ଦୋଷୀ। ତମେଇ ତ ଚଣ୍ଡାଳ। ତମଠୁ ବଳି ଚଣ୍ଡାଳ ଆଉ କିଏ ଅଛି ? ତମେଇ ତ ସେ ଭଦ୍ରଲୋକଙ୍କୁ ତଣ୍ଟି ଚଟେଇ ଦଉଚ—ସେ ଭଦ୍ରଲୋକ ଛଆର କରୁଚ—ତମକୁ ନ କହି କହନ୍ତି କାହାକୁ ? ତମେ କଣ ଆଉ ଅଜ୍ଞବାଲି ପୁରୁଣା ଲୋକଙ୍କୁ, ମୁଖିଆ ପ୍ରଧାନଙ୍କୁ, ରଜା ଜମି-ଦାରଙ୍କୁ ମାନୁଚ ? ତମର ଗୁରୁଗୋସେଇଁ ସେଇ ଏ.ଫେ.ବେ. ମେ କଲବାଲା। ସେ ଯାହା କହୁବେ ବେଦର ଗାର।"

"ଏ କଥା କାହିଁକି କହଉଚ, ତମେ ବୁଝୁନାହଁ ନନା ! ଜମି-ଦାର, ମହାଜନ, ପଣ୍ଡିତ, ବ୍ରାହ୍ମଣ, ମୁଖିଆ ପ୍ରଧାନଙ୍କ ଜଞ୍ଜାଳ ତ ଦିନୁଦିନ ବଢ଼ିଲା—"

"ଚୁପ୍ ଚୁପ୍-ଅଳ ବେଶି ପାଟି କର ନା । ବହୁତ ଶୁଣିଚି ସେ ଜାତିଆ କଥା ଗୁଡ଼ାକ । ଶୁଣି ଶୁଣି ବଧିର । ତାପର କ'ଣ ଦେଖ । ଏ ପାଠ ତମକୁ ସତେଇଚନ୍ଦ୍ର ସେଇ ଇଂରେଜୀ ପାଠୁଆ ଯାକ । ଅଜ ତାକୁ ନାଗସ୍ୱ ବାଡ଼େଇ ପ୍ରଶ୍ନର କରୁଚ ତମେ ଦର ପାଠୁଆ ଯାକ । ପାଠ ଅଙ୍କାଠ ତମେ ଏଇ ଦେଖା ଶିଖା ଗୁଡ଼ାକ ଚେଣୀ ବିପଦ । କ'ଣ ନା—ଅମେ ଜୁଲମ କରୁଛୁ ? ଅମ ଜୁଲମ ତମେ ଅଜ ରଖିଚ ? ବାପ ଦାଦ, ଖୁଡ଼ୁତା ଜୁଡ଼ୁତା, ମଜସା ପିସା ବୋଲି ତମେ ଅମକୁ ମାନ୍ୟ କରୁଥିଲ—ଦନ ଥିଲା—ଅମେ ନହେଲେ କେତେବେଳେ କମିଶ ଗୁପ୍ତେ ବଟେ ତମକୁ ମାର ଦଜଥିଲେ—ଶାସନ କରିବା ଲାଗି । ସେ ନୋହିଲା । ଏବେ ଯା, ଇଂରେଜୀ ପଢୁଆ ଓକିଲ, ମୁକ୍ତାର, ଡାକ୍ତର, ମୋକ୍ତାରଙ୍କ ନିଆରେ ପଡ଼—ଜମିଦାର ମହାଜନଙ୍କୁ ନ ମାନ—ଧର୍ମାବତାର, ସାକ୍ଷାତ ଧର୍ମାବତାର ବସିଚନ୍ତି ମିଶନରେ—ସତ୍ଯାଭ ଧର୍ମ ବିଗୁର କର ସତ୍ତଷଚନ୍ଦ୍ର ଯମରାଜା ଭଳି—ତାଙ୍କର ପାଖରେ ହାତ ଯୋଡ଼ । ସେ ତ ଅଜ ହାତରେ ମାରିବେ ନାହିଁ । ସେ କାଟିବ କାହିଁକି ? ତମକୁ ଖାତରେ ମାଇଲେ ସହିବ—ହାତରେ ନୁହେଁ । ପେଟର ମାଡ଼ ସହିବ ଘାଟର ନୁହେଁ । ନ୍ୟାୟ ନାଁରେ, ଶାସନ ନାଁରେ, କଚେରୀ ନାଁରେ, ଅଇନ ନାଁରେ, ତମେ ଅକାନ୍ତ ହେବା ଯାଏଁ, ନାକରେ ଦାନ୍ତ କାନରେ ବାନ୍ଧିବା ଯାଏଁ ଦଉଥିବ—ହସୁଥିବ—ସହୁଥିବ—ଯେତେ ଠକୁଥିବ ସେତେ ଅଣ୍ଟ—ଅଜ ଠାକୁର ବ୍ରାହ୍ମଣ ନାଁରେ—ରଜା ପ୍ରଜା ସମ୍ବନ୍ଧରେ କୋଉଟି ଦ'ପଇସା ଗୃହପଇସା ଦବାକୁ ପଡ଼ିଲା ତ ସେଇଟା ହେଲା ଅମର କସୁର—ବେ ଅଇନ ।"

"ତମେ ଅମକୁ ସେଠରେ ଘାଟରେ ସବୁଥିରେ ମାରୁଚ । ଯାହାକୁହ ନନା, ଏଇ ଜମିଦାର ମହାଜନଙ୍କ ତାଳ ପୂର୍ବ ଅସ୍ତ ।

ଏଗୁଡ଼ାକ ଆପଣା ପାପରେ ଆପେ ଭଙ୍ଗି ପଡ଼ୁଚନ୍ତି । ଅତ୍ୟାଚାର ଜୁଲମ ଅତି ବଳି ପଡ଼ିଲା । ଲୋକେ ଆଉ ସହି ପାରୁ ନାହାନ୍ତି । ଧରମ ବି ସହୁଲା ନାହିଁ । ଦେଖୁନ, ଗାଁରେ ଆଜି ଲୋକ ଅଛନ୍ତି ? ଗାଁ ପଦା ପଡ଼ିଲାଣି । ସମସ୍ତେ କଲିକତା । ଘର ଦୁଆର ଭାଙ୍ଗୁଡ଼ା ହେଲଣି । ଏ କାହାର ପାପ ?—କାହାର ଅଧର୍ମ ?”

“ଖୁବ୍ କହୁଚ—ଥାଉ ଥାଉ ! ପାପ ଦେଖାଉଛ ପାପ । ପାପ ପାପ ବୋଲି ଆଉ ମୁହଁରେ ଧର ନା ସେ ଶବ୍ଦ । ଆଜକାଲି ପୁଣି ପାପ ଗୋଟାଏ କ’ଣ ରେ ? କହ—ବେଆଇନ—ବେଆଇନ । ଗୋଟେ ତ ଆଇନ, ଆଉ ଗୋଟେ ବେଆଇନ୍ । ପାପ କ’ଣ ଗୋଟାଏ ପୁଣି । ପାପର ଘର କୋଉଠି ? ସେ କପିତଳା ଜିନିଷ । ତାକୁ କିଏ ଦେଖିଛି ? ସେ କୋଉ ଆଇନ ବହିରେ ଲେଖା ହୋଇଛି ? ତାକୁ କୋଉଁ ଓକିଲ ନଜିର ଦେଖାଇ ପ୍ରମାଣ କରିବ ? ଯଉଁ ପାପକୁ କଥାରେ ଲଙ୍ଗେ ମୋଟି ପୁଣ୍ୟ କରି ନହେବ ସେ କି ପାପ । ଯେଉଁ ପାପକୁ ମିଶଲ ଉପରେ କୋର୍ଟ କିମ୍ବା କମିଟି ଇଚ୍ଛା ମନ ଅନୁସାରେ ପୁଣ୍ୟ କରି ନ ପାରିବେ ସେ କି ପାପ ? କହ ବେଆଇନ ବେଆଇନ୍ । ଜମିଦାର ସାହୁକାରଙ୍କ ଅତ୍ୟାଚାର ପାପ ନୁହେଁ, ବେଆଇନ । ମିଶଲରେ, ଧର୍ମବତାରଙ୍କ ପାଖରେ ଧର୍ମ ଅଦାଲତରେ ତା’ ନା ସେଇ ବେଆଇନ—ପାପ ନୁହେଁ । ପାପକୁ କିଏ ସତ୍ୟପାଠ କରି ପୁଣ୍ୟ କରିଦେବ ? ପାପ ହେଉଥିଲେ କାଜେ ପ୍ରାୟଶ୍ଚିତ୍ତ ନ କରି ଓକିଲ ମୁକ୍ତାର ହାକିମ ଦପ୍ତରିଙ୍କ ଫିସ ଦେଇ ଲାଞ୍ଚ ଦେଇ ପାର୍ ପାଇ ଛୁଟନ୍ତା ? ଏସବୁ ଆଇନ ବେଆଇନର ଖେଳ—ପାପ ପୁଣ୍ୟର ନୁହେଁ । ଦୁନିଆଟା ହୋଇଛି ସେଇଥି । ସେଥିରେ ଜମିଦାର ଅତ୍ୟାଚାର କଲେ, ସାହୁକାର ଅତ୍ୟାଚାର କଲେ ଭାସିଗଲା କ’ଣ ? ସେ ଯଦି ବେଆଇନ ହୋଇଥାଏ, କୋର୍ଟରେ ଟିଏ କରେଇ ଦିଅ ।

ପାପ ବୋଲି କହନ୍ତି କାହିଁକି ? ସେ କ'ଣ ତାଙ୍କର ପାପ ? ପାପ କେହି କରନ୍ତି ନାହିଁ ଅଜାଣତରେ । ପାପ ଯଦି କରୁଥାଆନ୍ତି ଆମେ, ଆଉ ତମେ ଯଦି ଗାଲି ପୂର୍ଣ୍ଣରେ ଥାଆନ୍ତ ତେବେ ଠାକୁରଙ୍କୁ ତାଙ୍କ ପାପ ଆଗରେ ହିମତ ଧରି ଠିଆ ହୋଇ ଯାଆନ୍ତ । ଯାହା ହବାର ହୋଇଯାନ୍ତା । ପାପ ପୁଣ୍ୟର ଲଢ଼େଇ ଲାଗନ୍ତା । ଦେଖା ଯାଆନ୍ତା କିଏ ଜିଣନ୍ତା । ତମେ କାହିଁକି ଦଉଡ଼ ଯାଅନ୍ତ କି କୋର୍ଟ ଡିଶଲକୁ? ତଟମ ଖବର, ପାପକୁ ତମେ ଏଡିଶ ଦବେଇ ଦବ, ଅଧିକ ପାପ ବଳରେ—ଶ୍ରେଷ୍ଠ ଅନ୍ୟାୟକୁ ଦବେଇବ ତମେ ବଡ଼ ଅନ୍ୟାୟ କରି ? ଜମିଦାର ମହାଜନଙ୍କ କବଳରୁ ରକ୍ଷା ପାଇବ ଓକିଲ ଡାକ୍-ଟରଙ୍କ ପାଖେ ମୁଣ୍ଡ ଝୁକା ? ପାରିବ ନାହିଁ—ପାରିବ ନାହିଁ । ଜମି-ଦାର ମହାଜନଙ୍କ ଅନ୍ୟାୟ ପାଉଣା ହାକିମ ଓକିଲଙ୍କ ପାକଟିରେ ନ୍ୟାୟ ହୋଇଯାଏ, ନୁହେଁ ? ପାରିବ ନାହିଁ—ପାରିବ ନାହିଁ—ଏ ଜୁଲମ କେହି ବନ୍ଦ କରି ପାରିବ ନାହିଁ । ଜୁଲମ ଚାଲିଥିବ—ଜୁଲମର ଢଙ୍ଗ ବଦଳି ଯିବ—ଜୁଲମ କଲାବାଲାର ରଙ୍ଗ ବଦଳି ଯିବ—ପୁଣି ଦେଖିବ ଏଇ ଜମିଦାର ମହାଜନଙ୍କ ପୁଅ ପୁତୁରା ଯାଇ ଓକିଲ ମୁକ୍ତାର ହାକିମ ଦପଟି ହୋଇ ଠିଆ ହେବେ । ତମେ ଯଉଁ ଛମିରେ—ସେଇ ଛମିରେ ।

ଜମିଦାର, ଜମିଦାର ହଜୁର । ଜମିଦାର ସାହୁକାରଙ୍କୁ ଏ ଜୁଲମ ଶିଖେଇଲା କିଏ ? ତାଙ୍କୁ ବଳ ଦେଲା କିଏ ? ତାଙ୍କ ଅତ୍ୟାଚାରର ପାପକୁ ଦୃଢ଼ କରି ଠିଆ କରେଇଲା କିଏ ? ସେଇ—ସେଇ ତମେ ଯାହାଙ୍କ ପାଖେ ଯାଇ ଶରଣ ପଶୁଚ ସେଇ, ଯଉଁ ଓକିଲ ଦପଟିଙ୍କୁ ମା ବାପ ଧର୍ମାବତାର ବୋଲି ତାଙ୍କ ଦାନ୍ତରେ ଚରଣ ଧରି ପଡ଼ ଯାଉଚ ସେଇ—ସେଇ । ସେ ତମର ନୂତନ୍ତ୍ରରେ ପାଗଳା ତମର ନୂତନ୍ତ୍ର । ସେ ତାଙ୍କ ସାଙ୍ଗ ବାଘର କ

ନୁହନ୍ତି । ସେ ହରଚନ୍ଦ୍ର ପଇସାର । ସେ ତାହାର ପକ୍ଷ ନୁହନ୍ତି—ପଇସାର ପକ୍ଷ । ପଇସା ତାଙ୍କର ନ୍ୟାୟ । ପଇସା ଯିଏ ଯେତେଦେବ ସିଏ ସେତେ ନ୍ୟାୟ ପାଇବ । ସାହୁ ମହାଜନ, ରଜା ଜମିଦାରଙ୍କର ବେଶି ପଇସା—ନା ତମର ବେଶୀ ପଇସା ? ତମେ ଯେଉଁ ଠେଙ୍ଗା ଧରିବ ସେ ସେଇ ଠେଙ୍ଗାରେ ତମକୁ ପାହାର ଦେବେ । ତମେ ଯା—ଯା ସେଇ ଇଂରେଜୀ ପାଠୁଆଙ୍କ ପାଖକୁ । ସେ ତମକୁ ସେଇ ଜମିଦାର ମହାଜନଙ୍କ ଟଙ୍କାତାରେ ଠୋକର ନ ଦେଇଛନ୍ତି ତ ମୋତେ ପୁଣି କହିବ । କ'ଣ ନା-ନ୍ୟାୟ, ଧର୍ମ । ନ୍ୟାୟ ଦରକାର ? ଧର୍ମ ଦରକାର ? ଯେ ନ୍ୟାୟକୁ ମାନେ, ଧର୍ମକୁ ମାନେ, ସେ ସିନା ନ୍ୟାୟ ଦବ । ଆଉ ନ୍ୟାୟ ଦେବେ ଏଇ ପଇସା କୁକୁର ଇଂରେଜୀ ପାଠୁଆ କେବେ ? ତଳ କୋର୍ଟରେ ଗୋଟେ ଓକିଲ ଗୋଟେ ହାକିମ ତମକୁ ନ୍ୟାୟ ଦେବେ । ତାଙ୍କଠୁ ନ୍ୟାୟ ଆଣିବାପାଇଁ ତମ ଅଣ୍ଟାରେ କଉଡ଼ି ବଳ ଅଛି । ତା' ଉପରକୁ ପୁଣି ଯେ ବଡ଼ ନ୍ୟାୟ ଅଛି ଯଉଠି ଜଜ୍ ବାରିଷ୍ଟର ନ୍ୟାୟ ଦେବେ—ତହିଁକି ତାକତ ଅଛି ତମର ? ତେବେ ପାପ ପାପ ବୋଲି ଚିତ୍କାର କରୁଚ କାହିଁ ? ସହିବାକୁ ହବ । ତମେ ସହିବା ପାଇଁ ଜନ୍ମ ହୋଇଚ । ସେଇ ଗୋଟାକ ନ୍ୟାୟ—ଉଚିତ । କାରଣ ଭାଗ୍ୟକୁ ବଦଳେଇ ଦେବାର କ୍ଷମତା ତମର ନାହିଁ । ଯଉଁ ବାଟ ଧରିବ ସେ ବାଟରେ କେବେ ନୁହେଁ । ପାପକୁ ବେଆଇନ ବୋଲି କହି ତମେ ଅଇନ ଅଦାଲତରେ ନ୍ୟାୟ ପାଇବ ନାହିଁ । ବେଆଇନ ଆଇନ ହୋଇ ପରେ କଥାର ସେଇଁ ପାଖରେ—ପାପ ଯେ ସେ ପାପ । ତାକୁ ଆଉ ଅଇନ ଦେଖାଇ ପୁଣ୍ୟ କରି ହେବ ନାହିଁ । ପାପ ପାଇଁ ଆଇନ ନାହିଁ ।”

ଅଗଣି ଦାଶ ଅଳ୍ପ ଯା' ପାରେ ତା ହେଉ—ସେ ବଡ଼ ଦାମ୍ଭିକ—ବଡ଼ ନିର୍ଭୀକ । ଏକ ଜିଦଖୋର ଲୋକ । ପାଞ୍ଚ ବୁଝିଥିବ

ସେଇଯ୍ଯା । ତଥା ଗୁଡ଼ାକ ତାର ସିଂହ ଗର୍ଜନ ପରି ଠୋସ୍—ଜବର ଦସ୍ତ । ତା ଆଗରେ ଯୁକ୍ତି କରି କେହି ଜିତି ପାରିବ ନାହିଁ । ପାଟିରେ ସେ ବୁଢ଼େଇ ପକାଇବ । ମୂର୍ଖେ ମୂର୍ଖେ ସେ ସମସ୍ତଙ୍କୁ ବଡ଼େଇ ଦିଏ ବୋଲି ଅନେକେ ତା ଉପରେ ଶତ୍ରୁ । ସେ ଖାତର କରେ ନାହିଁ । ପାଦ୍ଧା କହୁଥିବ ସେଇଯ୍ଯା କରିବ । ଗୋଟେ କଥା । ସେ ପୁଅକୁ ଇଂରାଜୀ ପଢ଼ାଇଲା ନାହିଁ । ଦୁଃଖି ବୃତ୍ତି ପାଇଥିଲା—ଭଲ ପିଲା—ସେଥି ପାଇ ତା' ମାଷ୍ଟର ଯାକ କହିଲେ, ଇସ୍କୁଲ ସେକ୍ରେଟେରୀ ପଟ୍ଟନାୟକ ପଣ୍ଡାର ସେ ବି ମହାନ୍ତି, ସେ ବି ଆସି କହିଲେ, ଅଗଣି ଦାଶ ସ୍ତ୍ରୀ, ଗଳ୍ପ ବାଙ୍କା ବନ୍ଧୁ ବାନ୍ଧବ ପ୍ରିୟ୍ଯପ୍ରୀତ ଯିଏ ଶୁଣିଲା ସିଏ ଆସି ଯିଦ କଲା ଅଗଣି ଦାଶ ଆଗରେ—କର୍ଣ୍ଣିଥିରେ ହେଲା ନାହିଁ, ତାର ସେଇ ଗୋଟିଏ କଥା ପାଠ ପଢ଼ିବ ତ ବାହ୍ମଣ ଘର ପୁଅ ସଂସ୍କୃତ ପଢ଼ୁ—କିମ୍ବା କର୍ମ ଶିଖୁ—ପଇସା ରୋଜଗାର କରିବା ପାଇଁ ସେ ଇଂରେଜୀ ପଢ଼ାଇ ପାରିବ ନାହିଁ ।

ଯଦ କେହି କହେ—'ସଂସ୍କୃତ ମନ୍ତ୍ର ପାଠ—ଆଜ ଅନ୍ନକାଳ ଚଳୁ ନ ହୁ' ଅଗଣି ଦାଶ କର୍ମ ଉଠେ—ପାଠ କେବେ ମନ୍ଦ ହୋଇପାରେ—ପଢ଼ିବା ବାଲା ମନ୍ଦ ହୋଇଗଲେ କହେ ପାଠଟା ମନ୍ଦ । ସଂସ୍କୃତ କେବେ ମରି ପାରେ ନା—କଦାପି ନୁହେଁ । ସୃଷ୍ଟିଥିବା ଯାକେ ସଂସ୍କୃତ ହୋଇ ରହୁଥିବ—ଜୀଇଥିବ । ମଣିଷ ଯଦ ସଂସ୍କାରକୁ ଭୁଲି ଯାଏ, ତେବେ ସେ ସଂସ୍କୃତକୁ ଭୁଲିପାରେ—ତା' ଆଗରୁ ନୁହେଁ ।

ଦୁଃଖି ସଂସ୍କୃତ ପଢ଼ିଲା । କିନ୍ତୁ ତାର ମନବୋଧ ହେଲା ନାହିଁ ସେଥିକିରେ । ସେ ବେଳପାଇଲେ ଲୁଚି ଲୁଚି ଯାଇ ଜଣେ

ଇଂରେଜୀ ମାଷ୍ଟର ପାଖରେ ଇଂରେଜୀ ପଢ଼ି ଅସେ । ମାଗି ଯାଚି ବହି କଣେ । ବାପକୁ ଜଣାଏ ନାହିଁ । ଅଗଣି ଦାଶ ସେ କଥା ଜାଣିପାରେ ନାହିଁ । ଜାଣିଥିଲେ ଦୁଃଖିର ବାପ ନ ଥାନ୍ତା ।

ସେଇ ସଂସ୍କୃତ ଟେଷ୍ଟ ଦେଲାବେଳେ ସେ ବାପ ସଙ୍ଗରେ ପହିଲି କଳି କରିଥିଲା । ଘରେ ବସି ରହିଲା । ଆଦୌ ତାହାଙ୍କ ନାହିଁ—ଟେ଼ଲରେ ଯାଇ ବହି ପଢ଼ିବାକୁ । ବାପର ବ ଜିଦ୍ ବସିଲା—ସଂସ୍କୃତ ନ ପଢ଼ିବ ତ ମୂର୍ଖ ହବ—ସେ କେବେହେଁ ଦୁଃଖିକୁ ଇଂରେଜୀ ପଢ଼େଇବ ନାହିଁ । ଶେଷରେ ମୂର୍ଖ ହେବା ଭୟରେ ଦୁଃଖି ହାର ମାନିଲା ।

ଦ୍ୱିତୀୟ ଥର କଳିକଲା ବାପ ସଙ୍ଗରେ ବାହାଘର ନେଇ । ଦୁଃଖିର ଶଶୁର ଗୌରୀ ଦାନ କରିବେ । ସେଥିପାଇଁ ଦୁଃଖିକି ବାହା ହବାକୁଇ ହବ । ଅଗଣି ଦାଶ ଜବାବ୍ ଦେଇ ସାରିଚନ୍ତି । ତାଙ୍କ ଜବାବ୍ ଆଜି ଏ ପାଖ ସେ ପାଖ ହବାର ନୁହେଁ । ଦୁଃଖି କୌଣସି ମତେ ବାହା ନ ହୁଏ । ଚୁଆ ଜନୀଆ ବାହା ହବ ନାହିଁ । ଚୁଆ ଜନୀଆ ବାହାହବା ବେଆଇନ୍ । କୋର୍ଟରେ ଆପତ୍ତି କଲେ ଦଣ୍ଡ ହେଇ ଯିବ । ଅଗଣି ଦାଶ ତଥାପି ନ ମାନନ୍ତି । ଅଗଣି ଦାଶ ନାଁରେ କିଏ ମକଦମା କରିବ କହୁ । ଅଗଣି ଦାଶକୁ ଯିଏ ମିଶଲକୁ ଟାଣିବ ତା' ମୂର୍ଦ୍ଧନା ପାଜ୍ ହବ । ଅଗଣି ଦାଶ କିଛି ଗ୍ରୈର ଚୃଣ୍ଡାଲ ନୁହେଁ । ଅଗଣି ଦାଶ କୋର୍ଟଠେ ମାର୍ ହାଣ କରି ନାହିଁ କାହାକୁ । ଶାସ୍ତ୍ର ବିଧିମାନି ଅଗଣି ଦାଶ ଚଳିବ, ସେଥିରେ ସେ ହବ କଚେରୀ କି ଟଣା ? ଧର୍ମ ଦେବତା କଣ ଜୁଆଡ଼େ ଲୋପଯାଇ ଗଲେଣି କି ?

ଏମିତ କଥାରେ ଦୁଃଖି କହୁଦେଲା—"ଧର୍ମ ଦେବତା କ୍ଷେପ ପାଇ ନ ଥିଲେ ଅଜ୍ଞାନ ବାଳକାଙ୍କୁ ଜବରଦସ୍ତି କଣକ ବେକରେ ବାନ୍ଧ ଦଅନ୍ତେ !"

"ସବଗଞ୍ଜ—ସରଗଞ୍ଜ—ଏ ଯୁଗ ଓଲଟି ଗଲା । ଶୁଣ ହୋ, ପୁଅକୁ ପାଠ ପଢ଼େଇ ଥିଲ, ମୁହଁରେ ଜବାବ ଦେବ ବୋଲି । ମୁଁ ତ ଇଂରାଜୀ ପାଠ ପଢେଇ ନ ଥିଲି—ଏ ତେବେ ବାପ ମୁହଁରେ ଜବାବ ଦେବା ଶିଖିଲା କେଉଁଠୁ ? ଏ ମୋତେ ଆସିଛୁ ପାଠ ପଢ଼େଇବାକୁ । ହଇରେ, ତୁ ମୋତେ ପାପ ପୁଣ୍ୟ ଶିକ୍ଷା ଦେବୁ ? ଏକଥା ଆମ ଚଉଦ ପୁରୁଷରେ କର ଆସିଛନ୍ତି, ଆଜ ନୂଆ ନୁହେଁ । ତାଙ୍କର ପାପ ହୋଇ ନାହିଁ—ଆଉ ଆଜ ତୁ କହୁଦେଲୁ ବୋଲି ପାପ ହୋଇଯିବ ।"

ଗାଁରୁ ଦ' ଗୁହଜଣ ଅଗଣି ଦାଣର ପାଟି ଶୁଣି ଦଉଡ଼ି ଆସିଲେ । ବେଣି ମଣିଷଙ୍କୁ ଦେଖି ଅଗଣି ଦାଣର ବକ୍ତୃତା ଛୁଟିଲା । ଦୁଃଖି ଯାହା କହୁଥିଲା, ନ କହୁ ଥିଲା ସବୁଯାକ ଯୁକ୍ତିକ ଏ ପାଖ ସେ ପାଖ କରି ବାଟି ଟିକି ଟିକି କରି ପିଙ୍ଗି ଦେଉଥିଲା ଯେମିତ—

"ହଇ ହୋ, ବାପ ମା ଯାହା କହୁବେ—ସେଥିରେ ପୁଅ ଝିଅ ଏ ପାଟି ଫିଟାନ୍ତି ? କୋଉଠି ଦେଖିଥିଲ ? କୋଉଠି ଶୁଣିଥିଲ ? ଏ କଳିକାଳ ଇଂରେଜୀ ଅମଳ ହେଲାରୁ ସିନା ଏ ଅନ୍ୟାୟ ଘୋଟିଲା । ମୁଁ ତ ସେଥି ପାଇଁ ଏ ଟୋକାକୁ ପାଠ ପଢ଼େଇଣ ନାହିଁ ବୋଲି ମନା କର ଦେଇଥିଲି । ତମେ ସମସ୍ତେ ଯିଦକଲ— ଏଇ ନିଅ, ଏଥର ସମ୍ଭାଳ । ଗାଁ ଉଚ୍ଛନ୍ନ କରବ ସେ । ବାପ ମୁହଁରେ ଜବାବ ! ଓହୋ—ଘୋର କଳି—ଘୋର କଳି—ଶିବ-ଶମ୍ଭୋ—ଶିବଶମ୍ଭୋ ।"

"ସେ ସବୁ ସଂସ୍କୃତ ପଢ଼ୁଥିଲେ ?" ଢାଏ ଜଣେ କହିଦେଲା ।

"ଅରେ ରଖ୍ ତୋ ସଂସ୍କୃତ । ଆଜିକାଲି ସବୁ ପାଠ ସେଇଆ—ସବୁ ଚୁଲିମୁହଁ ପଣ୍ଡିତଙ୍କୁ, ଅଜାଡ଼ଙ୍କ ପାଖରେ ବସିଲେ ଉଠିଲେ ଜାତ ଯାଉ ନାହିଁ । ଜାତର ଲୋକ ବି ତ୍ରୋଟ ହେଇଯିବ । ଏ ଇଂରେଜୀ ପାଠ ହାକଅରେ ଆଉ କ'ଣ ଶୁଦ୍ଧ ଶାଣ୍ଢ ହେଇ ରହିଛି କହୁ ? ସବୁ ମିଶ—ସବୁ ବାଉବାଇସା ହେଇ ଗଲଣି । ସଂସ୍କୃତ ଅଉ କଣ ସଂସ୍କୃତ ହେଇଅଛି ? ଗାଲି ନାଁକୁ ? ସଂସ୍କୃତ—ନରଃ ନରୌଃ ନରାଃ—ତା ଛଡ଼ା ଅଉ ପଢ଼ୁଛି କଣ ? ଶ୍ଳୋକାଷ୍ଟା ପଢ଼ୁଛି—ବାତଣ୍ଟା ରହୁଛି—ଶସ ବାଢ଼ି ? ଅସଲ ସଂସ୍କୃତ ନାହିଁ, ଅସଲ ସଂସ୍କୃତ ଥିଲେ ସଂସ୍କୃତର ଭାବ କୁଆଡ଼େ ଯାଥନ୍ତା । ଯିଏ ସଂସ୍କୃତ ପଢ଼ନ୍ତି—ଠିକ୍ ଠିକ୍ ଭାବରେ ସଂସ୍କୃତ ପଢ଼ନ୍ତି ସେ ଏମିତ ଅସଂସ୍କୃତଆ କଥା କହିବେ !"

ଜଣେ କେହି ଅଗଣି ଦାଶ ଅଡ଼କୁ ଢଳି କଥା କହିଲା— "ହଇ ହୋ, ଆଜିକାଲିକା ଦାଣ୍ଡଆ ତ ଯିମିତ—ତେମେ ପାଠ ପଢ଼ା, ଗୃହ ନ ସଢ଼ା—ସବୁ ସେଇଆ—ସବୁ ସମାନ—ଅଜ କାଲିକା ଟୋକା କଣ ଆଉ ଗୁରୁ ଗୁରୁ ଗୁରୁଜନଙ୍କୁ ମାନୁଛନ୍ତି ? ମଣିଷ ମାନୁଛନ୍ତି ଅଗ !"

ଜଣେ ଟୋକାଳିଆ ଲୋକ ତାର ପ୍ରତିବାଦ କଲା— "କୁଆଡ଼ୁ—ଆଜିକାଲିକା ଟୋକା ଗୁଡ଼ାକ କଣ ଆଉ ମଣିଷ କି ମଣିଷ ମାନିବେ । ସେ ତ ଗାଈ ଗୋରୁ ଗୁଡ଼ାକ । ବାପ ମା ତାଙ୍କ ବେକରେ ଦଉଡ଼ି ବାନ୍ଧି ଟେରେଇ ବୁଲେଇ ଆଣି ଯେମିତ ଗଡ଼େଇ ଦେବେ ସେ ସେମିତ ରହିବେ ।"

"ଏଇ ଦେଖ ଦେଖ, କଥା ଶୁଣ ।" ଅଗଣି ଦାସ ଗହଡ଼ା ଛାଡ଼ ଉଠିଲେ—"ହଁ, ଅଲବତ ରହିବେ । ଭଗବାନ ଆମକୁ ବାପ

ମା ଭଇଚନ୍ଦ୍ର ଆମେ ଯେମିତ ଗୁହଁକୁ ଚିଲଏ ସେମିତ ରହୁଚେ । ଏ କ'ଣ ଅଜବା କଥା ? ଏ କଥା ସାତ ସଢାନେରୁ ହେଇ ଆସୁଛି ।"

"ତା ବୋଲି ଘୁଅ ଖୋଇଲେ ବି ଗୁହ ଖାଇବୁ ?"

"ଖାଇବାକୁ ହବ । ବାପ ମା ଗୁହ ଖାଇବାକୁ ଯଦ କହନ୍ତି, ତେବେ ଜାଣିବ ଯେ ସେ ଗୁହରେ ବି ଗୋଟେ ଇଷ୍ଟ ଅଛି ।"

"ତା ବୋଲି ଝୁଅ କନିଅଁଠାକୁ ବାହା ହେବାରେ କି ଇଷ୍ଟ— ସେ ତ ବରକୁ ସାପ କି ବେଙ୍ଗ ବୋଲି ଜାଣେ ନାହିଁ ।"

"ଇଷ୍ଟ ନାହିଁ ? ଅଲବତ ଅଛି । ପଚାର ଯାଇ ତୋ ବାପକୁ । ସେ କଅଁଚ କନିଅ ବାହା ହେଇଥିଲେ—ସ୍ନେହ କି ବଡ଼ । ତୋ ମା ଆଉ ତୋ ବାପ ଭଲ ହଲେ ମଣିଷ ଖୋଜି ଆଣିଲି ତମ ଅଲ୍ପ କାଲିକା ବଜାରରୁ । ସାବିତ୍ରୀ ସତ୍ୟବାନ, ରାମସୀତାମ୍ବା କଣ ସବୁ ଗଛରୁ ଫଳନ୍ତି କି ରେ ! ଏଇ ମାଟିରେ, ଏଇ ଭୂଇଁରେ, ଏଇ ତମର ଅମର ଘୁଟିବାଟି ମାଟି ଘରେ, ଏଇ ଯଜ୍ଞ ଦହ ମାଟିରେ ମିଶିବ ତା'ର ଭିତରେ ସତୀ ସାବିତ୍ରୀ ସତ୍ୟବାନ ଥାଆନ୍ତି—"

"ଆଉ ଏଇ ଦହଟରେ, ଏଇ ମଣିଷ ଶରୀର ଦେଲା, ଏଇ ଘରେ ଜନ୍ମ ହେଇ, ନାତି ନାତୁଣୀ ଚରି ପହୁ ଶହ ନରାଧ ବାଲିକା ବଧବା ହୁଅନ୍ତି—ଗଣ୍ଡ ତେଡ଼ି ନାନୀ ପର ଅଗଣିତ ସ୍ତ୍ରୀଗ କଅ ବୁଦା ମୂଳେ ପୁଅ ସ୍ନେହ କରି ଅସନ୍ତି—କଲିକତା ହାଓଡ଼ା ଗଳିରେ ଶେଷକୁ ପତି ଭକତି ଦେଖାନ୍ତି ଯାଇ ।"

"ନାରାୟଣ—ନାରାୟଣ ! ଶିବଶମ୍ଭୋ ! ଶିବଶମ୍ଭୋ ! ସଖୀକୁ ମଣିଷ ଏଇଯା ଶୁଣିଲା ଆଜି ।" କହି ଅଗଣି ଦାଶ ଅଗଣାରୁ ଘର ଭିତରକୁ ପଳେଇଲା । ସେ ଭେଣ୍ଡି ଅଠା ଯେମିତି କହୁଥାଏ—"ଆମ

ବୁଜି ଦେଲେ ପାପ ଲଗି ଯାଏ ନାହିଁ ମଉସା ।" କହୁ କହୁ ସେ ବ ସେବାଟେ ତା ଘରକୁ ଗୁଲଗଲା ।

ଘରେ ଯାଇ ତୁମୁଳ ଗୋଳ । ତାଙ୍କ ବାହ୍ମଣୀକୁ ଡାକି ଅଗଣି ଦାଣ କହିଲେ--"ହେ ଶୁଣୁଛୁ--ଏଥର ତମ ପୁଅକୁ ତମେ ସମ୍ଭାଳ, ମୁଁ ଆଉ ଏ ଘରେ ରହିବ ନାହିଁ—ନାଃ, ଏ ଘରେ ଆଉ ଗୋଡ଼ ଥୋଇବ ନାହିଁ । ମୁଁ ଗୁଲିଲି—"

"କୁଆଡ଼େ—କୁଆଡ଼େ ?" ଦୁଃଖିଆ ବୋଉ ପଚାରିଲା ।

"ଏଥର ତୀର୍ଥ—ତୀର୍ଥ—ତୀର୍ଥବାସ । କାଶୀ ବାରଣସୀ ଗୁଲିଲି । ଶାସ୍ତ୍ରରେ କହୁଛି—ପୁଅ ନବେଶି ପତ୍ନୀ ପାଶେ—ଅଥବା ନେବ ସନ୍ୟାସେ—ନା-ନା ତମେ ମୋତେ ଅଟକେଇବ ନାହିଁ—ତମେ ମୋତେ ବାଧା ଦେବ ନାହିଁ । ମୁଁ ଏ ଘରେ କଷ୍ମିନ୍ କାଳେ ରହିବ ନାହିଁ ।"

"ନହେଲା ଗାଁରେ ଯାଇ କୋଉଠି ରହ—ମହାଦେବ ବଙ୍ଗଳା ପଡ଼ିଛି— ସେଠି ଯାଇ ରହୁନ, ଘରେ ନ ରହିବ ତ ।"

"ନା ନା-ମୁଁ ଚଲିଲି ଏ ଗାଁରେ ରହିବ ନାହିଁ ।"

"ବେଶ୍ ହେଲ—ମୋ ବାପ ଘରକୁ ଗୁଲ ଯାଅ ।"

"ଏଁ, ତୁର ବାପଘର ଯିବକର—ଦେଖି ନାହିଁ, ଦେଖିଛି । ଏହିପ ଶହେ ଛନିବୋଉ ଟଙ୍କା ମୋ ବାପ ମୋର ଅଗରେ କନ୍ୟା ସୁନା ଗଣି ଦେଇଛୁ—ମୋର ଅଣି ଅଗରେ, ମୋର ଅଣି ଆଗରେ । ଆଉ ଭଏ ପୁଣି ଆମକୁ ପୋଷିବେ—ଦେଖି ନାହିଁ ତାଙ୍କୁ ଦେଖିଛି । ମୁଁ ଅଜ ବନା କନ୍ୟା ସୁନାରେ ପୁଅ ବାହା କରଉଛି ବୋଲି, ତମେ ସେ ଟୋକାଟାକୁ ଚିଡେଇ ସବୁ ବିଗାଡ଼ୁଛ । ମୁଁ ଜାଣେ, ଭଲ କରି ଜାଣେ, ତୁହି ତା ମୁଣ୍ଡ ବିଗାଡ଼ିଲୁ । ମୁଁ କହିଲି- ଯେତେ କହିଲି-ପିଲାଟାକୁ ଏତେ ମୁହଁ ଦିଅ ନାହିଁ—ଏବେ

ଗେଲ ବୟସରେ ପିଲା ଚଗଲା ହେଉଛନ୍ତି—ଦଶ ବର୍ଷର ଛାଡ଼ପତ୍ର ବୋଲି ଗୁଣବନ୍ତ ନୀତିବାନ୍ତ କହିଲେ—ଶୁଣୁଛି କିଏ ମୋ କଥା । ନଷ୍ଟ, ଏଥର ସମାଜ ।

"କଣ, ହେଲା କ'ଣ ?"

"ହେଲା କ'ଣ—ହେଲା ହେନା ଆଉ ଗୁଡ଼—ନର୍ସ, ପାଉଁଶ, ଚୂଲି । ତମ ପୁଅ ମନା କରୁଛି—ବାହା ହବ ନାହିଁ ।"

"କି ?"

"କି ! ବାହାକୁ ମନା କରୁଛି, ତମ ପୁଅକୁ ପଚାର—ମୁଁ କଣ ବାହା ହୋଇଛି କି ମୋତେ ପଚାରୁଛୁ ?"

"ତମେ ବାହା ନ ହେଉଚ ତ ମୁଣ୍ଡ ବଥଉଛି କାହିଁ ?" କହି ଦୁଃଖିଆ ମା ବିରକ୍ତ ହୋଇ ହାଣ୍ଡିଶାଳକୁ ପଳେଇଲା ।

"ଦେଇଛି, ଶୁଣ—ଶୁଣ—ମୁଁ କହୁଥିଲି ସବୁ ପୁଅଙ୍କୁ ମୁଣ୍ଡି ଦେଇ ଦେଇ ମୁଣ୍ଡ ଖାଇଲା ତାର ଏ ମାଇକିନିଆ । ନାଃ, ମୁଁ ଆଉ ଏ ଘରେ ରହିବି ନାହିଁ—ସମସ୍ତେ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଛନ୍ତି । ଓହୋ ! ଶିବୋଶମ୍ଭୋ ଶିବୋଶମ୍ଭୋ—ନାରାୟଣ ହେ ନାରାୟଣ !

ଶେଷରେ ଦୁଃଖି କିନ୍ତୁ ବାହାହେଲା । ବାହାଘର ଆଠଦିନ ସେ ଆଉ ଟୁଁ କି ଚୁଁ ପାଟି ଫିଟେଇ ନାହିଁ, କହିବାକୁ ନିଶ୍ଚୁପ ଶାନ୍ତ !

ଦୁଃଖି ବାହା ହେଲା, ଦୁଃଖିର ମା ବାହୁଡ଼ିଲେ । ବାପ କଥାରେ ନୁହେଁ—ମାଉ ଲହୁ ଆଗରେ ଦୁଃଖିର ପଣ ଟଳିପଡ଼ିଲା ।

ସ୍କୁଲ କହନ୍ତି, ବାହାଘର—ବିବାହ । ଦୁଃଖିର ଆଖି ଆଗରେ ସମାଜର ଗୋଟାଏ ବୀଭତ୍ସ ରୂପ ଆସି ଠିଆ ହେଲା—ସେଇ ବାହା ବେଦୀର ଓଢ଼ଣୀତଳେ ଯଣନିଶ୍ୱାସୀ କନିଆ ଭଳି ସେ ସଁ ସଁ ହେଉଛନ୍ତି ପଡ଼—ସେ ସମାଜଟା ।

ତାହା ବେଦୀରେ ହାତଗଣ୍ଠି ପଡ଼ିଲା । ତା ହାତ ଉପରେ ଆଉ ତାହା ହାତରୁ ମାଟିର କଣ୍ଢେଇ ତାକୁ କିଏ ଦଉଛି—ଘର ସଜାଇବା ପାଇଁ । କିନ୍ତୁ କଣ୍ଢେଇ ଖେଳିବାକୁ ତାର ଆଉ ମନ ନାହିଁ । କଣ୍ଢେଇ ଖେଳର ବୟସ ତାର ଥାଉ ନ ଥାଉ, ତାର ମନ ତାର ଜ୍ଞାନ ତାକୁ ଛାଡ଼ି ନାହାନ୍ତି, ମାଟି ଘରର ଖେଳ ଖେଳେଇ ନେଉଛନ୍ତି—ଜବରଦସ୍ତି ।

ଏ ଖେଳଘର ନୁହେଁ । ଏ ଏକ ସତସତ ଘରର ଖେଳ ଖେଳିବା ପାଇଁ "ପଞ୍ଚକନ ମଞ୍ଚକଳ ପୁଟିଗଲା ଢାଙ୍କିଣି"ର ଆରମ୍ଭ ହେଉଛି । ପୁରୋହିତ ମନ୍ତ୍ର ପଢ଼ୁଛନ୍ତି ଯଥା ରାବଣସ୍ୟ ମନ୍ଦୋଦରୀ ! ଏ ସେଇ ସତ ସତକା ଘରର ଶୁଭଦୃଷ୍ଟି ? ତାହେଲେ, ଏତେ ବଡ଼ ସତ ଘରଟା ପାଇଁ ଏ ମିଛ ଆୟୋଜନ କାହିଁକି ?

ପାଣିଗ୍ରହଣ କଲା ସେ ଏକ ଅଜ୍ଞାତ ବାଳିକାର । ତାର ମନେହେଲା, ଗୋଟିଏ ଅମୂଲ୍ୟ ବାକ୍ସରେ ମଣିମୁକ୍ତା ଭରିଛି ବୋଲି କହି କପଟିଆ ତା' ହାତକୁ କିଏ କ'ଣ ବଢ଼େଇ ଦଉଛି । ସେ ବାକ୍ସରେ ପ୍ରକୃତରେ ରତ୍ନ ଅଛି କି ଗୋଡ଼ ମାଟି ଅଛି ସେ ଜାଣେ ନାହିଁ । କେବଳ ବିଶ୍ୱାସରେ ଗ୍ରହଣ କଲେ କଣ ଗୋଡ଼ ମାଟି ବି ରତ୍ନ ହୋଇଯିବ ? ସେ ମନକୁ ପଚାରେ ।

ଏଇ କୁଅଁଠା, ଏଇ ଝିଅଟି, ଜାଣେ ନାହିଁ ବାହାଘର କ'ଣ । ଜାଣେ ନାହିଁ ସ୍ୱାମୀ କାହାକୁ କହନ୍ତି । ଜାଣିବାର ବୟସ ନୁହେଁ ତାର—ଯାହାକୁ ସେ ବାହା ହଉଛି, ଯାହାକୁ ନେଇ ସାରା ଜୀବନ ସୁଖ ଦୁଃଖ ଭିତରେ ଦିନ କାଟିବ, ଯାହା ହାତରେ ହାତ ମିଳେଇ ସଂସାର ଭିତରେ ଘର କରୁ ପଥର ପଡ଼ିଲେ ବି ଧରିବ, ସେ କିପରି ଜୀବ । ମଣିଷ ନ ହୋଇ ବୃଷଭ ହୋଇଥିଲେ ବି ସେ ତାର ସ୍ୱାମୀ ! କି ଅନ୍ୟାୟ ! କି ଅତ୍ୟାଚାର !

ଏ ଅନ୍ୟାୟ—ଏ ଅତ୍ୟାଗ୍ରହ—ଏ ଜବରଦସ୍ତି ଭିତରେ ଯେତେବେଳେ ତା ହୃଦୟ ବିଦ୍ରୋହ କରି ଉଠନ୍ତା—ହଠାତ୍ ସ୍ନେହ, ଗୋଟାଏ ଦୟା ତାକୁ ଦ୍ରବୀଭୂତ କରିଦେଲା । ତାର ମନେହେଲା, ଗୋଟିଏ ସବଳତ ବୟସ୍କା ବାଳିକାକୁ ବିବାହ କରିବାର ଦାୟିତ୍ୱଠାରୁ ବର୍ତ୍ତମାନ ଯେପରି ତାର ଦାୟିତ୍ୱ ବହୁଗୁଣରେ ବଢ଼ିଯାଇଛି ।

ପୁରୋହିତ ମନ୍ତ୍ର ପଢ଼ୁଥିଲେ । ତା' ହାତ ଭିତରେ କୁସୁମକୋମଳ ଭଳି ଗୋଟିଏ ବାଳିକାର ହାତ । କେହି କାହାକୁ ଜାଣନ୍ତି ନାହିଁ—କେହି କାହାକୁ ଚିହ୍ନନ୍ତି ନାହିଁ । ଅଥଚ ଦୁହେଁ ବସିଛନ୍ତି ଏକ ନାବରେ—କେଉଁଠିକି କିଏ ଜାଣେ ।

ଅନ୍ୟାୟ ଅତ୍ୟାଗ୍ରହ ଭିତରେ କି ଆଶୀର୍ବାଦ ଥାଏ ? ଜଗତ ନିଷ୍ପୀଡନ ଭିତରେ ମଧ୍ୟ ମନୁଷ୍ୟର ମଙ୍ଗଳ ହୁଏତ ଲୁଚିଥାଏ । ଦୁଃଖୀଶ୍ୟାମର ତାହିଁକି ମନ ହେଲା—ହଠାତ୍, ଯେମିତି ଏକ ନିର୍ମମ ତାପସ୍‌ ବ୍ରତ ଭିତରେ—ସଂଯମର କଠୋରତା ଭିତରେ—କିଏ ଏକ ମଙ୍ଗଳମୟ ମମତାପୂର୍ଣ୍ଣ ବାହୁ ବିସ୍ତାର କରି ତାକୁ ଆଲିଙ୍ଗନ କରୁଛି । ଆଜି ଏଇ ଅନ୍ୟାୟର ଅଭିଶାପ ସବୁ ତା'ର ସ୍ପର୍ଶରେ ବର-ଦାନରେ ପରିଣତ ହୋଇଯାଉଛି ।

ତଥାପି ସେ ତାର ଅର୍ଥ ବୁଝିପାରୁ ନଥିଲା । ମନେ ହେଲା, ତାର ବିଦ୍ୟା, ତାର ଜ୍ଞାନଇ ତାକୁ ହୁଏତ ଅନ୍ଧ କରିଛି—ସେ ବୁଝି ପାରୁନାହିଁ । ସେ ଅନ୍ଧ—ସେ ଦୁର୍ବଳ । ଅସହାୟ, ଅରକ୍ଷ । ସେ ଅଉ ବାପ ଉପରେ ରାଗି ପାରିଲା ନାହିଁ ।

ରାଗ ହେଲା ନିଜ ଉପରେ । ନିଜର ସତ୍ୟ କହିବାର ଶକ୍ତି—ମାନିନେବାର କାପୁରୁଷତା ଉପରେ । ସେ ସ୍ପଷ୍ଟ ଦେଖି ପାରିଲା, ସଂଯମ, ନୀତି, ବିଧାନ ମନୁଷ୍ୟର ମଙ୍ଗଳପ୍ରଦ ହୋଇ

ପାରେ—କିନ୍ତୁ ସେଠା ନିଜେ ନିଜ ଉପରେ ନ୍ୟସ୍ତ ନଭର ଯଦ ବାହାରର କୃପାରେ ଶିକ୍ଷା କରିବାକୁ ପଡ଼େ, ସେତେବେଳେ ସେ ହୋଇଯାଏ ନିଗ୍ରହ ।

ବିଭ୍ରାଘର ପରେ ତାର ସ୍ୱଗ ଅନେକଟା ଶାନ୍ତ ହୋଇଗଲା । ମନେହେଲା ଯେଉଁଟା ଅକର୍ତ୍ତବ୍ୟ ଥିଲା ସେଇଟା କର୍ତ୍ତବ୍ୟ ହୋଇଯାଇଛି । କନ୍ୟାକୁ ଯେତେବେଳେ ବାପ ଘରକୁ ଫେରାଇ ନେଇଗଲେ ସେତେବେଳେ ସେ ଆପଣା ମନକୁ ଆପେ ପଚାରୁଥିଲା—'ଯତ୍ନରେ ରଖିବେ ତ ?' ସେ ନିଜେ ଏ ପ୍ରଶ୍ନରେ ଅସ୍ବସ୍ଥି ବୋଧ କଲା ।

ସେଇ ବର୍ଷ । ଦୁଖିର ମନଭିତରେ ତଥାପି ଗୋଟେ ଅସ୍ବସ୍ତି । ତାର ଏ ପରିବର୍ତ୍ତନଟା ଭଲ କି ମନ୍ଦ ସେ ବୁଝିପାରୁ ନଥାଏ । କିନ୍ତୁ ମନ ଭିତରେ ଥାଏ ଗୋଟାଏ ବିଦ୍ରୋହ ଭାବ । ସେ ବିଦ୍ରୋହ ମୂଳରେ ନିରପରାଧିନୀ ଶିଶୁ କନ୍ୟା ପ୍ରତି ଦ୍ୱେଷ ନଥାଏ, ଥାଏ—ଦୟା ।

ପଣାସଂକ୍ରାନ୍ତିରେ ସେ ଘରକୁ ଆସିଲା । ବାହାରେ ବସି ବର୍ଷା ହେଉଛି ଦେହର ଗରମକୁ ଥଣ୍ଡା କରିବା ପାଇଁ । ସେଇ ସମୟରେ ଜଣେ ଶ୍ୱେତ ବାଳରେ ଗଦଡ଼ ମୁଣ୍ଡି ପକେଇ—ମୁଣ୍ଡରେ ଓଦା ଗାମୁଛା ଗଣ୍ଡେ—ସଁ ସଁ ହୋଇ ଆସି ପହଞ୍ଚିଲା । ସେଇଟା ।

ତାପରେ ଦୁଖିଦାଶ ସବୁ ଭୋଜ୍ ଦନ ଗଲା, କେତେବେଳେ ଗଲା କେହି ଜାଣନ୍ତି ନାହିଁ ।

ଲୁଣମେଘ ଗୋଳ ଗୁଲୁଥାଏ । ଲୁଣା ପାଉଥାଏ ସମୁଦ୍ରକୂଳ ଗାଁରେ ଭାରି ଧସ୍ତା ଧସ୍ତି ଚାଲିଛି, ଲୋକେ ଲୁଣ ମାରୁଛନ୍ତି—ସେଥି

ଦେଖାଇଲେ । ପୁଲିସ ଲଟିଏ ମାଲୁଚନ୍ଦ୍ର—ଆଇଲେ । ଶହ ଶହ ସତ୍ୟାଗ୍ରହୀ ଗାନ୍ଧିବାଲା, ଗାଁ ବାଲା ଜେଲ୍ ଯାଉଛନ୍ତି ।

ଅଗଣି ଦାଶଙ୍କୁ ଜଣେ ଧନେ ଆସି ଖବର ଦେଲା—ଦୁଃଖିଦାଶଙ୍କୁ ପୁଲିସ ଧରି ନେଇଗଲା—ଗାନ୍ଧି ଗୋଳରେ । ଅଗଣି ଦାଶ ଉଁ ଚୁଁ କିଛି କହୁନାହାନ୍ତି । ସମସ୍ତେ ଭାବିଥିଲେ ଅଗଣି ଦାଶ ପଟ୍ଟିବାଣ ହୋଇଯିବ । କିନ୍ତୁ ସେ ଗୁମ ହୋଇ ବସିଛନ୍ତି, କିଛି କହୁନାହାନ୍ତି, କିଛି ଧରି ନାହିଁ ତୁଣ୍ଡରେ । ବ୍ରାହ୍ମଣୀ, ଦୁଃଖୀର ମା କାନ୍ଦିଲା—ମୁଣ୍ଡ ବାଡ଼େଇ ଦେଲା—ଅଗଣି ଦାଶ ଆଖିରେ ଲୁହର ବାମ୍ଫ ବି ଦେଖା ଦେଇ ନାହିଁ । କେବଳ ଦେଖାଗଲା, ଅଗୁଠି ବୁଢ଼ା ଭାରି ଜୋରରେ ଆପଣା ନାମ ଜପେ କରି ଯାଉଛନ୍ତି । ପଇତା ସଂଗାଣ୍ଠ ପାକଲେଇବା ପାଇଁ ତଳି ଘୁରେଇ ପକେଇ ଯାଉଛନ୍ତି ଖୁବ ଜୋରରେ ।

ବାପ ପୁଅଙ୍କର ଫାଙ୍କ ଫାଙ୍କ ବାହାରକୁ ଜଣାଗଲା ସେଇଦିନ, ଯେଉଁ ଦିନ ଲୁଣମରା ଆଇନକୁ ଉଠେଇ ଦୁଃଖିଦାଶ ଜେଲ୍ରୁ ଫେରିଲା ଠିକ ବର୍ଷେ ପରେ । ସାରା ଗାଁଟା ଯେତେବେଳେ ତାକୁ ସାଙ୍ଗେଟି ଆଣିବାକୁ ଯାଇଥିଲେ ସେତେବେଳେ ଅଗଣି ଦାଶର ଦୁଆର ହୋଇଗଲା ବନ୍ଦ । ଦୁଃଖିଦାଶଙ୍କୁ ଅଗଣିଦାଶ କେଉଁଣସି ମତେ ମନେଇ ପାରିଲେ ନାହିଁ—ପ୍ରାୟଶ୍ଚିତ୍ତ କରିବାକୁ । କଥିଲଖାନାରେ ଜାତିପତି ଠିକ ନାହିଁ—ଖାଉ ବାହ୍ମଣ ଠିକ ନାହିଁ । ଜେଲଖାନାରୁ ଫେରି ପ୍ରାୟଶ୍ଚିତ୍ତ ନକଲେ ଅଗଣିଦାଶ ଦୁଃଖିକୁ ଘରେ ପୂରେଇ ଦେବ ନାହିଁ—ପୁଅ ହେଲା କଣ ହେଉ ବି !

ପୁଅ କିନ୍ତୁ ନ ଶୁଣେ । କି, ସେ କି ପାପ କରିଛି କି ପ୍ରାୟଶ୍ଚିତ୍ତ କରିବ ? ଜେଲ୍ ଯିବାଟା ଯଦି ପାପ ହୋଇଥାଏ, ତେବେ ସେ ପାପ ତ ସବୁଭାଇ କରିଛନ୍ତି ତାକୁ ଧନ୍ୟନେଇ । ସେ ତ ନିଜେ ନିଜେ ଜେଲ୍ ଯାଇନାହିଁ ଇଜ୍ଜତର, ଗୌରବର କି ଅନ୍ୟାୟ କଥା ।

ଭଦ୍ରଲୋକମାନେ ଗୋଟେ ମଝିମଝିଆ ଉପାୟ କହିଲେ—ପ୍ରାୟଶ୍ଚିତ୍ତ ନହେଉ—ଖାଲି ଗୋଟାଏ ଶୁଦ୍ଧିପାଇଁ ଗଙ୍ଗାଜଳ ଟିକଏ ପିଇଁଦେଇ ପଇତାଟା ବଦଳେଇ ପକାଉ ।

ଦୁଖିଆ ମାନିଲା ନାହିଁ । ପଳେଇଲା ମାମୁଘରକୁ । ମା ସେମିତି କାନ୍ଦୁଥାଏ । ଅଗଣି ଦାଶ ଅଖିରେ ତଥାପି ଲୁହ ନାହିଁ । ଲୋକେ କହିଲେ, ଦୁଖିଦାଶ ବଡ଼ ଗୁଆଁର ଟୋକା । କିଏ କହିଲା, ସରକାରଙ୍କୁ ଯିଏ ନ ମାନିଲା, ସେ ଅଉ ବାପକୁ ମାନୁଚି ଭଲେ ।

ଦୁଖିଦାଶ ଘର ଛାଡ଼ିଲା, କିନ୍ତୁ ଗାଁ ଛାଡ଼ିଲା ନାହିଁ । ମାମୁଘରେ ରହି କଂଗ୍ରେସ କାମ କରୁଥାଏ । ୧୯୩୩ ମସିହାରେ ଦୁଖିଦାଶ ପୁଣି ଥରେ ଜେଲରୁ ଫେରିବାବେଳକୁ ଅଗଣିଦାଶ ଜଗତି ଛାଡ଼ିଲେଣି । ଶଳା କଥାରେ ସଞ୍ଜହେଇ ସେଇ ଗାଁରେ ଦୁଖିଦାଶଙ୍କୁ ଗଣ୍ଡେ ଦୋକାନ କରିଦେଲା । କିନ୍ତୁ ଘରକୁ ଆଉ ନେଲା ନାହିଁ । ତାର କଦ ରହୁବ । ଦୁଖିଦାଶର ବି ଦୁଃଖ ନାହିଁ । ନିଜ ସ୍ୱାଧୀନରେ ଥାଏ । ମା ଚୋରାପଣା ଦୁଧ ଦହି ପଠେଇ ଦଉଥାଏ । ଘରକୁ ଯିନା ସେ ନଯାଏ—ଘର କିନ୍ତୁ ଉଠି ଅସେ ତା ପାଖକୁ ।

ଗାଁଯାକ ଲୋକେ ସେଇ ଦୁଖିଦାଶଙ୍କୁ ମାନନ୍ତି । ସମସ୍ତଙ୍କ ହାନିଲାଭ, ଭଲମନ୍ଦ ସେ ବୁଝେ । କାହାରି ଦେହଟା ବେଶି ହେଲେ ନିଜେଯାଇ ଦ'କୋଶ ବାଟରୁ ଡାକ୍ତର ଔଷଧ ଆଣିଦିଏ । କଲେରା ବସନ୍ତରେ ଦୁଖିଦାଶ ଖାଇବା ଶୋଇବାକୁ ଫୁରୁସତ ପାଏ ନାହିଁ । ଦୁଖିଦାଶ ଯେମିତି ଗାଁର ଅଖି । ଲୋକେ ଏକଥା ମାନନ୍ତି ।

ସବୁ କଥାରେ ସମସ୍ତଙ୍କର ଦୁଖି ଦାଶ । ଯଉଁଠି ଦେଖିବ ସେଠି ଦୁଖି ଦାଶ । ଗାଁ ଜମାସା ନିଶ'ପଞ୍ଚର ଦୁଖି ଦାଶ । ଦୁଖିଦାଶ ନଥାଏ କୋଉଠି ?

କେବଳ ସେଇ ପଟ୍ଟନାୟକପଡ଼ାକୁ ସେ ଯାଏ ନାହିଁ । ମାନ୍ଗୀ ଭିଡ଼୍ କରିବା ଭୁଲେଇଥାନ୍ତି, ଦୁଃଖିଦାସକୁ ସୁବିଧା ପାଇଲେ ଅପମାନ ଦେବାକୁ ଛାଡ଼ନ୍ତି ନାହିଁ ସେମାନେ ।

"କହେ, ତମ ଗାନ୍ଧି କ'ଣ କରୁଛି ?" ଏଇଟା ପ୍ରଥମ ପ୍ରଶ୍ନ ସେ ପଡ଼ାଯାକରେ । ଏ ଦୁଃଖିଦାସ ବାପ ଜଗଣି ଦାସ ନା ? ଜଗଣି ଦାସଙ୍କୁ ଭୟ କରୁଥିଲା କେ ?—ଏବେ ଦୁଃଖିଦାସ ସମଲଭ-ଭାଉ । ପଟ୍ଟନାୟକ ବଂଶ, ରଜା ବଂଶକୁ ଅଜ ଭୟ ପଶୁରେ । ବାଟରେ ଗୁଳିଗଲେ ଗର୍ଭିଣୀ ଗାଈ ଯାହାଙ୍କୁ ସାହା ଦଉଥିଲା, ସେଇ ପଟ୍ଟନାୟକଙ୍କୁ ମୁଣ୍ଡ ନଇଁ ଔଲଟିଟାଏ ହବାକୁ ବି ଭାବନାର ସଭ ବନ୍ତୁ ନାହିଁ ।

ଏଇ ଗାନ୍ଧି—ଗାନ୍ଧି । ଏ ଗୋଟାଏ ଟୋଳ ଦେଶରେ ଲଗେଇ ଦେଲା । ଗାଁ ପୁରୋହିତ ଦିନେ ଦିନେ ଭାଗବତରୁ ଉଦ୍ଧାର କରି ମଦନ ପଟ୍ଟନାୟକଙ୍କୁ ଘୋର କଳିର ଲକ୍ଷଣ ସବୁ ଶୁଣେଇ ଦିଏ । ମଦନ ପଟ୍ଟନାୟକ ଗୁଡ଼ାକୁ ଟାଣୁ ଟାଣୁ ଶୁଣନ୍ତି—

ଅସିବେ ମଇଲ ମୋଗଲ । ପୃଥ୍ୱୀ କି ହୋଇବେ ସେ ଖଳ ।
ସର୍ବେ ହୋଇବେ ଏକାକାର । ନ ଥିବ ବେଦର ବିଚାର ।

'ହେଲ ମୋଗଲ ଅଉ କିଏ କି ! ଏଇ ଗାନ୍ଧି ଦଳ । ମୋହନ ଗାନ୍ଧି—ମଇଲା ମୋଗଲ । ସେଇ ତ ସବୁ ଏକାକାର କଲା ।

ବ୍ରାହ୍ମଣେ ସଂସାରରେ ହୀନ । ଶୂଦ୍ର ପ୍ରାୟେକ ଆଚରଣ ।

ପଟ୍ଟନାୟକ ପଡ଼ାର ଯେତେ ବସିଥିବେ ସମସ୍ତେ କହୁବେ—ହେଇତ ଦେଖ—ଶୁଣ—କ'ଣ ଲେଖା ହେଇଚ । ଶାସ୍ତ୍ର କଣ ମିଥ୍ୟା । ପୁଣି ପଢ଼ା ଗୁଳିବ :—

ଛତି ସେ ଶୂଦ୍ର ପ୍ରାୟେ ହୋଇ । ପ୍ରଜା ପୀଡ଼ିବେ ରାଜା ହୋଇ ।
ସେ ରଜା ଭୂପାହିଁ କହିବେ । ଅବିଦ୍ୟା ଅଧର୍ମେ ରତିବେ ॥

‘ଏସବୁ ହାକିମ ହୁକୁମା ଦଫଟି ସାହେବଙ୍କ କଥା । ଇଂରେଜୀ ସରକାର ହେଲେଗଲା । ଜମିଦାର ହେଲେ ପୁଲିସ ହାକିମ । ସେମାନେ ଇଂରେଜ ଯେ ଖାଉଥିବା କହୁ ପ୍ରଜା ପୀଡ଼ିବେ ।’ ଜଣେ ବସି ଟୀକା କରେ—ସମସ୍ତେ ମୁଣ୍ଡ ହଲାନ୍ତି । ମଦନବାବୁଙ୍କ ଗୁମାସ୍ତାଙ୍କୁ ଠାଣେ ସରେ ।

ପ୍ରଜାଏ ପଟନ୍ୟା ଅନୈକ୍ୟ ହୋଇ । ଅପଣା ସ୍ୱର୍ଣ୍ଣ ନାଶଯାଇ ॥
ଏକ ଅନେକେ ଗର୍ବ କରି । ମରିବେ ହଂସା ଭାବଧରି ॥

“ଏସବୁ ହକ୍ କାହିଁ କ’ଣ ! ଗୋଟି ଗୋଟିକି ଫଳୁଛି ।” ଓଛନାହିକ କହନ୍ତି—

ରଜାଏ ପ୍ରଜଙ୍କୁ ନାଶିବେ । ଗୁହାରି କଲେ ନ ଶୁଣିବେ ॥
ଯେଉଁ ଜନର ଧନ ଥିବ । ସଂସାରେ ସେ ବଡ଼ ହୋଇବ ॥

“ଏ ହେଲା ଭଗବାନ ମିଶ୍ରଙ୍କୁ ଦାଣ୍ଡିକା, ବୁଝିଲ ନା ?” ସମସ୍ତେ ହଁ କରନ୍ତି ।

ଯେ ଜନ ନିର୍ଧନ ହୋଇବ । ତାକୁ ସହାୟ କେ ନୋହିବ ॥
ସ୍ତିରିଏ ସ୍ତିରିଙ୍କୁ ରମିବେ । ପୁରୁଷ ପୁରୁଷେ ଭଜିବେ ॥

“ହରେ କୃଷ୍ଣ, ହରେ କୃଷ୍ଣ ।” ସମସ୍ତେ କାନରେ ହାତ-ଦେଇ ବସିଯାନ୍ତି ।

ବ୍ରହ୍ମତ୍ୱ କିଞ୍ଚିତପ୍ରକାରେ । ରହିବ ଯଜ୍ଞୋପବୀତରେ ॥

“ଦୁଃଖି ଦାଶର ତା ବ ନାହିଁ ।” ଜଣେ କିଏ କହେ ଆଉଜଣେ ପ୍ରତିବାଦ କରି କହେ—“ନା ନା ପଇତା ରଖିଛି ସେ ।”

ପଣ୍ଡିତ ଯେତୁ ବୋଲାଇବେ । ଚଞ୍ଚଳ ବଚନ କହିବେ ॥
ବିପ୍ର ହୋଇବେ ଅବସ୍ଥିର । ଜାତିକୁଳ ଦୋଷ ନ ଧରି ॥
କରେ ପାନିଅ ଘେନିଥିବେ । ବେଶ କୁଣ୍ଡାଇ ସୁଖପାଇବେ ॥

ସ୍ନାନ କଲ୍ ବୋଲ୍ ବୋଲିବେ । କୂଅ ଗଡ଼ଆ ପାଣେ ପିଇବ ॥
ତାହାଙ୍କୁ ତୀର୍ଥ ବୋଲ୍ କହ । ସ୍ନାନ କରିବେ ତହିଁ ଯାଇ ॥
କେବଳ କେଶର ଧାରଣ । ହୋଇବ ଲବଣ୍ୟ କାରଣ ॥

"ସବୁ ହୋଇଯାଉଛି—ସବୁ ହେଉଅଛି—ଅକ୍ଷରେ ଅକ୍ଷରେ ଏତ ।"

ଅପଣା ପେଟକୁ ପୋଷିବା । ବଡ଼ ପ୍ରୟୋଜନ ହୋଇବ ॥
କାର୍ଯ୍ୟ କଲର ପ୍ରାପ୍ୟ ମଣି । ସେ ଲୋକ ହୋଇବ ଅଗ୍ରଣୀ ॥

"କଳିକାଳ ଏ ଦୁଷି ଦଶ ଆଉ ତାଙ୍କ କଂଗ୍ରେସ ଦଳଆ—ନା କ'ଣ କହୁଛନ୍ତି ?" ମଦନ ପଟ୍ଟନାୟକ ପଚାରନ୍ତି । ଆଉ ସମସ୍ତେ ହିଁ ଭରନ୍ତି ।

ଗାନ୍ଧି ସବୁ ସାଇଲା । ଜାତି କୁଳ ଧର୍ମ ସବୁ ଶେଷ କଲା । ଗାଁ ଜଉଡ଼ପେ ଅପି କଟେ ଏଥର ନବଗ୍ରହ କୂଟ ଯେ ହଦ, ସେଥିରେ ପୃଥିବୀରେ ଗୋଟାଏ ଖଣ୍ଡପ୍ରଳୟ ହବ । କଉଁ ଖଣ୍ଡଟା ପ୍ରଳୟ ହବ, କହି ହଉ ନାହିଁ । ବହୁଲୋକ ଖପୁ ଯିବେ—ତାହାର ବାହାର ମଝରେ କଳିକାଳ ଶେଷ ହେବ—ସତ୍ୟ ଆରମ୍ଭ ହବ । କଳି ଶେଷକୁ କେବଳ ସତ ଲୋକେ ଭଲ ହୋଇ ରହିବେ । ଯେଉଁମାନେ ଦାନ ଧର୍ମ କରିବେ—ସେମାନେ ବଞ୍ଚିବେ ।

ମଦନ ପଟ୍ଟନାୟକ ବାହ୍ମଣ ଜଉଡ଼ପଙ୍କ କଥାରେ ଗୃହଲ ସେବରେ, ଅଣିଟିଏ, ବାଇଗଣ ମୂଗ ମାଣେ ଆଣି ଯାହାକୁ ଯାହା ବାଣ୍ଟି ଦେଇ ସେଦିନଠାରୁ ଦାନ ଧର୍ମ ବଢ଼ାଇ ଦିଅନ୍ତି—କଳି ଶେଷରେ ବଞ୍ଚି ରହିବାର ଆଶାରେ ।

ଜୋଷ୍ଟି ଗଣନା କଥା ନାହାଁଛ ଦେଶେଇ ଦେଇଯାଏ—ବଞ୍ଚିବ—ବଞ୍ଚିବ—ବଞ୍ଚିବାକୁ ହବ । ମହାଦେବ ଉପରେ ପାଣି ଦିଆଯାଉଛି, ସାଧା ଗୋବନ୍ଦ ଚରଣରେ ତୁଳସୀ ଚଢ଼ା ଯାଉଛି—

ନ ବଞ୍ଚି ଯିବ କୁଆଡ଼େ । ସାପଗଡ଼ ଶାନ୍ତ ହୋଇଯିବ । ତେଣିକି ବୃହସ୍ପତି ମହାଦଶା ପଡ଼ିଲାପରେ—ଆପଣଙ୍କୁ ତ ମୂଲକର ରଜା କରିଦେବ ।

ଏକୁଟିଆ ମଦନ ପଟ୍ଟନାୟକ ନୁହନ୍ତି । ଏ ପଟ୍ଟନାୟକ ପରିବାର ଯେତେ ମଣିଷ ସମସ୍ତେ ବଞ୍ଚିବେ । ପଟ୍ଟନାୟକ ପରିବାର ଯେତେ କାନ୍ଥକା ସେସବୁ ଗୋଟି ଗୋଟି ହୋଇ ତେଜ୍ ବସିବେ । କୋଉଠି କେମିତି ଗୋଟେ ଅଧେ ନୂଆ କୋଠା ଝଟକୁଛି । ସେ କୋଠା ଭିତରୁ ପଟ୍ଟନାୟକ ପରିବାର ଆତ୍ମା ଗର୍ଜନ କରି କ'ଣ ଯେମିତି କହେ । କହେ—ବଞ୍ଚିଛୁ—ବଞ୍ଚିବୁ । ପଟ୍ଟନାୟକ ବଂଶର କୀର୍ତ୍ତି ପୂର୍ବ ପୁରୁଷଙ୍କ ପୁଣ୍ୟ ବଳ ଏ ସାହି ବସେଇଥିଲା କାହାଣି, ସେ ଅମର ହୋଇ ରହିଛି—ଅଛି ରହିବ ।

ମରହଟ୍ଟା ଆମିଲ ଅମଳରୁ ମୁକ୍ତାରଗିରି କରି ଆସିଛନ୍ତି ଏଇ ପଟ୍ଟନାୟକ ବଂଶ । କମ୍ପାନୀ ଅମଳରେ କଲିକତା ବଙ୍ଗାଳୀ ଜମିଦାରଙ୍କ ବିଶ୍ୱସ୍ତ ଗୁମାସ୍ତା ରୂପେ ସବୁ ଜମିଦାରୀ ନିଲାମରେ ଆତ୍ମସାତ୍ କରି ଆପଣା ସପ୍ତ ପୁରୁଷ ଉଦ୍ଧାର କରିଚନ୍ତି ଏଇ ପଟ୍ଟନାୟକ ବଂଶ । ଇଂରେଜୀ ରାଜା ଅମଳରେ ଇଂରେଜୀ ପାଠ ପଢ଼ି ମୁନସି, ଓକିଲ ହାକିମ ଦପଟି ହୋଇ, ଖାଲି ପଟ୍ଟନାୟକ ବଂଶକୁ ନୁହେଁ, ଖାଲି ସେ ଗାଁ ଗୋଟାକୁ ନୁହେଁ, ସାରା ଦେଶକୁ ଉଦ୍ଧାର କରିଛି ଏଇ ପଟ୍ଟନାୟକ ବଂଶ । ଏ ବଂଶର ମରଣ ନାହିଁ—ନିପାତ ନାହିଁ—ପର ଅରଜନକୁ ନ୍ୟାଯ୍ୟ ନାଆଁରେ ହଜମ କରିବାର ଶକ୍ତି ଅଛି ଯା'ର, ସେ କଣ ମରିପାରେ ?

ଗାନ୍ଧି ମାହାତ୍ମା ଓଡ଼ିଶାରେ ଯେତେବେଳେ ପାଣ କଣ୍ଡରା ଗୁଡ଼ାଙ୍କୁ ହରିଜନ ହରିଜନ କହି ମୁଣ୍ଡରେ ବସାଇବାକୁ କହି ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଗୋଟାଏ ଦାଣ୍ଡି ଚାଲି ଚାଲି ଗଲେ,

ସେତେବେଳେ ଦୁଖି ଦାସର କି ଚଞ୍ଚଳପଣ ଦେଖିବ ! ସେ ତ ଆଉ ମଣିଷ ମାନିଲ ନାହିଁ । ସତେକି ସେଇ ମହାତ୍ମା ଗାନ୍ଧୀ । ପୁଣ୍ୟାତ୍ମାମାନଙ୍କର ପାପୀମାନଙ୍କୁ ଉଦ୍ଧାର କରିବାର କ୍ଷମତା ଅଛି, ତା ବୋଲି ତମେ ଆମେ ସେଇଆ କରିବା ନା । ଡଗୁର ନାହିଁ, ଜଗୁର ନାହିଁ, ସବୁବେଳେ ସେଇ ପାଣ ପାଲୁଣୀଙ୍କ ସାଙ୍ଗରେ ମିଳାମିଶା—ହେଁ—ହେଁ—ଫେଁ—ଫେଁ । ଗ୍ରେଟ କାଡଗୁଡ଼ାକ ମୁହଁ ପାଇ ଯାଇଛନ୍ତି । 'ବେ ଖଡା' ବୋଲି ଅଗେ ହାକି 'ଦେଲେ ଲଗାଦେ ଝାଡ଼ା ପଡ଼ ଯାଉଥିଲା ଯହିଁମାନଙ୍କର, ସେମାନେ ଅଙ୍କ ମୁହେଁ ମୁହେଁ ଜବାବ ଦେବେ ।

ଦୁଖି ଦାସ କରିଛି ଏତିକି । ଗାନ୍ଧି ଜଣ ଅସି କହୁ ଯାଉ-ଛନ୍ତି ଏଇତା ସବୁ କରିବାକୁ । ସେ ଗାଲ ଛୁଇଁବାକୁ ଟିକିଏ କହୁ-ଥିଲେ ନା । ସେ ମହାତ୍ମା ଲୋକ—ସେ କାହିଁକି ଏତେ ଅନ୍ୟାୟ କରନ୍ତେ ! କଲେ ବି ମହାତ୍ମା ସେ ତାଙ୍କୁ ପାର ଅଛି । ଜଧ ସାଙ୍ଗରେ ଅମେ ବଗଡ଼ ! ଏ ଟୋକା ଗୁଡ଼ାଙ୍କ ଦାନ୍ତରେ ଘର ନାଚିଛି—ଘର, କାନ୍ଦା ଦାନ୍ତରେ ଲଗିଲା ଘର—ବେଶି ଦିନ ନୁହେଁ ।

ଦୁଖି ଦାସ ସଞ୍ଜ ହେଲେ ଉଠର ଜାଳି ଏକା କଟେଇରେ ବସି ପାଣ ଗୁଡ଼ାଙ୍କୁ ପାଠ ପଢ଼ାଏ । ଦୁଖି ଦାସ ପାଣ ଘରେ ଠାକୁର ପୂଜା କରି ଭୋଗ ପାଏ—ଏକା ପଙ୍ଗତରେ ବସି ଖାଏ ବୋଲି କି କେହୁ କେହି କହୁଛନ୍ତି । ଅଦୁବାରିକା ହଜଟି ସେ ଟୋକା ଖଣ୍ଡକ—ଝଣ୍ଟୁଲକଟି ବୟସ ମଦରେ ।

ତାକୁ ସାହସ ଦଉଚି ସେଇ ସହସ ପଟ୍ଟନାୟକ । ସହରରେ ଓକିଲାତି କରିବ । ଅଜ ଏଠି ଅସି ହବ ନେତା । ହରିଜନ ସେବକ ସଙ୍ଘ, ତାର ସୁକ୍ରୀ ସେକ୍ରେଟାରୀ । ଖଦଡ଼ ଗଣ୍ଡେ ପିନ୍ଧିଦେଲେ ହେଲା । ଘର ଭିତରେ ସବୁ ମିଳି । ବାହାରକୁ ଦେଖାଇବା ପାଇଁ

ହାଟ ଦିନିଆ ଶିବାରେ ଝାଗିଲା ପଦ ହଲେ ଦ'ହଲ ଗଦାଡ଼ ଥାଏ । ସଭା ସମିତିରେ ଦ'ପଦ ବକ୍ତୃତା ଦେଇଦେଲେ ପାଠ ଶେଷ । ସେଥିରେ ସେ ନେତା । ସ୍ୱୟଂ ପଞ୍ଚାନନ୍ଦ ଏ ଦେଶରେ ଜଣେ ବଡ ନେତା । ମେହେମ୍ବର ଜିଲାବୋର୍ଡ—ପୁଣି ଇନାକେତେ ଚେଆରମ୍ୟାନ ଓ ଭାଇସଚେଆରମ୍ୟାନ ଲୋକେଲ ବୋର୍ଡର ହୋଇଥିଲେ । ମାଷ୍ଟର ଗୁଡ଼ାକ ତାଙ୍କ ଅଧୀନ ବୋଲି ଧନୀ ମାଷ୍ଟର ତାର ଅନୁଗତ । ତାହାର ସାହାଯ୍ୟରେ ଧନୀ ମାଷ୍ଟରଙ୍କୁ ଦିନ ଦୁଇ ଦାଣ ନାଚୁଛି । ଦୁଇ ହଉଚି ସବୁ ନାଟର ଗୋବର୍ଦ୍ଧନ । ସେଇ ହଉଛି ମୂଳ ।

ପଞ୍ଚାନନ୍ଦଙ୍କ ପଡ଼ାର ସବୁ ମୁଖିଆଙ୍କ ମଦନ ପଞ୍ଚାନନ୍ଦଙ୍କ ଚଉପାଢ଼ୀରେ ବସି ସାର କଲେ—ଦୁଖିଆ ଦୋକାନରୁ ଆଉ କେହି ସଉଦା ଆଣିବେ ନାହିଁ । ଯିଏ ଆଣିବ ସେ ଜାତିରେ ପତିତ ହବ ।

ଏ ବାସନ୍ଦ ଜଲ୍‌ଦି ଗାଁ ସାରା ବ୍ୟାପିଗଲା । ଗାଁର ଅଧିକାଂଶ ଲୋକେ ଦୁଖିଆ ଦୋକାନରୁ କିଣିବା ବନ୍ଦ କରିଦେଲେ । ଅଗଣି ଦାଣ ଗଗରେ ଲଥି । ପଇସାଟିକ ସବୁ ବୁଡ଼ିଗଲା ଏ ଦୁଖିଆ । ଘର ଦୁଆର ଯାହା ଦଣ୍ଡେ ଅଛି ତା ଚଳି ନ ଉଠେଇଲା ଯାଏ ସ୍ତ୍ରୀର ଶାନ୍ତି ନାହିଁ । ଅଲକ୍ଷଣା କି ବେଳରେ ଜନମ ହୋଇଥିଲା ଏ ଘରେ ?

ଦୁଖିଆ କିନ୍ତୁ ଡରିଲା ନାହିଁ । ପେଟକଥା ବଡ଼ ହେଲା ଯେଉଁଠିକି । କେହି ନ ନେଲେ ପାଣ କଣ୍ଡ୍ରା ତ ନେବେ ! କ୍ରମେ କ୍ରମେ ଦୁଖିଆ ଦୋକାନଟା ପାଣ କଣ୍ଡ୍ରାଙ୍କ ଦୋକାନ ହୋଇଗଲା ।

ଏମିତି ଥାଏ ଥାଏ, ଦିନେ ସଞ୍ଜବେଳେ ଅନ୍ଧାରିଆ ଅନ୍ଧାରିଆ ରେ ମଦନପଟ୍ଟନାୟକଙ୍କ ଘର ଦୁଆର ଆଗେ ପହଞ୍ଚିଲା । "କି, କୁଆଡ଼େ ?" ଦୁଖିଆ ପଚାରିଲା ।

"ଖାଲିଟା, ବୁଲି ବୁଲି ଚାଲି ଆସିଲି ।"

"କିଛି ଗୋଟାଏ ସନ୍ଧାନରେ ନନା, ବୁଝି ପାରୁନା ?" ଭବାପାଣ ବସିଥିଲା, କହିଦେଲା ।

"ନାଇଁ ନାଇଁ ସେଣ ଅଛି ଦୁଖିଆକୁ—ସନ୍ଧାନସନ୍ଧାନ କିଛି ନାହିଁ ।"

ଭବା ଚାଲିଗଲା । ପାଣ ସାହିର ଆଉ ଜଣେ ଦି'ଜଣ ବି ଆସି ଯୁଟିଗଲେ । ଦୁଖିଆ ପଚାରିଲା—"କିରେ, ତମ ବାବୁଘର ଆଜି ଗୋଟେ ଦୋକାନ କରୁଥିଲେ ପରା !"

"ଦୋକାନ ? ଦୋକାନ କିଏ ବାବୁଘର କିଏ ?"

"ହଁ ରେ, ତୁ ଜାଣି ନାହୁଁ । ଭୃଗୁ ମହାନ୍ତି ଟଙ୍କା ଦେବ—ଦୋକାନ ହେବ ।"

"ଯା-ଯା ତକା—କେତେ ଭୃଗୁ ମହାନ୍ତି ଦେଖିଛି । ତାର ପଟ୍ଟନାୟକ ଘରର ଅନ୍ନ ଚୋବେଇ ଜୀବନ ଉପରେ କେତେ ହେବଣି । କିଛି ଟଙ୍କା କରଜ ଦେଇ—ଏଁ ?—ବୁଝିଲୁଟିକି ନନା ? କାରଣ ବୁଢ଼ାକୁ ଯଦି ଦୋକାନ କରନ୍ତେ—ବଣିଜ କରନ୍ତେ—ତେବେ ଚେଲି ବି କଳେଇ ମନନ୍ତେ । ଦୋକାନ ତ କରିବେ—ସ୍ୱାମୀ ପାଆନ୍ତି ପଇସା ଯିବ କୁଆଡ଼େ ? ଘୁଢ଼ ପାରିବେ ତାକୁ ? ଏ ଖାଲି ମେଁ ମେଁ ହେଉ ଜାଣନ୍ତି—କିଛି ଭାବରେ ବୁଝନ୍ତି । ତା ନହେଲେ ଥିଲେ—ଏ ଜାନୁଡ଼ା ସବୁ ମଲ୍ଲଙ୍କ ଭାଙ୍ଗ ପରି ଏମିତି ଠିଆ ହେଇ-ଥାଆନ୍ତା ପଟ୍ଟନାୟକ ଦୁଆରେ ?

"ଆଉ କ'ଣ ଚଣା ଭୂଷା ପାଇଁବେ ଦୋକାନ କର ?" ଦୁଖିଆ ଠଟ୍ଟା କରି ଅନନ୍ତ ହସି ହସି କହିଲା।

"ଚଣା ଯଦି ପାଇବେ, ତେବେ ଏ କରଙ୍କେ ଗୋଲାମ ହବ କିଏ ?"

ଦୁଖିଆ ତା ମୁହଁକୁ ଅନେଇଲା। ଟିକିଏ ଆଶ୍ଚର୍ଯ୍ୟ ହେଲା। ଏ ଲୋକଟାର ସତ କହିବାର ସାହସ ଅଛି ତ।

କଷ୍ଟେଇଛା ହେଇପିବାର ଦେଖି ସେ କହିଲା—"ହେ ଦୁଖିଅଣ୍ଣା ଗୋଟେ କାମ ଦବ ?" ସେ ପୁସ ପୁସ କହିଲା।

ଦୁଖିଆ ମନେ ମନେ ହସିଲା। ନାଁ, ଏ ଲୋକର ସାହସ ନାହିଁ। ସାହସ ଆସିବ କୋଉଠୁ ? ପର ଅଧୀନରେ ଗୃହସ୍ଥ କଲା ଲୋକର ପୁଣି ସାହସ ?

"କ'ଣ ଶୁଣେ !"

"ଦର ନା କହିଲ ଅଗ !"

"ଥିଲେ ତ !"

"ହଁ, ନଥାନ୍ତା କାହିଁକି। ଅସଲ ଦରା କଥା। ଦେବ ନା ମୋତେ ଗୋଟେ ଶଜ ?"

"ନ ବିକିବ ଭାଇ ? ଦୋକାନ କରିଛ ତ ବିକିବା ପାଇଁ।"

"ତମେ ଆମକୁ ସବୁ ବିକିବଟିକି ?"

ଦୁଖିଆ ଆଶ୍ଚର୍ଯ୍ୟ ହେଲା। ତାଙ୍କୁ ତାର ବିକିବା ମନା, ନା—ତାଠୁଁ ତାଙ୍କର କିଣିବା ମନା ? କୋଉଁଆଡୁ ବାନ୍ଧ ହୋଇଛି ?—"ବିକିବ ନାହିଁ କାହିଁକି ମ—ଯାଣି କର୍ତ୍ତାଙ୍କୁ ବିତ କରୁଛୁ।" କହି ସେ ଟିକିଏ ହସିଲା।

"ପାଣି କର୍ତ୍ତା ଆଉ ଓଡ଼ନାୟକ ସବ ସମାନ ? ସମାନ କରିଦେଲ।"

"ଓ, ପଟ୍ଟନାୟକ ଘର ଦରକାର ?"

"ହଁ, ହଁ, ପଟ୍ଟନାୟକ ଘର—ତୁନ୍—ତାହା ଆଗେ କହିବ ନାହିଁ । ପାଣ କଣ୍ଡରଙ୍କ ଅଗରେ ପଟ୍ଟନାୟକ ଘରକୁ ନେଇ ଥୋଇଚ ? ଥୋଇଲେ ଚଳିବ ? ପାଣ ଗୁଡ଼ାକ—ଘରେ ଦାନା ନାହିଁ—ପଟ୍ଟନାୟକ ଘର କୋଠା ବାଡ଼ । ପାଣ କଣ୍ଡର ମିଶି ଅଧଲ ପଇସାର ସଉଦା କରନ୍ତି—ପଟ୍ଟନାୟକ ଘର ଟଙ୍କା ଅଧୁଲିର ସଉଦା କରିବେ । ପାଣ କଣ୍ଡର ସଙ୍ଗ ସପା ବଡ଼ ଦାଣ୍ଡରେ ସଉଦା କରି ନେଇଯାଆନ୍ତି—ଆଉ ପଟ୍ଟନାୟକ ଘର ଲୁଗ୍ରେ ଲୋକ ପଠେଇ ସଉଦା କରନ୍ତି । ଜଣାର ନାହିଁ ? ଦଅ କଙ୍କା ! ତାହାକୁ କହିବ ନାହିଁ । ତମ ଠାକୁର ଦୁଆଇ ଦୁଖିଆଙ୍କା—ମଣିର ସେରେ ।

ଦୁଖିଆର ମନ ହଉଥିଲା—ଦବନାହିଁ । କିନ୍ତୁ ଏ କଳ୍ପଟାର କଥାଶୁଣି ସେ କାହିଁ କି ଭାବିଲା, ସେ ସଉଦା ଦଉଚ ପଟ୍ଟନାୟକ ଘରକୁ ନୁହେଁ—ପଟ୍ଟନାୟକ ଘରର ଏଇ ଲୋକଟାକୁ । ତଥାପି ପଟ୍ଟନାୟକ ଘର ନାଁରେ ଦୁଖିଆ ମନଟିକିଏ ଗଠା ହୋଇଗଲା । କହିଲା—"ସେର ବାର ପଣ ପଡ଼ିବ ।"

"ଯାହା ନବ !"

ଦୁଖିଅର ଦସ୍ତାହେଲା । ଏମିତି ଦରକାର ବେଳରେ ଘାଟ-ଉପରେ ବସି ସେ ପଇସା ନବ ? ପଚାରିଲା—"କି ଦରକାର କରେ ?"

"ଜର ।"

ସଉଦା ନେଇ ଗୁକର ଯେତେବେଳେ ଟଙ୍କାଟିଏ ବଢ଼ାଇ ଦେଲା, ଦୁଖିଅ ଟଙ୍କାକୁ ଧରି ଗୁହିଁଲା । ସେ ଟଙ୍କାକୁ ସଠଉ କି ଅଉ ଜର । ସେ ଦଶଣା ପଇସା ଫେଟରେଇ ଦେଇ କହିଲା—"ଜାଣ ଯିବନାହିଁ କି ତମ ବାବୁଙ୍କର ?"

"ଜାତି ? କ ଜାତି ହୋ ? ବଡ଼ ଲୋକଙ୍କର କି ଜାତି ? ବଡ଼ ଲୋକଙ୍କର ତ ଗୋଟିଏ ଜାତି—ସେଇ ବଡ଼ ଲୋକ ଜାତି—ତା ଛଡ଼ା ଆଉ କି ଜାତି ଥାଏ ତାଙ୍କର, ଜାଣୁ ? ଟଙ୍କ ନୋଟଙ୍କ ବଡ଼ ଭାଣ୍ଡରର ଗାଣ୍ଠି ପଥର—ବଗ୍ଘର ନ ଥାଏ । ଜାତିଟା ଆମ ଗରିବଙ୍କ ପାଇଁ । ଗରିବଙ୍କ ପାଇ ସେଠି ଅଲଗା ପଞ୍ଚଭଗବାନ ଦୁଆରେ ଗଡ଼ୁଛନ୍ତି । ଜାତି ମରୁଛି—ଜାତି । ଦେଖିଛ କେତେ ଜାତି । ଟଙ୍କାର ଚିତ୍ର ପଟରେ ଜାତି—ସହି ପଟରେ ଅଜାତି । ଆଉ ପୁଣି ଜାତି ପଜାତି କ'ଣ ?"

"ଏଇ ବଡ଼ ଲୋକଅ, କରଣ ସାଆନ୍ତେ, ବାବୁ ଭାଇଯାଁଙ୍କୁ ଅସିଲେ, ଗରିବଙ୍କୁ ଦୁଆରେ ବସିବାପାଇଁ ବାହାର କରନ୍ତି—ଜାତି ଜାତି । ଜାହିଁକି ନା, ଜାତି ଜାତି କରି ଟାଙ୍କାକୁ ଫଟେଇ ନଦେଲେ ଦାରୁଅ ଚୂର୍ଣ୍ଣହେବ ନାହିଁ । ନ୍ରଦେଁ ! ପୁଣି ଏଇ ବାବୁ ଯେତେ-ବେଳେ ସହର ବଜାରକୁ ଯିବେ ସେତେବେଳେ ପାଣ୍ଡବଣ୍ଡର ଛାଡ଼, ମୁସଲମାନ କବରସ୍ତାନ ହୋଟେଲରେ ବସି କଣ୍ଟା ଗୁମର ଧରି ଦେ' ଖେଲ୍ ଦେ—ଦବ୍ୟଗ୍ଲାସ ! ସେଇଟା ବାବୁଅନି—ସେଥିରେ ପୁଣି ଗର୍ବ । ଯେ ତା ନକଲେ ସେ ମୂର୍ଖ ଅସଭ୍ୟ । ଏଇ ତ ଜାତି ! ଆମେ ଚଷା ବାପୁଡ଼ା, ଆମେ ଟିକେ ନାକୁ ହାଣ୍ଡି ଛୁଇଁ ଦେବୁ ତେବେ ଦୁନିଆ ଯାକ ପାପ ହେଉଥିବ—ଖାଇ ବସିବା ବେଳେ ଛୁଇଁଦେବୁ ତ ଭାତ ଥାଳୀ ମାଟି ହେଇଯିବ—ମା ଲକ୍ଷ୍ମୀ ଅପବିତ୍ର ହେଇ ଯାଆନ୍ତି । ପରଶିଲା ଲୋକର କାନିଟିକେ ବାଜିଲା ତ ପରଶାଦ ପାଭୁଳିକଯାକ ଯିବ ପାଣିରେ । ଦେଖିବଟି ପୁଣି ସେଇ ବାବୁ ଭୈସ୍ୱାଙ୍କ ଘରକୁ—ଧଳା-ଧଳା ଏଇ ଟଙ୍କା ନୋଟ ପରି ସାଦା ସାଦା ବାବୁମାନେ ଯେତେବେଳେ ଅସନ୍ତି, କିଏ ପଠାଣ, କିଏ ପାଣ, କିଏ କବରସ୍ଥାନ, ସେତେବେଳକୁ ଜାତି ଲୁଅଜେ ପଳାଏ । ଏକା ଟେବୁଲରେ

ଖାନା ଖାଇବା, ଏକା ପାତ୍ରଲିରୁ ଖାନା ଆଣିବା, ଏକା ନିଅଁରେ ସିଗାରେଟ ଧରିବା, ଏକା ସାଙ୍ଗରେ ମଦ ପିଇବା—କେଉଁଠା ବାଦ୍ ପଡ଼େ କି ? ମୁଁ ଦେଖିଛି ଯଥା ? ଆମେ ସବୁ ପଠାଣ ହାକିମ ବଡ଼ଟି ମୁନସି ଦାରୋଗା ଆସିଲେ ତାଙ୍କ ଅଇଣ୍ଠା ବାସନ ନ ଉଠାଇ ଦୋଳ ସାଆନ୍ତ ନିଜେ ବାସନ ଉଠେଇ ଆଣି ବାସନ ଉପରେ ଅଗ ପାଣି ଦି' ବାଲଟି ଢାଳିଦେଲେ ଯାଇଁ ଆମେ ମାଜି ମୁଜାଇ ସଫା ସୁତୁରା କରି ରଖୁଁ । ସେତେବେଳେ ଜାତ ଥାଏ କେଉଁଠି ? ସବୁ ପଇସା-ପଇସା-ଏଇ ପଇସାର ଖେଳ । ପଇସା ପାଇଁ ଜାତ-ପଇସା ପାଇଁ ହିଁ ଅଜାତ । ଯେଉଁଠି ଜାତ ଜାତ କଲେ ପଇସା ମିଳିବ, ସେଠି ଜାତ ନାଁରେ ଯାବତ ବଜାତ ଚାଲିଛି । ଯେଉଁଠି ଜାତ ନଗଣିଲେ ଦାନା ମିଳିବ ନାହିଁ, ମାନ୍ ମିଳିବ ନାହିଁ ସେଠି ପଇସାଟାଇ ଜାତ । ବୁଝିଲ ବାବୁ ? ଏ ଜାତ ନୁହେଁ ସେ ଚକାନ୍ତ—ବାବୁ ଭେଁଇଆଙ୍କ ଚକାନ୍ତ । ମୁଁ ଏସ ଦଶବର୍ଷ ହେଲା ଗୃହର ଘର ଖାଲି ଏଇଆ ଦେଖୁଛି । କେବଳ ଚକାନ୍ତ—ଷଡ଼ଯନ୍ତ୍ର । ସବୁ ଗରିବଙ୍କ ବିରୁଦ୍ଧରେ ଚକାନ୍ତ । ଏ ଗାଁରେ ଚକ୍ରବ୍ୟୂହ ଭାଙ୍ଗିଗଲା—ଏବେ ଦେଖିବ ଯା—ସହରରେ ପଦ୍ମବ୍ୟୂହ ରଚିତ । କ'ଣ ନା—ଆମେ ପାଠ ପଢ଼ିଛୁଁ-ଭଦ୍ର-ଶିକ୍ଷିତ ଆମର କି ଜାତ—ସେଗୁଡ଼ାକ ଗୋଟ କଥା । ଜାତ ଏଇ ମୂର୍ଖ ଗରିବଙ୍କ ପାଇଁ । ବୁଝିଲ ବାବୁ ମରମଟା ? ବ୍ରାହ୍ମଣ କରଣ, ହିନ୍ଦୁ ମୁସଲମାନ ନାହିଁ । ଯିନା ଏ ବଡ଼ ହେଲେ ଭଟ ଉଦେଲେ—ଅପଲ ଜାତିର ବଶୁର । ଗୁଡ଼ ପାରୁ ନାହାନ୍ତି । ବୁଝିଁ ପାରୁଚ ନନା କି ଜାତ ? ବଡ଼ ଜାତ—ଗୋଟ ଜାତ ବଶୁର ପଇଲା ହେବ, ତେଣିକ କଥା । ଏ ବାବୁଙ୍କ ହାତେ ଜାତ ଯାଉଛି କେତେ କହିବ ? ପୋଥି ସରିବ ନାହିଁ ।"

ସେ ଉଠି ଚିଅଣ୍ଡେଲା ଗୁଲି ପିବାକୁ । ଦୁଖିଆ ତାକୁ ଚାହିଁବା ହେଇ ଗୁହିଁ ଥାଏ । "ଏତେ କଥା ତୋତେ କିଏ ଶିଖେଇ-ଲାରେ ଚାକୁଙ୍ଗା ?" ଦୁଖିଆ ତାକୁ ବାକୁଙ୍ଗା ବୋଲି ଡ଼ାକେ ।

'ମା ପେଟରୁ ଶିଖିଥିଲି—ମା ପେଟରୁ—ଅଭିମନ୍ୟୁ ପରି ।'

'ହଉ କହନ୍ତୁ, ଧାପାଡ଼ରେ ସମସ୍ତେ ଖାଇପିଇ ପ.ଉଲେ ଯେତେବେଳେ ପ.ଇଟି ଛୁଡ଼ଯ.ଏ, ଆଉ ସୀତାରେ ସମସ୍ତେ କବାଟ କିଳିଦେଇ ବିଛଣାକୁ ଗଲେ ତୁ କେମନ୍ତେ ଓଡ଼ିଆ ଜ.ଲ କ'ଣ ପଢ଼ୁ । କ'ଣ ସବୁ ଏତେ ପଢ଼ୁ କିରେ !'

'ମୁଁ ସବୁ ? ନାଇଁ ଦୁଖିଆ କ୍କା ମିଛ—ଛୁଟ୍ଟା ମିଛ ।'

'ନାଇଁ, ତୁ କୁଅଡ଼େ କେତେ ଶାସ୍ତ୍ର ପୁରାଣ, ଗୀତା ଭାଗବତ, ରାମାୟଣ ମହାଭାରତ ପଢ଼ୁଛୁ । ଲୋକଙ୍କ ମତେ ।'

'ହଁ ସେମିତ ଗଣ୍ଡେ ଅ.ଧ କେତେବେଳେ ପଢ଼ିଦିଏ ।'

'କିନ୍ତୁ ଏସବୁ କଥା ତୁ ଶିଖିଲୁ କଉଠୁ ? ଏ ତ ପୋଥିପୁରାଣ କଥା ନୁହେଁ ।'

'ନୁହେଁ ଅଉ କ'ଣ । ଟିକେ ଟିକେ ପୋଥିପୁରାଣରେ ତ ଏଇସ୍ବା ଅଛି ।'

ଦୁଖିଆ ହସିଲା ।

'ତମେ ହସୁଛ କକା ? ଭାବ ଏକ—ଭାଷା କେତେ ମତରେ ଅଛି । ସେମିତ ଶାସ୍ତ୍ର ବି ଏକ—ଭାଷା ଖାଲି ନିଆରା—ନିଆରା । ଗୋଟିଏ ଶାସ୍ତ୍ର ଅଷ୍ଟ କରି ପଢ଼ିଲେ ଯାହା—ସବୁ ଶାସ୍ତ୍ର କଥା କରି ପଢ଼ିଲେ ତା ଫଳ କାହୁଁ ମିଳିବ ? ପୁରାଣ ମୋତେ ଭାବ ଦେଇଛି । ମୁଁ ତାକୁ ମୋ ଭାଷାରେ ବୁଝେଇ କହୁ ଦଉଚି ।'

'ତୁ ଯଦ ଅଉ ଟିକିଏ ପାଠଶାଠ ପଢ଼ିଥାନ୍ତୁ—ବଡ଼ ବୁଦ୍ଧିଅ. ହେଇଥାନ୍ତୁ ।'

'କି ପାଠ ହୋ ? ତମ ଇଂରେଜି ପାଠ । ଜୁହାର ବାବା ! ମୋର ବେଶୀ ବୁଦ୍ଧିର ଦରକାର ନାହିଁ । ଭାଇ ବଲ୍‌ଅଙ୍କର ବ ବୁଦ୍ଧି ଅଛୁ ଭକ୍ତା । ମୋର ସେ ବୁଦ୍ଧିରେ ଲୋଡ଼ା ନାହିଁ । ତମର ଏଇ ଇଞ୍ଚି ମିଞ୍ଚି ପାଠ ? ସେଥିରୁ କଣ ମିଳିବ ଏ ସବୁ କଥା ? ସେ ତ ହବଟ ଘଡ଼ା ନୁହେଁ—ହୁଦର ଘଡ଼ା ନୁହେଁ—ଝଙ୍କାର ଘଡ଼ା— ବଡ଼ଲୋକର ଘଡ଼—ବାରଦାରର ଘଡ଼ା—ମନମର୍ଜିର ଘଡ଼ା— ସିଗାରେଟ୍ ବୁଢ଼ାର ଘଡ଼ା—ଜାମା ପେଣ୍ଟୁଲ୍‌ର ଘଡ଼—ମଟର ସାଇକ୍‌ଲର ଘଡ଼ା—ତମ ବହିରେ ଏକଥା ଅଛି ବୋଲୁଠୁ । କିନ୍ତୁ ପୋଥିପୁରାଣରେ ଅଛି—ଠିକ ଠିକ ଲେଖା ଅଛି—ଗାଈ ପଡ଼ିବା ପରି ଅଣି ଥିଲେ ହେଲା । ହଳ ଦୁଇଅ ଲୁଗା—ଥାଳ— ଯାଉଚ—ପୂର୍ଣ୍ଣ ଅଜଦନେ—ଓଳଗି ।'

ଅଧବାଟରୁ ଫେରପଡ଼ ସାଙ୍ଗରୁ ଅସି ପୁଣି କହିଲା— 'ଜଗନ୍ନାଥଙ୍କ ଦୁହାଇ ଲଗୁଛି—କହିବ ନାହିଁଟି କାହା ଆଗେ ।'

ବାବୁଙ୍କୁ ଏଥର ନିଜରୂପ ଖୋଲିଲେ ପୂର୍ଣ୍ଣ ପଟ୍ଟନାୟକ ଘର ଗୁଡ଼ର ଭେଷ ଛେଇଲ୍ ବୋଲି, ଦୁଖିଦାଶ ହସିଲା ମନେ ମନେ ।

ଏକା ପଟ୍ଟନାୟକେ ନୁହନ୍ତି, ପଟ୍ଟନାୟକଙ୍କ ତାର ଅଧିକାଂଶ ଲୋକେ ଯିଏ ଏ ଦେଶର ଭାଷାରେ କଥାରେ ଅଗୁଆ ହେଉଥିଲେ ସେଇ ସବୁ ଗୋଟି ଗୋଟି ହୋଇ ଅଗ ଅସି ସଉଦା କିଣିଲେ ଦୋକାନରୁ । ଅବଶ୍ୟ ଲୋକଙ୍କପଚେଇ—ଲୁଗୁ ଗୁପ୍ତରେ । କେବଳ ବାହାରେ ଯେଉଁମାନେ ଅଳ୍ପ ଜାହିର କରନ୍ତି, ସେ ବାହ୍ମଣ ଦୋକାନରୁ କେହି ସଉଦା ନେବ ନାହିଁଟି !'

ଇଅଂକ ନା—ଜାତ, ଇଷ୍ଟ ନା—ପେଣ୍ଟ—ସ୍କୁଲ୍ ହି କହନ୍ତି ବାବୁ । ଦୁଖିଅ ହସିଲା । ଅସଣା ସୁଧା ଘର ସବୁ । ଆପଣା ଧୁବିଧାର ଅଂକକୁ ଚିହ୍ନିଗଲେ ଜାତି ପଡ, ପେଣ୍ଟ ମେଳ,

ବାସନ ବନ୍ଦ, ସବୁ ଫସଲ ଫାଟିଯିବ । ଏଇ ତ ଗାଁ—ଏଇ ତ ସମାଜ ! ସ୍ୱାର୍ଥକୁ ନେଇ ମଣିଷ ବଞ୍ଚିବା କମିଛି !

ରତନୀ ବି ସେଇଆ ଭାବିଲା—ଏଇ ତ ସମାଜ ! ସ୍ୱାର୍ଥକୁ ନେଇ ମଣିଷ ବଞ୍ଚିଛି ନା କଣ ? ଆପଣା ସୁବିଧା ପାଇଁ, ଆପଣା ସ୍ୱାର୍ଥ ପାଇଁ, ଏ ସମାଜର ଚଢ଼ିବଢ଼ିଆ, ପାଟୁଆ ପଦୁଆ ଲୋକେ ସମାଜର ଆଇନ ଭାଙ୍ଗି ଚାଲିଯାଆନ୍ତି—ସମସ୍ତେ ଜାଣନ୍ତି ସମସ୍ତଙ୍କ କଥା—କିନ୍ତୁ କେହି କାହାକୁ କହନ୍ତି ନାହିଁ—କହିବାକୁ ସାହସ କରନ୍ତି ନାହିଁ—ସମସ୍ତଙ୍କ ଭିତରେ ଚୋରି—ସମସ୍ତେ ଜାଣନ୍ତି—ଖାଲି ଦୋଷଟାଏ ଥା'ବ, କେହି ଯଦି ଅସାବଧାନରେ, ଅଣଗୁଲଳରେ, ଅପଣା ସରଳପଣିଆରେ ଆପଣା କଥାକୁ ଘୋଡ଼େଇ ନପାରେ ।

ରତନୀ ସଭିଟା ଗଭିର ଘରେ କଟେଇଛି । ସମାଜର କେତେ ରତନୀ କେତେ ବଡ଼ଲୋକଙ୍କ ଘରେ ସବୁ କଟେଇ ଦେଉ ନାହାନ୍ତି । ସମସ୍ତେ ଜାଣୁଛନ୍ତି, ଅଥଚ କେହି ଜାଣୁ ନାହାନ୍ତି । ଜାଣିଲେ ଅଉ କାହାର ବାଧା ରହିବ ନାହିଁ ।

ଦୁଖିଦାସ ଜାଣିଲେ କିଛି କ୍ଷତି ନାହିଁ । ଦୁଖି କେଡ଼େ ଭଲ ମଣିଷ । ସେ କିଛି ଗପସପ କରିବ ନାହିଁ । କାହାର ନାଁରେ ନିନ୍ଦା ପଦେ କହିବାକୁ ତା ଜିଭ ଯେମିତି ପଥର । ସେ ଜାଣିଲା ତ କ୍ଷତି କ'ଣ ? ସେ ରତନୀକି ଅବିଶ୍ୱାସ କରିବ ନାହିଁ । ସେଥିପାଇଁ ତା' ଘୃଣ ପୂଲି ଜନ୍ମୁଛି ।

ଦୁଖିଆ କିଛି କହିଲା ନାହିଁ । ତଥାପି ରତନୀ ଗୋଡ ଖୁଣ୍ଟି ପଡ଼ିଥିଲା । ସେ ଅଳପବାଟ ଆଗେଇ ଯାଇଛି, ଦେଖିଲା, ଟେଣ୍ଡୁ ଆସୁଛି—ଧନୀ ମାଷ୍ଟର । ସେ ସରମରେ ସଢ଼ିଗଲା । କ'ଣ କହିବ

ପଚାରିଲେ ? ସତକୁ ସେଠି ସେ ପଚାରିଲା—'କୁଆଡେ ଯାଇଥିଲ ରତନମା ?'

'ରାତି ହୋଇ ବେଶୀ ହୋଇଥିଲା—ରାଜୁଳ ଘରେ ରହିଗଲି ।'

'ନାଁ—ନାଁ—ସେମିତି ଆଉ ରହିବୁନି'—ଏ ଗାଁ କଥା ଜାଣିନୁ !'

ଧନୀ ଚାଲିଗଲା । ରତନମା ଡରିଗଲା । ଯେମିତି ନିଘୋଟିଆ ରାତିରେ ଭୂତଟାଏ । ଭୂତ ଚାଲିପାଇଛି । ଅଛି ଗାଲି ଘୃତ ଥରୁଟା । ସେ ଟାଣି ଟାଣି ଇମ୍ଭ ନିଃଶ୍ୱାସରେ ସେଇ ଥରୁଟାକୁ ଥୟ ଧରୁଛି । ସେ ଆଶା କରୁଥିଲା—ଧନୀ ମାଷ୍ଟର କହିଦେଇଥାନ୍ତା—ନା । କୋଉ କହିଲେ କହନ୍ତୁ—ସେଟା ମିଛ—ସେଟା ଭୂତ । ଭୂତକୁ ଡରନ୍ତୁ ନାହିଁ । ଭୂତଟା ମିଛ । କିନ୍ତୁ ଧନୀ ମାଷ୍ଟର, 'ହୋଇ ନେ ଭୂତ' ବୋଲି କହି ଚାଲିଗଲା । ବରଂ ନିଜେ ଗୋଟେ ଭୂତ ହୋଇ ତାକୁ ଡରେଇ ଦେଇ ଚାଲିଗଲା ।

—ନାଁ—ସେ ତାକୁ ସାବଧାନ କରେଇ ଦେଇଯାଇଛି—ଏ ବାଟରେ ଭୂତ ଅଛି ବୋଲି । ସେ ବି ଆଗରୁ ଜାଣିଥିଲା ସେ କଥା । ଧନୀମାଷ୍ଟର ଚେତେଇ ଦେଇଗଲା ଖାଲି । ସେ ସତରେ ବେଳେ ଭଲ ମଣିଷ । ସେ ଧନୀକୁ ଶ୍ରଦ୍ଧା କଲା ।

ଭାବିଲା—ଧନୀ ମନରେ ବଡ ଶ୍ରଦ୍ଧା—ବଡ ଦୟା, ତା ପ୍ରତି । ରତନାର ବିପଦ ବେଳରେ ଆଉ କିଛି ନ ହେଉ ଦି'ପଦ କଥାଳି କଥା ତ କହିଯାଏ—ଏମିତି ତ ଆଉ କେହି କହନ୍ତି ନାହିଁ ।

ଦୁଖି ! ଦୁଖିଆ ପଥର । ସୁଖରେ ଦୁଃଖରେ, ଶବରେ ଭର-ଷାରେ ସେ ସେମିତି ଦାନ୍ତଭୁତ ହୋଇ ଠିଆ ହୋଇଥାଏ । ଡାକିଲୁ ଗଲେ ଛାଇ ମିଳିପାରେ—ଅଶ୍ରୁ ମିଳିପାରେ, କିନ୍ତୁ ବଳେ ବଳେ ସେ ହାତ ବଢେଇ ଅଶ୍ରୁ ଦିଏ ନାହିଁ ? ପୁଣି ଖୋଜି ହେଲେ ଛାଇ ମିଳେ, କାନ୍ଦିଲା ଆଖିରେ ନାହିଁ, ଧନୀ ମାଷ୍ଟର ତା ବୁଝେ । ଖରାରେ

ବରଷାରେ ସବୁବେଳେ ସେ ଡଅର । ସେ ଆପେ ଆପେ ଆସେ—ଦରଜାରେ, ବେଦରଜାରେ ଆସେ—ଶଙ୍କା କୁଣ୍ଠା ତାର ମୁଲାହଜା କରେ ନାହିଁ ।

ରତନୀ ଘରେ ପଶୁଥିଲା କି ନାହିଁ—ତେଣୁ ନିଧିଆ ବୋଉ ଲୁହଁକି ବସିଥିଲା ଟଣ ବାହାର ଅସିଲା—ମୁହଁରେ ତାର ହସ ଗୁପ ପକେଇ—"ନାନୀ ! ମୁହଁଟା ଇମିତି ଶୁଖି ଯାଇଚି କାହିଁକି ?" ପଚାରି ଦେଲା । ସେଇ ହସରୁ ଟିକିଏ ବାହାର ପଡ଼ିଲା ବାହାରକୁ ପାନିବୋଲ—ବହୁଗଲା ପର ଧ' କଲା ଦେଲା ।

ଗୁହାଁକି ନା, ଘୁଞ୍ଚରେ ପଜା ଖୁର କିଏ ଚଳେଇ ଦେଲା ଯିମିତ ରତନୀର । ସେଇ ନିଧିଆ ବୋଉ.ନା ଏ ? ରତନୀ ଅନେଇ ଦେଖୁଥିଲା । ଏତେ ମାୟା, ଏତେ ମମତା ସବୁ କଣ ମିଛ ? ନିଧିଆ ବୋଉ କଣ ତାକୁ ଛନ୍ଦ ଅସିଲା ଆଜ ଯାବେ—ବନ୍ଧୁ ବୋଲି, ସଇ ବୋଲି, ହିତକାରୀ ଆପଣାର ବୋଲି ? ସେ କିଛି କହିଲା ନାହିଁ । ଛୁଆକୁ ଦୁଧ ଦେଇ ଦେଇ ଛାତିକୁ ବାଆଁରେଇ ଦେବାର ସାହସ ଥିବ ସେ ଏଲଟି ପଚାରିଲା—'ନାନୀ ନାନି, କାଲି ତୁ ଥାନକୁଟି ଗଲୁ ନାହିଁ ?'

ନିଧିଆ ବୋଉ ନ ଘୁଞ୍ଚେ । ରତନୀ ଯେତେ କଥା ମୋଡ଼ି ବସୁଛି, ନିଧିଆ ବୋଉ ସେତିକି ଝାଁଶୁଛି, ତା' ଆଡ଼କୁ । କହିଲା—ମୋର ଆଉ ବଳ ବୟସ ଅଛି ନା, ରତନୀ ପାଙ୍ଗରେ ପଠ ଦେବି ।

"ତୁ ତ ଏକା ଏକା ପଞ୍ଚ ପାଞ୍ଚଟା ମିଣପଙ୍କୁ ପଠ ଦବୁ—ଏ ବୟସରେ ଏତେ ତାକତ ଛୋଟି—ରତନୀ ଯେତେ କାହୁଁ କରୁ ହବ । ସତରେ ତୁ କେତେ କାମ କରୁ ନିଧିଆ ବୋଉ ନାନି ! ମୁଁ ପାରନ୍ତି ନାହିଁ ।"

"ଇଲେ ସେ କଥା ଭନେ—ଏ କଥା ଭନେ । ଗଜତ ପୁଅ ମନକୁ ନିଧିଆ ବୋଉ ମାନିଲେ ତ !"

ରତନମା ଚମକି ଉଠିଲା ।—"କି କଥା ମିଛା କହୁନ ନା ? ଛି ! ସାଧବ ପୁଅ ବଡ଼ ଭଲ ଲୋକ । ଏତକ କହୁ ରତନମା ଦବ ଗଲା । ମିଛକଥା । ମିଛକଥା ସେ କହୁଛି । ମିଛ କଣ ସେ କହିନାହିଁ ଆଗରୁ ? ମିଛରେ ପୁଣି ବାନ୍ଧିଲା ନା ବନ୍ଧିଲା ଦି' ରକମର ଥାଏ—ମିଛ କହୁ, କହୁଲା ପରେ ଜଣା ପଡ଼େ ନାହିଁ, ଆଉ କେତେ ମିଛ ରଙ୍ଗ ଲାଗେ । ଏଇଟା ତାହାର ମିଛ—କଞ୍ଚା ମିଛ—ମଣିଷ ମାରି ଲୁଚୋଇଲା ପରି ।

"ମୁଁ କଣ କହିଲି ସାଧବ ପୁଅ ଖରାପ ଲୋକ ? ଯୁବା ବୟ-ସରେ, ଯୁବତୀ ସ୍ତ୍ରୀ ପାଖରେ ସବୁ ପୁରୁଷ ଭଲ । କିଏ ଖରାପ କି ?"

"ନା ମା, ତୁ ଖାଲି ଦୁଷ୍ଟ । କି ଅଲଣା କଥା ଏ ଗୁଡ଼ାକ ।"

"ଅଲଣା, ମୁଁ ଅଲଣା କହୁଛି ? ସତ କହିଲୁ, ସାଧବ ପୁଅ ତୋତେ କେବେଳ କେବେଳ ଛୁଇଁ ନାହିଁ ? ତୁ ଯେମିତି ଅଙ୍କନଇ ଦେଇଚୁ, ସେ ମୁହଁକି ମୁହଁ କିପି ଦେଇ ନା ? ସାଜତ ଘରେ ତୁ କା'ଲି ସତ—"

ହାତେ ଲଜ୍ଜାରେ ଜିଭ କାଟିଦେଇ, ନଖୁଆ ଗୋଳ କହିଲା, "ନାଇଁଲେ, ମୁଁ ଗେଲ ଦେଖିଥିଲି ନା ! ତୁ ଗଲୁ କି ?"

"ନାହିଁ ନାନି, ଆଖି ଛୁଇଁଲା—କାଲି ସାଧବ ଭଉଜ ବେଣୀ ସାଜ ହୋଇଗଲାକୁ ସୁନ୍ଦର ନାହିଁ । କା' ସାଙ୍ଗରେ ଅପନ୍ତ ? ତୁ ତ ଭଲ ନାହିଁ କାଲି ।"

"ଭଲ କଲୁ । ମୁଁ କଣ କହୁଛି ନା କିଛି ! ହେଲେ ଗାଁରେ ଏ କଥାଟା ଉଡ଼ି ଉଡ଼ି ବାଜି ଯିବ ।"

"ମୁଁ କଣ କହିବି ନାନି !"

"କହିବୁ କଣ ? ଏଥିରେ ଡରିବାର କଣ ଅଛି ? ମୁଁ ହୋଇ-ଥିଲେ କହନ୍ତି—ଅଲବତ, ଭଲ କଲି, ଆହୁରି କରିବି । ଗାଲି ଯେତିକି ନହେଉ, ମିଛ ମିଛିଟାରେ ମୋତେ ଯଦି ଦେଖି କହେ,

ତାକୁ ମୁଁ ବୁଝାଇଣ ସହଯାରେ ନାହିଁ । ମୁଁ ତାକୁ ଶୁଣେଇ ନେଇ କପାଳରେ ସତ ସତ ମୁଁ ସାହସ ବାନ୍ଧି ସେଇ ଭାବ କରି ଦେଖେଇ ଦଉନ୍ତି—କହନ୍ତି—ହିଁ ମୁଁ ଦେଉଛି କରେ—ମୁ ନ କହୁଛି—ମାନୁଛି—ତ୍ରି ଅଣ ଅଧିକା ଟା କହିଲ କଣ ? ମୋର ଏମନ୍ତ ସଗ ହୁଏ । କି—ରାଜେନ ଧରେବ ଗଭାଗାଏ ବହିଲେ ତ ଭାସିଗଲ କଣ ? କହି କହି କହିବେ—ସାହେବପୁଅ ଟୋକେତ ଶାଢ଼ୀ ପିନ୍ଧିଛି—ବୁଢ଼ ହଜିଛି। ଅଗ୍ନି ଦେଖ—ବେଶ ହେଲ—ମୋର ବଅସ ଅଛି—ଜୁଆ ପଚ୍ଛି—ଚୋଳାଏ ରଖିଲେ ତ ଦେଖି କଣ ? ତମ ବଅସରେ ନାଆଁ ଲଭିଲ କି ? ତମ ଦାନ୍ତ ସବୁ ନାହିଁ କି ?"

"କ୍ଷି କ୍ଷି ନାନି, ମୁଁ ସେ କଥା କହି ପାରିବ ନାହିଁ ।"

"ନ ପାରିଲେ ଅଟଣି ମାତ ଅଟେ ଖେଳିବୁ ।"

କଥିଏ ବୋଉ ଶୁଣିଗଲା । ସେଇ ଓଠରେ ହସ ଆଉ ସ୍ରେଷ ଦେଖେଇ । ଅଜବ ମଣିଷ ସେ ! ଯାହା କହିଗଲା ଅନ୍ତରର ଅନ୍ତରେ ସତ ପରି ଲାଗୁଛି ତ ! ଝୋଉଁ କ'ଲେ, କୋଉଁ ଦିନେ ମଲା କି ଗଲା ବୋଲି ଯିଏ ପଚାରନ୍ତି ତାଙ୍କୁ ସେ ଅଳ୍ପ ଅପି ପଚାରିପକଉଛନ୍ତି—ନାତୁଣି ହେଲା—'କି ରଜନୀ, କି ବ ଭଦ୍ରା ମା, କ ଶୁଭ ପାଇଗ, କମିତ ଅଛୁ ? ଏ ପଚାର ତାଙ୍କ ନୁହେଁ—ଯେମିତ ନା ଲଜ୍ଜିତ ବଗୁସଜ୍ଜ । ଏ ପଚାରିବା ମୂଳରେ ଯେ କେତେ ଟାଣ ହାସ୍ୟ ଲଗିତ ଗର୍ଜଣା ନହିଛି ତା' କେବଳ ତା'ର ହାତେ ହାତେ ଯେଉ ବୁଝୁଥାଏ—ନେଇ ରଜନୀ ।

ସଞ୍ଜବେଳେ ସେ ଦୋକାନକୁ ଗଲା । ତେଲ ଲୁଣ ଅଧଲା ଅଧଲାକର ଅଣିବ । ଅନ୍ଧାର ହେଲଣି । ମୁହଁକୁ ମୁହଁ ଦିଶୁ ନାହିଁ । ଦୋକାନ ପିଣ୍ଡାରେ ବସି କଏ ସବୁ କୁହାକୁହି ହେଉଛନ୍ତି—ତାର ନାଆଁଟା—ଚହାସ କଲା ତା କାନ ମୂଳରେ ବାଜିଲା ଯେମିତି !

"ହଁ, ହେଲା ତ ଭସିଗଲା ବଣ—କୁଆଡ଼େ ଟୋକୀଟା !"

"ରାମ ରାମ ! ଏ କଥା ମୁହଁରେ ଆଣୁଛ ?"

"ଭଲ କେଉଁ ତମେ ସବୁ, ସୁବିଧା ଅସୁବିଧାରେ କୋଉଁଠି ଗାଡ଼ିଟାଏ ବଦଳିଗଲା ବୋଲି ପାପ ଲାଗିଗଲା ନା ?"

"କିଏ କହୁଛି ? କଥାଟା ସତ୍‌ତ ନା । ସମସ୍ତେ ଯେ କହୁଥିଲେ ରତନୀ ଭାରି ଭଲ—ସେଇ କଥାକୁ ପଚାରୁଛି । କିଏ ଭଲ ହୋ ଦୁନିଆରେ । ଆପଣା ଭଲ ମନ୍ଦ ଆପଣା ଭିତରେ । ବାହାରକୁ ସମସ୍ତେ ତୁଳସୀ ।"

"ସ୍ୱଭାବ ଘରର ଅଛୁ କିଏ ଯେ ଏତେ କଥା । ବଣ ବୁଢ଼ୀଟା ତ ।"

"ଚେଇ ଦେଁ କିଏ ଓଃ ଆନ୍ତା କ ଆଉ ! ସବୁ ପୁଅ ସେ ନବସନିଆ ଅଛିନ୍ତରେ ।"

"ଓଃ ହୋ—ଟୋକୀ ତ ତେବେ ଅଳ୍ପ ଖାଇଥ ମାରୁଛି ।"

ଏତିକି ବେଳେ ଦୋକାନ ଭିତରୁ ବାହାରି ଆସି ଦୁଖୀ ଦାସ କହିଲା—"ତମର ଆଉ କିଛି କାମ ନାହିଁ—ଏଠି ବସି ବସି ଗାଳି ପର ହେଉ ପର ଝିଅଙ୍କ ନାଁରେ ଚର୍ଚ୍ଚା ଚାଲିଛି । ପଳା ଏଠୁ !"

ରତନୀ ସେତିକି ଶୁଣି ଧୀରେ ଧୀରେ ଫେରି ଆସିଲା । ତେଲ ଲୁଣ କିଣା ହେଲା ନାହିଁ । ଘରେ ବସି ବସି ଗାଳି କାନ୍ଦିଲା । କାନ୍ଦ ମଡ଼ୁଆଏ ତାକୁ । କିନ୍ତୁ କା' ଆଗେ କାନ୍ଦନ୍ତା ଆଉ ? କିଏ ଶୁଣିବ ତା କଥା ? ଭାଗୁ ମହାନ୍ତି ?

ଭାଗୁ ମହାନ୍ତି ଅନେକ ଦିନ ବଞ୍ଚିବ । ଆସି ଧୀର ଗଳାରେ ଡାକିଲା—"ରତନୀ ଅଛୁ ନା—ରତନୀ ?" ରତନୀ ଉଠି ଆସିଲା ।

"କି ଲୋ, ଏ ସବୁ କଣ ଶୁଣାଯାଉଛି ? ସୁକ ନାହିଁ ବୋଲି ଭାଗୁ ଚାଲିଯିବ ତତେ ମହିଗଞ୍ଜଣି କି ? ଗାଁରେ ରତନୀ ନାଁରେ ଯାହାର ଯାହା ଇଚ୍ଛା କହୁଥିବ ? ମନଖୁସି କି !"

ରଜନୀକୁ କୂଳ ପାଇଲା ପରି ଲାଗିଲା—"ମୁଁ କ'ଣ କରିବି କହ ମଉସା । କାଲି ଗୀତ ନବଣି ହେଇଗଲା । ସଙ୍ଗତ ଭାଙ୍ଗି ମୋତେ ଅଟକେଇ ଦେଲା । ମୁଁ ଏକଲା ଅସନ୍ତୁ କା' ସାଙ୍ଗରେ ।" ରଜନୀ ଆଜ ମୁହଁ ଖୋଲି ସ୍ୱପ୍ନମାହାନ୍ତିଙ୍କ କଥା କହିବାକୁ ସାହସ କଲା ।

"ତୁ ସେତେ ଦୂରକୁ ଗଲୁ କାହିଁକି ଆଗ ?"

"ପେଟ ନ ପୂରିଲାକୁ ।"

"ଶୁଭ ନାହିଁ ବୋଲି ଭାଗୁ ପଟ୍ଟନାୟକ ଏ ଗାଁରୁ ଉଠି ଗଲଣି କି ? ମୋତେ ଅଭାବ ଅସୁବିଧା କହିଲୁ ନାହିଁ ! ନେ ନେ-ଏଇ ଟଙ୍କାଟା ରଖ । ତେଲ ଲୁଣ ଆଣିବୁ । ଆଉ କେବେ ଯିବୁ ନାହିଁ ସେ ସଙ୍ଗତ ଘରକୁ । ଦରକାର ପଡିଲେ ଆସି ଲାଭ ମୋତେ କହିବୁ । ସଙ୍ଗତ ଘରେ ସେ ଟୋକାଟା ବଡ଼ ଖଣ୍ଡେ । ସାବଧାନ ଥିବୁ । ହଁ । ଆଚ୍ଛା, ହଇଲୋ, ତୋର ଲୁଗା ତ ଚିରି ଯିବଣି ? ମୋତେ ତ ତୁ ମୁହଁ ଖୋଲି କିଛି କହିବୁ ନାହିଁ । ମୁଁ ଏତେ ସବୁକଥା ଜାଣିବି କିମିତି ? କ'ଣ ସର୍ବଜ୍ଞ ହେଇଛି ! ଆଚ୍ଛା, ଆଚ୍ଛା, ମୁଁ ଘରୁ ଖଣ୍ଡେ ଲୁଗା ନେଇ ଆସିବି—ନୂଆ ଲୁଗା । ତୋ' ସାଆନ୍ତାଣୀ ଭାଲେ ଜାଣିବ, ସେଥିପାଇଁ ସାଙ୍ଗରେ ଆଣିଲି ନାହିଁ ଏଇନେ । ରାତି ହେବ ହଉ—ସମସ୍ତେ ଶୋଇ ପଡନ୍ତୁ, ମୁଁ ଏଇଟି ତୋ ଦୁଆର ପାଖରେ ଗଳେଇ ଦେଇ ଯିବି । ତୁ ଶୁଣି—ଥିବୁ ତ ଭଲ । ନହେଲେ ସକାଳୁ ଉଠି କେହି ନ ଦେଖିବା ଆଗରୁ ଲୁଗା ନେଇ ରଖିଦେବୁ । ଧୋଇ ଧାଇ କରି ପିନ୍ଧିବୁ । କେହି ପଚାରିଲେ, କହିବୁ ମୋ ଭାଇ ଦେଇ ପଠେଇଥିଲା କଲିକତାରୁ ଅଷ୍ଟମୀକି । କେମିତି ? ମୁଁ ଯାଉଛି—କିଏ ଦେଖିବ, ପୁଣି କେତେ କଥା କହିବ ।" କହି ଚାଲିଗଲା ।

ରଜନୀ ଘୁଞ୍ଚି ଠିଆ ହଟିଲା । ସେ କୁଆଡ଼ୁ ଯାଉଛନ୍ତି କୁଆଡ଼େ ? ଟିକ୍ ବୁଝି ହେଉନାହିଁ । ଭାଗ୍ୟବାନ୍ତ ଉପରେ ଗର୍ଜନ ଧର —ସଜନ ଘର ଭିତର ଧୂଳି ଝାଡ଼ୁମାର ହାନ୍ତୁ । ଏମିତି ଗାଳି ଦୋଳି ଖେଳିଲାପର ଏପଟ ସେପଟ -- ଶାଶୁଶୋଷା କଣ ଏଇଆ ନା ?

ପଦିଅ ସଂସାରର ଖଣ୍ଡ ବନ୍ଧୁ ଆସି ଗଜ ସନ ହେଉ ଗୁଳ-ଗଲା । ଜୋଜାଉଧାନ ପରେ ଅଜି ତାର ଦେଖା—ଅଚ୍ଛ ଲେ ସଜାଲେ । ଯହୁବେନ ଥାଉ ଯାଉନାହିଁ । ହେଲେ ଯେମିତି ଗଜ ଘୁଞ୍ଚି ଯାଉଛୁ— ଶିମୂଳି ତୂଳିମାଳ । ଜେତେ ଲେଖେ ବହନ୍ତି କେଜେ ଜଥା ତା' ନୀଚେର । ଅତଳୁ ସେ ସବୁକୁ ବିଶ୍ୱାସ କରି ନ ନକଥ ଭଳିଆ, ବା ଦରଜାର ନାଥିଣ ଭଳିଆ ମନ ବାନ୍ଧି ନେଇଥିଲା ରଜନୀ । ଅଜି ଅଜ ବିଶ୍ୱାସ କରିବାକୁ ମନ ବି ହେଉ ନାହିଁ । ସବୁ କଥା ଏଇ ମାଇପଙ୍କ ନିଅର । ଟେପଟୋଟି ମାଇପଙ୍କ ମୁହଁରେ ଯେତେକଥା ଶୁଣାଯାଏ, ସେ ସାପ ଭିତରେ ଯେ ସେତୋଟି ବି ତାଠୁଁ ଅଧିକ ପ୍ରବୃତ୍ତ ବି ଥାଅନ୍ତି, ସେ କଥା ତ କାହିଁ କେହି ତୁଣ୍ଡରେ ଧରେ ନାହିଁ ଧରେନା ।

ତାର ମନେ ଅଛି, ଯେବେ ପଦିଅ ସଂସାର ଖଣ୍ଡ ବନ୍ଧୁ ମରବ ମରବ ହେଉଥିଲା । ସେଇ କ'ଣ ହେଉଥାଉଥାଏ । ଧାଉଁନ ମାଉଁଶୀ ହେଇ ଗଡ଼ୁଥାଏ । ସେଇ ଦୁଃଖ ଭିତରେ ବି ଲୋକେ କେତେ କଥା କହୁଥିଲେ । ଏଇ ନିଧିଆ ବୋଉ ତାଙ୍କ ଘରକୁ ଯିବା ଆସିବା କରେ । ସମିଏ କହୁଥିଲେ—ସେଇ ତାଙ୍କୁ କ ପୋଡ଼ା ଖୋଇ ଦେଇଛି— ଆଉ ତୁଆ ପିଲା ହେବ ନାହିଁ ।

ଲୋକେ କହନ୍ତି, ମଦନ ପଟ୍ଟନାୟକଙ୍କ ପୁଅ ସୁଧାଂଶୁ ବଦନଙ୍କ ପାଖକୁ ସେ ବହୁତ ଥର ଅସ କରୁଥିଲା । ହଉଁ ହଉଁ ଗର୍ଭ ହେଲା । ତା ପରେ ଏ ସବୁ କାଣ୍ଡ । କିଏ କାହାକୁ ବିଶ୍ୱାସ କରିବ ! ସେ

ମାଇପିଛା ତ ଏଟି ନଥାଏ—ଥାଏ ତା' ବାପ ଘରେ । ବାହାରା
କେମିତ ଅନେସ । ତେଟି ଏତେ ଦୁର୍ଦ୍ଦିନା । ଦୁନିଆଁଟା ଖାଲି କ'ଣ
ଏଇଥିପା ? ନାଁ, ଗୋଷ୍ଠୀକେଉ ଖାଲି ଏକ ଲଗ୍ନଗ୍ରନ୍ଥ—ଚମ୍ପୁଗଣ୍ଠ ।
ଭଲ କଥା ନାହିଁ—ଧରମ କଥା ନାହିଁ—ଗୃହଅଟେଢ଼ ଖାଲି ଯାଉ ?

ହେଉଛି ବଳଷ ଚେଖ ଧର ଦୁଖିବାହନ ଓଡ଼ି ଅଳିତ ।
ହଜିତ କି ନାହିଁ ? ଶଂସକ ସବୁ ମଇପେ ବଉଡ ଧନ୍ଦିଚନ୍ଦ । ସମସ୍ତେ
ତ ସେ ଦିନ ତ' ଅଙ୍ଗିକ ଭଲ ଦଶନ୍ତି । କିଏ କହିବନ, ତାଙ୍କ
ଭିତରୁ ଅଟୁକ ମଇପଥା ଖିବୁପ ? ସମସ୍ତେ ତ ମନେ କରନ୍ତି ପୋଥି
ପୁରାଣର ସତୀ ସାବିତ୍ରୀ ଭଳି !

ସ୍ୱତନ୍ତ୍ର ସତ୍ତା ବସେ । ବରଷେ ଦି'ବରଷ ହେବ ସେ ବ
ଢଠି ଗଲଣି । ତା ବୋଲି କ'ଣ ଧରମ ଛିଟିଗିବ ନା ? ଭାଗବତ
ଘରେ ଗାଲି ଅଞ୍ଜିଲିଏ ପଢେ । ସେଉଠୁ ବି ପଡ଼ୁ ନଥାନ୍ତି, ଜଗଇ
ମାହାନ୍ତି ଟୋଳାର ଘର ବାଟି ନଥିଲେ । ତା ବୋଲି କ'ଣ ଧରମ
କୁଆଡେ ଗୁଞ୍ଜିବ ? ଖାଲି ମିଛ କ୍ୟାଁଚ୍ଗ୍ରେନ୍ ସ୍ୱତ୍ତ କରବ
ଗୃହଅଟେଢ଼ି ? ତା ହେଉଥିଲେ ଜଗେଇ ମାହାନ୍ତି ବଣ ନେଇ ଯାଇ
ଯାଆନ୍ତିଣି ।

ଏଇ ଜଗେଇ ମାହାନ୍ତି ବଣ । ଜଗେଇ ମାହାନ୍ତି ବଣ ଏକାଳୁ
କାହିଁକି, ଏଇ ଗୋଲାମ ଜାତିଟା । ଧନୀମାନଙ୍କର ଅକ୍ତ ଦୃଷ୍ଟିଦାଷ
ବସି କେତେଥର ଏକ କଥା, କଥାଭୁଷା ହୁଅନ୍ତି । ସମାଜରେ ଅଙ୍ଗ
ତାଙ୍କର ଥାନ କେଉଁଠି ? ଅଥଚ ଏଇ ଜାତିଟା ସମାଜର ଯେମିତ
ଖଇ ହୋଇ ରହିଛି । ଏ ସମାଜ କଳଯୋଗ ସ୍ଥିର ଖାର ହୋଇ
ଗଲଣି । ଖାଲି ଶନ୍ଦୁ ଟିକିଏ ରହିଛି—ଯାଉଁଣ ଟିକିଏ—ସେ ଏଇ
ଗୋଲାମ ଜାତିଟା ।

ଯେଉଁଠି ପାପକୁ ଲୁଗ୍ରଇ ପାରିବାର କ୍ଷମତାକୁ ନିନ୍ଦା କରାଯାଏ, ଯେଉଁଠି ସତକୁ ସତ ବୋଲି କହିବାର ସାହସକୁ ନେଇ ସେଇ ନିନ୍ଦା ବେଦୀରେ ବଳି ଦିଅଯାଏ, ସେ ସମାଜରେ ଏ ଗୋଲାମ ଜାତିଟା ନିପାଣ ସବ ଉଡ଼୍ରୁଛି—ସତ୍ୟର ଜୟଦ୍ବାନା ହୋଇ ।

ଦଶହରାଏକ ବଂରେ ଗୋଲାମ । ଭରଣ ସାଆନ୍ତଙ୍କ ଭାଅଁ । ହେଲେ ଏମାନେ ଯଡ଼ୀରେ ନୂଆନ୍ତ ବି ଯେଉଁଠାରେ ନୂଆନ୍ତ । କଉଥିକ ସାଆନ୍ତ ନାହିଁ । ଯାଙ୍କ ଦେଇ ଭରଣ ସାଆନ୍ତଙ୍କ କୁଳରକ୍ଷା ହୁଏ ନାହିଁ—ଭରଣ ସାଆନ୍ତଙ୍କ ବଡ଼ବଡ଼ା ପିଣ୍ଡ ପାଆନ୍ତ ନାହିଁ ଯାଙ୍କ ହାତରେ । ତାଙ୍କର ଔରସରୁ ଜନ୍ମ, ତଥାପି ଏମାନେ ଜାରଜ—କୁଳଛଡ଼ା । ନାତଗଣ୍ଡି ପଡ଼, ବ୍ରାହ୍ମଣଙ୍କ ମନ୍ତ୍ର ପଢ଼ାରେ ଘରକୁ ଯେଉଁ କୁଳବଧୂ, ଅସନ୍ତି, ଏମାନେ ତାଙ୍କ ଗର୍ଭରୁ ଜନ୍ମ ନୁହିନ୍ତି—ଏଇ ତାଙ୍କ ଅପରାଧ । ଯେମିତି ହେଟି ଜନମ ନ ହୋଇ ଏଠି ଜନମ ହବାରେ ଯାଙ୍କର ହାତ ଥିଲା—ଇଚ୍ଛା ଥିବ ଏମାନେ ଗୋଲାମ ହୋଇଛନ୍ତି ।

ନିଧିଆ ବୋଉ ଏଇ କଥା କହୁ ହସେ—"ସେଇ ଔରସରୁ ଜାତ—ଏକା ରକ୍ତ—ଏକା ଶରୀର—ଖାଲି ପେଟ ଭିନ । ଜଣେ ପାଇବ ଅତଳ ଧନ ସମ୍ପତ୍ତି—ମାଲିକ ହବ ସବୁ ଚଳନ୍ତି ଅଚଳନ୍ତିର; ଆଉ ଜଣେ ହବ ପଥର ଭିକାରୀ । ଏଇ ନ୍ୟାୟ । ଆପଣା ପାପ, ଆପଣା ଭୁଲ, ଆପଣା ଗୋଡ଼ଖିଆ କଟୋରର ଫଳ ଭୋଗିବ ଆଉ ଜଣେ । ଅଜାତି—ଗୋଲାମ । ଆଉ ଉପର ବୋଉଁ ଜାତି ହେଲେ ଏବେ । ଏଇ ଚଳିଆ ଅନ୍ତର ଜାତିକୁ ନା ଦିଆଯାଉଛି—ଯେମିତି ଏ ଅଇଲେ ବାଦଶା—ଆଜି ସେ ତାଙ୍କର ଗୋଲାମ ।

ଜାତି ଜାତି କରି ସମାଜଟା ଉଡ଼ୁଛି ଯିବ—ଧ୍ୱସ୍ତ ହେବ । ଦେଶପରେ ଥାଇ ରକ୍ଷଣୀକ ବାନ୍ଧା ହବ, ମାଇକିନୀ ପୁତ୍ରସବୁ ବାନ୍ଧା

ହବ, ସମାଜ ସେ କଥା ସହିବ—ବଡ ଲୋକଙ୍କ ସମାଜ ସ୍ଥା ଦେଖିବ, ନହେଲେ ମା ଲକ୍ଷ୍ମୀ ରାଗିଯିବେ—ମା ଚଞ୍ଚଳା ଅଚଳା ହେବେ ନାହିଁ । ସମ୍ପତ୍ତି—ସ୍ଥାବର ଅସ୍ଥାବର ସମ୍ପତ୍ତିର ଭୋଗ କରିବାକୁ ହେଲେ ସେଇ ଜାତିର ଗୋଷ୍ଠୀର ରକ୍ତ ସଙ୍ଗକୁ ରକ୍ତ ମିଶିବା ଦରକାର, ସେ ରକ୍ତ ପୁଣି ପ୍ରଜାପତି ଘଟସୂତ୍ରରେ ପବିତ୍ର ହେବା ଦରକାର । ନହେଲେ ଚୋର ହେବ । ଏ ନିସ୍ୱମକୁ ବାହାରେ ଥିବା ଲୋକ ସେ ରକ୍ତରେ ହକ୍ ନାହିଁ, ନଗାଇ ମରିଗଲେ ବି ଜାତିଆ ଘରର ମା ଲକ୍ଷ୍ମୀଙ୍କ କଣ୍ଠରେ ଦୟା ବସେ ନାହିଁ । ଅନାଦୃତା ନାମ ଅନାଥା ହେଇଯାଏ । ଥିଲା ମୁଠିକୁ ନାହିଁ ଖଦ ବାହାରେ । ମଣିଷର ଜୀବନଠାରୁ ବି ସମ୍ପତ୍ତିର ଇଜ୍ଜତଟା ବେଶୀ । ନିଜ ବିବାହିତା ସ୍ତ୍ରୀ ଗର୍ଭରୁ ଜାତ ବଂଶଧରଙ୍କ ମୁଣ୍ଡରେ ଚିରଦିନ ଶାନ୍ତି ବର୍ଷା ହେବାପାଇଁ ଅଭ୍ର ଯିଏ ଯେତେ ଗଣ୍ଡ ମରନ୍ତୁ, ଚନ୍ତା ନାହିଁ । ସମ୍ପତ୍ତି ପାଇଁ—ସମ୍ପତ୍ତି କୁ ଯାବତ୍ ଚନ୍ଦ୍ରାର୍କେ ରଖିବା ପାଇଁ ବଂଶ ଲୋଡ଼ା—ବଂଶ ରକ୍ଷା ଦରକାର । ପୁଅ ପାଇଁ ସମ୍ପତ୍ତି ନୁହେଁ - ସମ୍ପତ୍ତି ପାଇଁ ପୁଅ । ସେ ଗୋଲକମ ବି ତ ଉମର ଔରସର ପୁଅ । ତା ପାଇଁ ସମ୍ପତ୍ତିର ଲୋଡ଼ା ନାହିଁ । ସମ୍ପତ୍ତି କଳୁଷିତ ହେଇଯିବ । ସମ୍ପତ୍ତିର ମହତ ରଖିବା ପାଇଁ ଅପଣା ମହତକୁ ପଦାରେ ପକେଇ ଦିଅନ୍ତି ଏ ସଅନ୍ତ ଜାତ । ଅପଣା ଛୁଅକୁ ପର କରି—ଗୋଲକମ, ଜାତ ସଜନା କରି ଗର୍ବ କରନ୍ତି ପୁଣି ମନେ ମନେ ।

ଜଗେଇ ମାହାନ୍ତି ପଞ୍ଚନାହାଙ୍କ ଘରେ ନକରରେ କ'ଣ ? ତଥାପି ଜମିମାଣେ ବି ପାଇ ନାହାନ୍ତି ସେଠୁ । ଚିରସ୍ତ ଜଗେଇ ମାହାନ୍ତି ପିଅଦା, ପଞ୍ଚନାହାଙ୍କୁ ଦାଖିଲ ଜମି ବସିଥାଏ—ଅଜ ମାଇପ ଘର ଅଡେ ଧାନକୁଟେ, ବାସନ ମାଜେ ।

ଏ ଜାତିଟାର ଜାତି ନାହିଁ । ଜାତିରୁ ବାହାର ଏମାନେ । ବାହାର ମାନେ, ସବୁ ଜାତିର ଉପରେ । ପ୍ରକୃତରେ ସବୁ ଜାତିର ଉପର ଏଇ ସେମାନଙ୍କ ଜାତିଟା । ମଣିଷର ନୁଙ୍ଗ୍ରା ପଣ, ପୁରୁଷର ସ୍ତ୍ରୀ ଜାତି ଉପରେ ଅତ୍ୟାଗ୍ରହ, ତାର ସାକ୍ଷୀ—ନାରୀର ସତ୍ୟପଥ ଭ୍ରଷ୍ଟ ସାକ୍ଷୀ ଦେଉଛି ଏଇ ଜାତି । ସମାଜର ଲଜ୍ଜା ସଂଯମକୁ ନିଜ ମୁଣ୍ଡରେ ବୋଝ କରି ନେଇ, ସମାଜର ଦୟା କରୁଣା ପାଇବାର ହକଦାର ହୋଇ ବି ତା' ବଦଳରେ ସମାଜର ଅତ୍ୟାଗ୍ରହକୁ ବରଣ କରିନେଇ, ସମାଜର ଧାରଣା ଅନୁସାରେ ସମାଜକୁ ପବିତ୍ର ରଖି ନିଜେ ଦୂଷିତ ହୋଇଛନ୍ତି ଏଇ ତ୍ୟାଗଶୀଳ ଜାତି—ବେଶ୍ୟା ଜାତି । ସେଥିପାଇଁ ଏ ସମସ୍ତଙ୍କ ଉପରେ ଏ ଜାତିର ଜାତି ନାହିଁ । ସବୁ ଜାତିର ସେମାନେ ଏକ । ଅଜାତିର ଜାତି ସେ ।

ଏ ଜାତିର ବହିଷ୍କାର ଡରନ୍ତି ନାହିଁ ରଜନୀ ପରି—ଯିଏ ଅଧରେ ବାହାରି ଘରେ ଅକାଳେ ସକାଳେ ରହିଗଲେ । ଏ ଜାତି ନାଁରେ ସମ୍ପଦ ଅଛି ଲୋଭ କେହି ଭରନ୍ତି ନାହିଁ, କହିଲେ, କେହି କାନ ଦିଅନ୍ତି ନାହିଁ । ସେଥିପାଇଁ ସେ ସମାଜର ଉପରେ ସମାଜର ହାତ ପାଆନ୍ତାରୁ ଦୂରରେ । ସମାଜ ତାଙ୍କୁ ଅଲଗା କରି ଦେଇଛି—ସେ ବି ସେଥିପାଇଁ ସମାଜକୁ ହତାଦର କରି ପିଙ୍ଗି ଦେଇଛନ୍ତି ।

ସମାଜ ତାର ଅପଣା ଲୋକକୁ ଅପଣାଠୁ ଅଲଗା କରି ଦୂରକୁ ପିଙ୍ଗି ଦେଉଛି ସିନା—ତା ପାଖେ ପାଖେ ତାର ଗଉରବ ଗୁମାନ ବି ଲେଉଟି ହୋଇ ପଡ଼ୁଥାଇଛି ଛଳେ । ଜାତି ଜାତି କରି ସେ ନିଜେ ନିଜକୁ ଟେକେଇ ଅଙ୍କଟରେ ବନ୍ଧିଛି—ସେଇଠି ତ ପିଟି ଯାଉଛି ତା ଜାତିର ମାନମହତ ସବୁ । ଗାଳି ଏଇ ନିଜର ଦୁର୍ବଳତା, ନିଜର

ସ୍ୱାପଣା ନିଜଠାରୁ ଅଲଗା ବୋଲି ଭାବିବାର ଚେଷ୍ଟା ତାକୁ ଖାଇଛି—ଅର୍ଥ କିଛି ନାହିଁ।

ଏଇ ଜଗେଇ ମାହାନ୍ତି କଥା। ଭିଲେଜର ମଜାଙ୍କ ସବୁଥିରେ ଜଗେଇ ମହାନ୍ତି କି ଭାଇ। ପଟ୍ଟନାୟକ ଘର କୁଳ ଦେବତା ଯେମିତି ଜଗେଇ ମାହାନ୍ତି। ଜଗେଇ ମହାନ୍ତି ନଇ ଘାଟଣା ଯାଇ ମଙ୍ଗଳେଇ ଦଏ। ଉଆସେ ଜଗେଇ ମାହାନ୍ତି ଟେକି, ଅନ୍ତର, ଚଳଅ, ଖୋଠଚୂଟ—ଟୋଲକମ୍। ପଟ୍ଟନାହାକ ଘରର ବର୍ଷେ ପୁଅ-ଡର ହୁଅ ନ ହେଲ ତ ଜଗେଇ ମାହାନ୍ତି ବହୂ ଥରକୁ ଝର ଚଢିଯାଏ। ପଟ୍ଟନାହକ ଘର ଜାହାର ବାଧିକ ହେଲ ତ ଜଗେଇ ମାହାନ୍ତି ମାଣ୍ଡଦନ ଇଟିବ।ଠସ ମନ୍ତ୍ର ମୁଣ୍ଡ ଉପରେ। ପଟ୍ଟନାହାକ ଘର ବାହା ବରତରେ ଜଗେଇ ମାହାନ୍ତି ହୁଏ ବେବର୍ତ୍ତ—ବର ଘରୁ ଅନୁକୂଳ କଲାବେଳେ ଜଗେଇ ମାହାନ୍ତି ବାନ୍ଧ ଦଏ ମୁଣ୍ଡର ପାଗ, ବହୂ ଘରକୁ ଅସିବା ବେଳେ ଜଗେଇ ମାହାନ୍ତି ଭିଡ଼ଅଡ଼େଇ ହେଇ ନଏ ବାଟ। ପଟ୍ଟନାୟକ ଘର ହିଂସ ପୁଅଙ୍କ ବୁଝି ପଢିବ ଜଗେଇ ମାହାନ୍ତି ବଳି ବସେ ଧାଳ ଦଉଡି—ପଛପଟେ—ମଙ୍ଗଳା ହୋଇ। ଅଉ ପଟ୍ଟନାହାକ ଘର ମହବାକୁ, ଗାଭକୁ ପିବାକୁ ଜଗେଇ ମାହାନ୍ତି ବାନ୍ଧରେ ଧଇଏ ବୋଲେଇ, ମୁହଁରେ ଗୁଞ୍ଜେ ନିଆଁ ଠେଣ୍ଡା।

ଭଗବାନ ଘରର ନିଜ ସୃଷ୍ଟିରେ ଜଗେଇ ମାହାନ୍ତି ବଡ଼ ସୃଷ୍ଟି ହେଇ ଅଛେ। ଧରମ ଦେବତା, ଯିଏ ଦନ ରାତ ବୁଲୁଛନ୍ତି ସେଇ ଜାଣନ୍ତି ଏ ଧର୍ମ ଜା'ର, ଜଗେଇ ମାହାନ୍ତିର କି ଏ ସାରା ଗାଁର।

ସେଥି ବର୍ଷେ ଜଣେ ସାଧୁ ଅସିଥିଲେ। ଗାଁର ଢ଼ିଘର ବୁଲି ଦେଖିଲେ। ସେ ଏକ ଅଦ୍ଭୁତ ବାବାଜୀ। ବାଜୀ ଫାବାଦ୍ଧ କିଛି ନାହାନ୍ତି, ସାଦାସିଧା ମଣିଷଟା ପଛ, ଭିତରେ ଅନୁକୋଟି ଗୁଣ। ସେ ଏଠେ ଜାଗା ବୁଲି ବୁଲି ଶେଷରେ ଜଗେଇ ମାହାନ୍ତି ଘରକୁ

ଆସି ପହଞ୍ଚିଲା କ୍ଷଣି, ତାଙ୍କୁ ଗୁଟାଏ ଦଣ୍ଡବତ କରିବ କଣ, ଓଲଟି ସେ ଜଗେଇ ମାହାନ୍ତି ବାବୁ ଗୋଡ଼ତଳେ ଲମ୍ବ ତମ୍ବ ହି ପଡ଼ିଗଲେ । ସମସ୍ତେ କହିଲେ—ଅଧର୍ମ ହେଲା—ଅଧର୍ମ ହେଲା—ଜଗେଇ ମାହାନ୍ତି ଘରେ ଅଧର୍ମ ହେଲା—ଜଗେଇ ମାହାନ୍ତି ବୋହୁ ଆଉ ବଞ୍ଚିବ ନାହିଁ । କିନ୍ତୁ ସେ ଅଦ୍ୟାପି ବଞ୍ଚିଛି ।

ଦୁଃଖିଆ ବାବାଜୀ ବଇଷ୍ଣବଙ୍କୁ ସେତେ ମାନେ ନାହିଁ । ତାହେ ସେଗୁଡ଼ାକ ଠକ, ଅଲସୁଆ କୋଢ଼ି । କିନ୍ତୁ ତା 'ବୋଲି ସେ କାହାକୁ ହତାଦର କରେ ନାହିଁ । ଏ ବାବାଜୀଙ୍କ ସାଙ୍ଗରେ ସେ ଅନେକ ଯୁକ୍ତି କଲା । ବାବାଜୀଙ୍କୁ ପଚାରିଲା—ଜଗେଇ ମାହାନ୍ତି ବାବୁର କି ଗୁଣ ପାଇଲେ ସେ ଉଦ୍ଧାର ହେବେ ?

ବାବାଜୀ କେମନ୍ତେ ଗୋଟିଏ ଗପ କହିଲେ । କହିଲେ—ଗୋଟିଏ ବ୍ରାହ୍ମଣ ଶାସନ ଥାଏ ଯେ ସେ ଶାସନରେ ସବୁ ବ୍ରାହ୍ମଣଙ୍କର ଘରେ ଘରେ ହୋମ କୁଣ୍ଡ—ଅଗ୍ନିହୋତ୍ରୀ ବଂଶ । ଦିନେ ଜଣେ ବ୍ରାହ୍ମଣ ସକାଳୁ ହୋମକୁଣ୍ଡ ସଫା କରୁ କରୁ ଦେଖିଲା, ମୁଣ୍ଡାଏ ସୁନା । ସୁନା ମୁଣ୍ଡା କାହୁଁ ଆସିଲା ବୋଲି ସେ ବହୁତ ଅନୁସନ୍ଧାନ କରି କିଛି ପାଇଲା ନାହିଁ । ଶେଷରେ ତାର ବନ୍ଧୁ ମାନଙ୍କର, ଆଗ ଦିନ ସତରେ ତାଙ୍କୁ ଭାରି ପରିସ୍ତା ଲାଗିବାରୁ ସେ ଡରେ ବାହାରକୁ ନଯାଇ ହୋମ କୁଣ୍ଡରେ ମୂତି ଦେଇଥିଲା । ହୋମ କୁଣ୍ଡରେ ମୂତିଲେ କଣ ସୁନାମୁଣ୍ଡା ହୁଏ ? ବ୍ରାହ୍ମଣ ତା ବନ୍ଧୁକୁ ସେ ଦିନ ବି ମୂତିବାକୁ କହିଲା—ପରୀକ୍ଷା କରିବା ପାଇଁ । ସତକୁ ସତ ତହିଁ ଆରଦିନ ଅଧେ ମୁଣ୍ଡାଏ ସୁନା । ଏହିତ ବ୍ରାହ୍ମଣ ସବୁଦିନେ ମୁଣ୍ଡାଏ ଲେଖା ସୁନା ଖାଇଲା । ଖବରଟାକୁ ଯେତେ ଲୁଚେଇଲା ସେ, ଆଉ ଲୁଚିଲା ନାହିଁ । ଗାଁ ଯାକ ସମସ୍ତେ ଜାଣିଲେ । ସମସ୍ତଙ୍କ ବନ୍ଧୁ ଯଜ୍ଞ କୁଣ୍ଡରେ ମୂତିବା ଆରମ୍ଭ କରିଦେଲେ । ସମସ୍ତେ ପ୍ରତିଦିନ ସକାଳୁ ପାଇଲେ ସୁନା

ମୁଣ୍ଡାଏ କର । କେବଳ ଗୋଟିଏ ବାହ୍ମଣ ଥାଏ, ତା ବାହ୍ମଣୀ ମୁଣ୍ଡକ ବେଇଲ ଯେତେ ଗିରସ୍ତଙ୍କୁ କହେ—ଗିରସ୍ତ ଅଡ ମାନେନ ନାହିଁ, ହଁ କରେ ନାହିଁ । ସମସ୍ତଙ୍କର ଭୋଠା ବାଉ ଦିଶା ହେଲା । କିନ୍ତୁ ଏ ବାହ୍ମଣର ଯଜ୍ଞ କୁଣ୍ଡଅଙ୍କୁ ସେଇ କୁଣ୍ଡଅ । ବାହ୍ମଣୀ ଭଲ କରେ ଜଡ, ବାହ୍ମଣ ଶୁଣେ ନାହିଁ । ଦିନେ ଲହାଡ କରକ୍ତ ଭବବାରୁ ବାହ୍ମଣ କହିଲା—ହଇଲେ, ଅମର ପାଇ ଏ ଟାଁ ରହିଲା, ନଇଲେ ରସାତଳକୁ ଯାଆନ୍ତାଣି । ବାହ୍ମଣୀ ବିଶ୍ୱାସ କଲା ନାହିଁ ।ବ୍ରାହ୍ମଣ ସେଠୁ ବାହ୍ମଣୀକୁ କହିଲା—ଅଗ୍ଯ ତମେ ଏ ଗାଁରୁ ବାହାରି ଗୁଲ । ଯଦି କିଛୁ ଦୁର୍ଘଟଣା ଘଟେ ତମେ ଦାୟୀ । ବାହ୍ମଣ ବାହ୍ମଣୀ ସେ ଗାଁରୁ ବାହାରି ଯାଇ ଖଣ୍ଡେ ଦୂରରେ ଅଉ ଏକ ଗାଁରେ ରହିଲେ । ହଠାତ୍ ଦିନେ ଶୁଣିଲେ ସେ ଗାଁଟା ପାକ କେବେ ମାର ହାଣରେ ଲଟିଛନ୍ତି । ବଳୁଅ ଲୋକେ ଜଣକା ଦ'ଡଳନ୍ଟା କର ହୋମ କୁଣ୍ଡ ମାଝ ବସି-ଚନ୍ତି । ତମେ ଗାଁଟା ଏରଡା ଅରଣ୍ୟ ପାଲଟି ଗଲା । ତା ଦେଖି ବାହ୍ମଣ କହିଲା, ବାହ୍ମଣୀ ଏଥର ଗୁଲ, ଗାଁଟା ଧ୍ୱଂସ ହୋଇଗଲା । ତାପରେ ବାହ୍ମଣ ବାହ୍ମଣୀ ଫେରିଲେ, ଗାଁଟା ଶାନ୍ତ ହେଲା । ଅନ୍ତତଃ ଗୋଟାଏ ଲୋକକୁ ନିର୍ଲୋଭ ନିରହଙ୍କାର ଦେଖି ଟାଁ ଲୋକଙ୍କ ପଡକୁ ଲଳସା, ଲୋଭ କମିଗଲା ।

ଏଟାଁରେ ଜଟଗଲ ମାହାତ୍ମ୍ୟ ଘର ସେମିତ—ଏ - ଟାଁଟାକୁ ଟେକି ଧରିଛି । ଗୃହଦାନ ଜଟଗଇ ମାହାତ୍ମ୍ୟ ବହି ଏ ଯେ ଭାଗବତ ଘରେ ସଞ୍ଜ ଜାଳି ଦେଇପାଏ ଖାଲି, ସେଇଥିରେ ଯେ ସେ ଏ ଟାଁର ଧର୍ମକୁ ଜଟିଛି, ତା ନୁହେଁ । ଜଟଗଇ ମାହାତ୍ମ୍ୟ ବଂଶର ଅନେକ ଗୁଣ । ପରହାଇଁ ସେ ସାଂସ ସମ୍ପତ୍ତି ଘର ଦ୍ୱାର ଲକ୍ଷ୍ମ ଦେଇ ପାରେ । ଏମିତ ଲୋକ ସେ ।

ସୂର୍ଯ୍ୟ ବୁଡ଼ି ଯାଆନ୍ତି । ଗୁରୁଅଡ଼ ଅନ୍ଧାର । ଜଣେ ମାହାନ୍ତ ବାହୁ ସଢେ ଯେମିତି ଠାକୁରଦୀପ ଜାଳିଦେଇଯାଏ । ଧର୍ମ କ'ଣ ଏଇ ଦୀପ ଜଳାଇବା—ଏଇ ସଞ୍ଜ ଦେବାରେ ଥାଏ ? ଦିନୁଟିଏ ସଞ୍ଜ ଦେଇ ହୁଡ଼ିଲା ତ ଜଗା ଘରେ ଅସନ୍ଧ ଅବାଡ଼, କଳି କଜିଆ । ଦିହ ଦୁଃସ୍ଥରେ ବି ଜଗାବୋହୂ କୁନ୍ଥେଇ କୁନ୍ଥେଇ ସଞ୍ଜ ବଳିତା ଲଗେଇ ଦେଇଯାଏ । ଏ ଯୁଗର ଧରମ ଜଗାବୋହୂକୁ ହସୁଥିବ । ଏ ଯୁଗର ଧରମ ଚରଚ ନାଇଟିରେ ମିଟି ମିଟି ଭରୁ ଗୃହୁଁଥିବ । ସେ ଚଳାଇଛି ଯେତେବେଳେ ଇଚ୍ଛା ସେତେବେଳେ ଜଳେ— ଯେତେବେଳେ ଇଚ୍ଛା ସେତେବେଳେ ନିଭେ । ମଣିଷର ଗୋଲାମ ସେ । ଏଇ ଗୋଲାମ ଜାତିଟା ପର ।

କିନ୍ତୁ ଏ ସଞ୍ଜ ବତୀ ଆଉ ମଣିଷ ମନ ସେଭଳି ନ ଜଳନ୍ତି । ମଣିଷ ମନ କଲେ ତାକୁ ଲିଭେଇ ପାରିବ ନାହିଁ । ମଣିଷ ଯେମିତି ତାର ଗୋଲାମ ହୋଇ ରହିଛି—ଜବରଦସ୍ତି ନୁହେଁ—ଆପେ ଆପେ । ଏତେବଡ଼ ଗାଁଟାରେ ଏତେ ଏତେ ଲୋକଙ୍କମାନ ଥାଇଁ ଥାଇଁ ଏଇ ଗୋଟିଏ ମଣିଷ ଜଗେଇ ମାହାନ୍ତି କି କେହି ଜବରଦସ୍ତି କରି ରଖି ପାରନ୍ତା ? ଜଗେଇ ମାହାନ୍ତି କଲେ କଲେ ଅଜାଣାନ୍ତେ ତାର ଗୋଲାମ ହୋଇଯାଇଛି । ଏ ଦୀପ ସେଇ ଚୁପି ଚୁପିତା ଗୋଲାମ୍ ହେବାର କବରନାମା ।

ନିଧିଆ ବୋଉ କହେ—ପୁରୁଣାକୁ ଧରି ରଖିବାର ଗୋଟେ ମୋହ ଥାଏ । ପୁରୁଣା ଉପରେ ମମତା କରି ମଣିଷର ମନ ରହିଣିଆ ଗନ୍ଧ ଧରି ଅସେ । ଏଟା କି କ'ଣ ସେମିତି ?

ଦୁଖିଦାଶ କହେ—ପୁରୁଣା ଦଦରକୁ ଭାଙ୍ଗି ଦବାକୁ ହବ । କିନ୍ତୁ ଏ ସଞ୍ଜ ଯେ ନିତି ନିତ ନୂଆ ବଳିତାରେ ଜଳୁଚି—ତଥାପି କଣ ପୁରୁଣା ? ତଥାପି ସଞ୍ଜ ଦୀପକୁ ଭାଙ୍ଗି ଦେବାପାଇଁ ପଡ଼ିବ ?

ଏ ଗାଁର ପାଠପଢ଼ୁଆ ବାବୁମାନଙ୍କ ଘରେ ସଞ୍ଜ ବତୀ ତ ପଡ଼ୁ ନାହିଁ ଅଛି । ସମସ୍ତଙ୍କ ଘରୁ ଏବେ ସଞ୍ଜ ବୁଡ଼ିଲେ ଶଙ୍ଖ ହୁଳହୁଳି ଶୁଭେ ନାହିଁ ଅଛି । ସେମାନେ କଣ ଏଠାକୁ ପୁରୁଣା ବୋଲି, ଦାଦରା ବୋଲି ଭ୍ରଙ୍ଗି ଦେଉଛନ୍ତି ?

ଧନୀ ମାଷ୍ଟର କହେ—ଶିଖା କାଟିଲେ, ମାଳା ଫିଙ୍ଗିଲେ, କ'ଣ ଧରମ ହୁଏ ? ଖାଲି ଦୁର୍ବଳ ଅଛୁ ବୋଲି ପଞ୍ଚକ ପାଳିଲେ, ଏକାଦଶୀ କଲେ କ'ଣ ଭଗବାନ୍ ମିଳନ୍ତି ? ସେମିତି ସଞ୍ଜ ଦେଲେ କଣ ଧରମ ରହେ ? କହୁବା କଥା ।

ରସିକ ବାବୁ ଘର ସେ ବୁଢ଼ୀ ମା ଏକା କହୁଥିଲା—"ନିସ୍ତା—ନିସ୍ତା—ଏ କଥା ତ୍ରି ନିଦାନ ଜାଣିଥା—ଏଇ ନିସ୍ତାରେ ବଡ଼ ପରାପର ହୁଅନ୍ତି ।" ବୁଢ଼ୀ ମରିଗଲାଣି । ନିସ୍ତାରେ ବଡ଼ ବଡ଼ ବୁଢ଼ୀ ଅନେକ ଦିନ ବଞ୍ଚିଲେ—ଜୀବନଟାକୁ କଲବଲ କଲା ଖାଲି । ପୁଅ ନାତି କେହି ପଚାରନ୍ତି ନାହିଁ । ପୁଅ ହାକିମ । ସେ ତା' ପିଲାମାଇପ ନେଇ କୁଆଡ଼େ ଥାଏ । ବୁଢ଼ୀକି ସେ ନିଅନ୍ତି ନାହିଁ କି ବୁଢ଼ୀ ଯାଏ ନାହିଁ ସେଠିକି । ବୁଢ଼ୀ ଗଲା ତାଙ୍କୁ ଅଡ଼ୁଆ, ବୁଢ଼ୀକୁ ବି ଅଡ଼ୁଆ । ବୁଢ଼ୀ କହେ—"ଅବର୍ଯ୍ୟା, ଅନ୍ୟାଗ୍ରର,—ଏ ଘରେ ଅନ୍ୟାଗ୍ରର ପଶିଲା—ପୁଅ ସାଇବ ହେଲା—ବୋହୂ ମେଏମ୍ । ଘରେ ପାଣ ପଠାଣ ପଶିଲେ । ଝଣ୍ଟାମାଉଁସ ଲକ୍ଷ୍ମୀ ହାଣ୍ଡିଶାଳକୁ ଗଲା, ଗୋରୁ ଗାଈ କାହିଁ ଗଲେ, ପଳାଗଲେ କୁକୁଡ଼ା ଛେଳି । ଶୁଆ ସାରୀ ହରି-ନାମ ପଢ଼ନ୍ତି ନାହିଁ—ଭୋଳରେ ଶେଷରେ ଶୁଭନ୍ତି କୁକୁର ବଲେଇ । ମହାର୍ଦ୍ଧ ତୁଳସୀ ପିଢ଼ କୁଆଡ଼େ ଗଲା—ଆହିଲ ଗୁ' ବସନ୍ତିହି । ହାତଗୋଡ଼ ଧୋଇ ଲୁଗା ପାଲଟି ଖାଇ ବସିବା କୁଆଡ଼େ ଗଲା—ପୋଡ଼ା ମଞ୍ଜା ଚିହ୍ନି କଣ୍ଟା ଗୁମଚରେ ଖିଅ ଚୁଲିଲା । ଘରେ ଅଛି ଗୋବର ପାଣି ପଡ଼ୁ ନାହିଁ । ଚମଡ଼ା ଜୋତା ଦେଇ ଘର ଭିତରେ

ନଅର ଯଅର । ଏତେ ଅଣଅସ୍ତୁର ଧର୍ମ ସହିବ ? ଲକ୍ଷ୍ମୀ ଛାଡ଼ିଯିବ—ଲକ୍ଷ୍ମୀ ଛାଡ଼ିଯିବ ଏ ଘରୁ ।”

ବୁଢ଼ୀ ଲକ୍ଷ୍ମୀ ଛାଡ଼ିଯିବ—ଲକ୍ଷ୍ମୀ ଛାଡ଼ିଯିବ ବୋଲି କହୁ କହୁ ନିଜେ ଛାଡ଼ି ଚାଲିଗଲା, ହେଲେ ଲକ୍ଷ୍ମୀ ତ ଗଲେ ନାହିଁ ବାହୁଁ ! ଅଧିକ ବଢ଼ନ୍ତି ହେବାକୁ ଲାଗିଲେ ।

ଏଇଲେ ପଟ୍ଟନାୟକ ପତ୍ରା ଗୋଷ୍ଠୀକରେ ଯଦି ଭଲରେ କେହି ଚଳୁଥାଏ, ସେ ହେଉଛନ୍ତି, ରସିକ ପଟ୍ଟନାୟକ । ରସିକ-ପଟ୍ଟନାୟକଙ୍କୁ ଡାକ ଦେବା ଭଳିଆ ଲୋକ ଏବେ ସେ କେଉଁଖଣ୍ଡ ଅଣ ଆଖ ଗାଁରେ ହେଲେ ହେବେ ଭଗବାନ ମିଶ୍ର କି ସ୍ୱରୂପ ଦାସ ।

ରସିକପଟ୍ଟନାୟକଙ୍କ ସାନଭାଇ ମୋହନ ପଟ୍ଟନାୟକ ଘରେ ବୁଝାଶୁଣା କରନ୍ତି । ସେ ଅଳ୍ପ ଭାଇଙ୍କ ଭଳି ଚାକିରି ବାହାରି ଗଲେ ନାହିଁ, ଫେରି ହୋଇ ରହିଗଲେ ଘରେ । ପୁଣି ଘର ତ ଦେଖାଶୁଣା କରନ୍ତା ଜଣେ କେହି । ବ’ଭାଇଙ୍କ ଚାକିରି କରିଥିଲେ ଚଳି ଯାଆନ୍ତା କିମିତି ଏଣେ । ଏଇ ଯେ ଜମି ଜଗରେ ଜମି ପୁଣି ଜମିଦାରୀ ବିଣା ଚାଲିଛି ସେ ସବୁ କରନ୍ତା କିଏ ? ଠିକ୍ ରସିକ ପଟ୍ଟନାୟକର ଅଳ୍ପ ବୁଦ୍ଧିବଳ ମିହନତ ସବୁ ମୋହନର । ଦୁଇ ଭାଇଙ୍କ ଭିତରେ ଭଲପଣ । ନ ପଡ଼ିବ କାହିଁକି ? ଦୁଇଜଣ ଯାକ ଅଲଗା ଅଲଗା । ପାଖ ପାଖରେ ରହିଲେ ସିନା ଯା’ ଦୁର୍ଗୁଣ ତାକୁ ଦିଶିବ ତା ଦୁର୍ଗୁଣ ଯାକୁ ଦିଶିବ । ଦୂରରେ ରହିଲେ କେହି କାହାର ସୁଖରେ ଅନ୍ତରା କରିବ ନାହିଁ । ଯେଝା ସୁଖରେ ଯେଝିଏ ଥାଆନ୍ତି । ଗୋଟିଏ ଭାଇ ବାହାରେ ହାକିମ ତ ଅନ୍ୟ ଗୋଟିଏ ଭାଇ

ଘରେ । ରସିକ ପଟ୍ଟନାୟକ କହୁଥିବେ—"ମୋହନ ନଥିଲେ ଚଳନ୍ତା ଢିଏ ।" ମୋହନ ପଟ୍ଟନାୟକ କହୁଥିବେ ଓର ସେଇଗାଁରେ ସେ କିଏ ମୋ ଜୁଟି । କେହୁ ତାହାକୁ ଛୁଇଁ ପାରନ୍ତି ନାହିଁ ।

ପୂଜା ପାର୍ବଣରୁ ରସିକ ପଟ୍ଟନାୟକେ ଅସନ୍ତ—ବର୍ଷେ ଦଶବର୍ଷେ ଥରେ । ଖିଅ ପିଅ, ଯାତ୍ରାପାଠସ ଧୂମ୍ ଧାମ୍ ଚାଲେ । ସେଥର ରସିକ ପଟ୍ଟନାୟକ ସମ୍ଭ ସାହେବ ହେଲେ । ଗାଁରେ ଦୁଃଖି ରଙ୍କି ଗରିବଙ୍କୁ ଲୁଗା ବାଣ୍ଟି ଦେଲେ—ମୋହନପଟ୍ଟନାୟକ । ଲୋକେ ବାହବା ବୋଇଲେ । ରସିକ ଅନ୍ତର ଜଳ ସାହୁଅକୁ ଚଢ଼ିଲେ । କମେ କମେ କର୍ଜର ବଡ଼ ଡାକ୍ତମ ହେଲେ । ତାଂ ଲୋକେ ଖାଲି ଶୁଣନ୍ତି ଯାହା—ଫଳେସ୍ପଷ୍ଟେ କିଛି ପାଉନ୍ତି ନାହିଁ—କିଛି ଧନକୁ ମନେ ରଖିବା ପାଇଁ । ଅପେ ଯାଣ ଦବା ଦୂରେ ଥାଉ, ଭଲରେ ମନ୍ଦରେ ବା ଉଲଟାମରେ ମୋହନ ପଟ୍ଟନାୟକଙ୍କ ପାଖକୁ ଗଲେ, ସେ କହନ୍ତି—ଆମେ କ'ଣ ଦୁହାଁଳ ଗାଈ ହେଉଛୁ ?—ଯାହାର ଯାହା ଦରକାର ହେବ, ଯେତେବେଳେ ପାରେ ସେତେବେଳେ ଦଉଡ଼ି ଆସିବ ଏଠିକି ?—ନା—ନା ହବ ନାହିଁ, ମଦନ ପଟ୍ଟ-ନାୟକ ଘରକୁ ଚାଲିଯାଅ ନା—"

ଗାଁର ସେମୁଣ୍ଡରେ ମଦନପଟ୍ଟନାୟକଙ୍କ ଘର । ଭାଙ୍ଗୁଡ଼ା ହୋଇ ନାହିଁ—ହେବା ଉପରେ । ପଥର ଚୁଣ୍ଡ କେଇଟାରେ ଚୂନ ଲଗି ନାହିଁ । ଇଟା ଗୁଡ଼ୁଗୀ ମଝିରେ କେଉଁ ବରଷିକା ପକା ହାନ୍ଦୁ ପଲସ୍ତରା ଖଣ୍ଡ ଖସିଛି । ଠାଏ ଠାଏ ଖାଲି ପଥର ପର ପଡ଼ିଛି । ସମାଜରେ ଏ ମଦନ ପଟ୍ଟନାୟକ ଭାଉଟା ଯେମିତି ଖାଲିପଥର ପର ରହିଛି । ସେ ବି ଝୁଣ୍ଡି ପଡ଼ିବ । ପୁରୁଣା ପଲସ୍ତରା ପାଙ୍ଗରେ ତାର ବି ଲାଗି ନପଡ଼ି ଆଉ ଗତି କ'ଣ—

ସାଇ ମଝିରେ ରସିକ ପଟ୍ଟନାୟକ ଘର । ମାଟି ଭାନ୍ତୁର ଘର ଉଭେଇଗଲା ବରଷ କେଇଟାରେ । ପଟା ଉପରେ ପଟା ବାଉଁଶ ଲଗୁଚି । ଏକତଲା—ଏକତାଲା ଉପରେ ପୁଣି ଦୋତାଲା । ଅଙ୍କ ଏଠି ତ ଡାଲ୍ ସେଠି । ମାଟି ଘର ବୋଲି ଆଉ ବଖରାଏ ବି ନାହିଁ—ହାଣ୍ଡିଶାଳ, ଢେଙ୍କି ଗୁଳି, ଗୁହାଳ ଛଡ଼ା ।

ଗୁଳବସା । ସରକାରୀ ଗୁଳିବସାର ମୁନାଫା । ଏ ଗୁଳବସା, ବସିଅଛୁ ରସିକ ବାବୁ—ରସିକ ଶେଖର ପଟ୍ଟନାୟକ ବରଦଏ । ବାବୁଙ୍କ ସାହେବ ପାଲଟି ଯାନ୍ତି ମଣିଷ । ଲୁଗାକୁ ପିଅଣ୍ଟ କୋଟ ହୁଏ । ଖାଲି ବିଡ଼ିରୁ ଧଳା ସିଗାରେଟ୍—ତହିଁରୁ ପୁଣି ଲମ୍ବ ଚୁରୁଟ ଯାଏଁ ଉଠି ଲଟି ଗୁଲ୍‌ଥାଏ ଅସଳ । ସମାଜରେ ଏଇ ରସିକ ପଟ୍ଟନାୟକ ସବୁ ନୂଆ, ଡାଙ୍ଗା, ଏଇ ନୂଆ ସଭ୍ୟତାର ଫଳ । ସମାଜର ମେରୁଦଣ୍ଡ ଏ—ମାପ କାଠି ଏ । ଯୁଏଙ୍କର ଦୁଆରୁ ଗାଁର ପଦବଗଣ । ଯୁଏଙ୍କ ଗରହାଜରରେ ଯେମିତି ଘରଟା ଉମଳୁଛି, ଗାଁଟାପାଉ ବି ସେମିତି ଲୁଷି ମୁଲିଅଙ୍କ ଗରହାଜରରେ ଜମିବ ଉଠିବ ?

ଏଇ ଯେ ଟିଏ ପଡ଼ନ୍ତା ଯେ ହିଁଏ ଉଠନ୍ତା ଘର ପଛଅଡ଼େ ଶୁଖ ଖଣ୍ଡ ଘର, ସେ ସେମିତି ଚିରଦିନ ପଡ଼ି ରହୁଛି । ସେ ଘର ସବୁ କେତେ ମାଟିରେ ମିଶିଯାଉଛି, ପୁଣି କେତେ ନୂଆ ତିଆରି ହେଇ ଯାଉଛି—ଦିନ କେଇଟା ଭିତରେ । ଗଢ଼ିବା ପାଇଁ ସମୟ ଲାଗେ ନାହିଁ କି ଭାଙ୍ଗିବା ପାଇଁ ସମୟ ଲାଗେ ନାହିଁ । ଉପରେ ଏଇ ପକ୍କା ଘର ଗଢ଼ିବାକୁ ବରଷ ବରଷ ପୁରୁଷ ପୁରୁଷ ଲାଗି ଯାଉଛି, ପୁଣି ପଡ଼ିବାକୁ ବି ସମୟ ଲାଗୁଛି, ତା ଜାଗାରେ ଆଉ ଘର ସେଇ ଭଳି ଅଡ଼ା ତଉଡ଼ାରେ ଗଢ଼ି ଉଠିଲେ, ଏଇ ଖଣ୍ଡ ଖଣ୍ଡ କୁଡ଼ିଆ ଦେହକୁ ଆଉ ବି ଆନନ୍ଦ ନାହିଁ । ମଦନ ପଟ୍ଟନାୟକେ ଯାଇ ରସିକ ପଟ୍ଟନାୟକେ ଆସିବେ—ନହେଲେ ଆସିବ ସହାସ ପଟ୍ଟନାୟକ ।

ଏ ଦେଶର ଶବ, ଦୁଃଖୀ ଧନୀଙ୍କର ଯେଉଁ ଅବସ୍ଥାକୁ ସେଇ ଅବସ୍ଥା । ତାଙ୍କର ଉଠିବା ପଡ଼ିବା ସେଇ ଗାଁ ଅବପଃ ଧାନ କ୍ଷେତରେ—ହୁଡ଼ମାଟିରେ—ଉଷ୍ମ ମୁଠି ଅଡ ଧମୁଟି ହୁଡ଼ମାଟିରେ । ଦଇବ ଦୁର୍ବିପାକ ନହେଲେ, ବନ୍ୟା ବା ଅନାବୃଷ୍ଟି ନହେଲେ, ଏଇ ହୁଡ଼-ମାଟି ତାଙ୍କୁ ପତାଏ ନାହିଁ ବା ସେ ହୁଡ଼ମାଟିକୁ ଅଣହେଳା କର ଘଟେଇ ଦିଅନ୍ତି ନାହିଁ । ବରଷ ତରଷ ମାଟି ପଡ଼ ଗ୍ଲୁଲଥାଏ—ଉଷ୍ମ ମୁଠି, ଅଡ ଦମୁଟି । କେହି ଆଉ ଛୁଟେ ନାହିଁ ଦେଶ ବାମରେ । ଛୁଟିଲେ ବି ଛୁଟିବ ବରଷେ—ଦଶ ଛୁଟେ ବରଷେ । ଆଉ ବରଷକୁ ସାବଧାନ । ଯେ ବଡ ଘରଙ୍କ ପର ଅରେ ଛୁଟିଲେ ପୂରୁଷ ପୂରୁଷ ଭୋଗିବାକୁ ପଡ଼େ ନାହିଁ ।

ଏଇ ଶହ ଶହ ନୁଖୁରୁ ଘନ୍ତୁ ରଂଚତ ଅଣି ଗାଁରେ ଏଇ କେଇଟା କୋଠାଘର ଉଅଛି । ସେଠି ମଣିଷ ବସି ହୁକା ଟାଣନ୍ତି—ସିଗାରେଟ୍ ଧୂଆଁ ଛାଡ଼ନ୍ତି, ପଢାଘରର ଗ୍ଲାସ ତଳେ । ଏଇ ପଛି ଶହ ଶହ କୁଡ଼ିଆ ଦରର ମଣିଷ ସେ ବଇଶାଖି ଖରାରେ ଲଙ୍ଗଳଗାର ବାଟି ଉଟିଫଟେଇ ଗୁହାଁ ବସିଥାଏ—'ଅଇଲା ଟେକ ତେଙ୍ଗା ଶ୍ରାବଣ, ଭୋତୁଅ ତରଣ ଦନ, ଅଶିନ ମସରେ ଗହଳା ଗହଳ କାର୍ତ୍ତିକେ ମିଳିତ ଧନ ।'

ଏଇ ଶହ ଶହ ଘରର—ପର ଲୋକଙ୍କର କିଛି ପରବର୍ତ୍ତିକ ନାହିଁ । ତାଙ୍କ ପୁଷମାହକୁ ପଡ ଛଡ଼ାଇ ନିଏ । ଦେଇଯାଏ ସବ-ନାଶକୁ ।

ତଥାପି ଏଇ ଶହ ଶହ ଘରର ହିଂସା ନାହିଁ, ଦ୍ୱେଷ ନାହିଁ ଏଇ ବଡବଡିଆ ସମାଜର ମୁଖିଆ କେଇ ଘରକୁ । ହିଂସା ସେଇ ବଡ ବଡଙ୍କ ଭିତରେ । ତାଙ୍କ ହିଂସାର ଗନ୍ଧଟା କେତେବେଳେ କମିତ ଆସି ଏଇ ଶହ ଶହ ଲୋକଙ୍କ ଉପରେ ପଡେ । ସେଇ ବଡ

ଘର ଶିଖେଇ ଦଅନ୍ତି—ଦେଇ ଦଅନ୍ତି—ହିଂସା କରିବାକୁ, ତଥାପି ତାଙ୍କର ନିଜ ନିଜ ଭିତରେ ହିଂସା—କେହି କାହାର ଶିରୀ ଦେଖି ନ ପାରିବାଟା ପାଣିର ଗାରପରି—କେତେ ଦେଉଛି—ପୁଣି ମିଳେଇ ଯାଉଛି ।

ରସିକ ପଟ୍ଟନାୟକ ଘର ବଢ଼ନ୍ତି ତ, ମଦନ ପଟ୍ଟନାୟକ ଘର ଦେଖି ପାରନ୍ତି ନାହିଁ—ସହି ପାରନ୍ତି ନାହିଁ । ସେ କଥା ଏଇ ଖଡ଼ ଖଡ଼ ନୁଖୁରା ଗୁଳ ଘରେ ପାଇବ ନାହିଁ । ସେଠ ଅପଣା ହକ ପାଇଁ ଲୋକେ କଳି କରନ୍ତି କିନ୍ତୁ ପରର ଉଡ଼ମା ଦେଖି ଛୁଡ଼ ପଡ଼ନ୍ତି ନାହିଁ ।

ରସିକ ପଟ୍ଟନାୟକଙ୍କ ଉପରେ ରାଗଟା ବୁଢ଼ା ମଦନପଟ୍ଟନାୟକ ତାଙ୍କ ଘୋଡ଼ା ପୁଅ ଉପରେ ଛୁଡ଼ାନ୍ତି—"ଅକର୍ମଣ୍ୟ—ଅପଦାର୍ଥ, ଅକାଳକୁଷ୍ମାଣ୍ଡ ! ପାଠ ପଢ଼ିଥିଲେ କ'ଣ ତୁ ଅମର ରସିଆଠୁଁ ଭଲ ହାକିମଟାଏ ହେଇ ନ ଥାନ୍ତୁ !"

ଏଣେ ରସିକ ପଟ୍ଟନାୟକଙ୍କୁ ଯେତେ ନିନ୍ଦା କରୁଥାନ୍ତୁ ପଛେ ଗରଜବେଳେ ମଦନପଟ୍ଟନାୟକ ଯାଇ ମୋହନପଟ୍ଟନାୟକ ଆଗରେ ହାତପାତି ଦଅନ୍ତି । ଭଗିମିଶ୍ରଙ୍କ ପାଖକୁ ଯାଇ ଯାଇ ଲାଜ ମାଡ଼ିଲାଣି । କେତେବେଳେ କମିତ ଭଗବାନଙ୍କ ପାଖକୁ ଯେ ନଯାନ୍ତି ତା' ନୁହେଁ । ତେତେବେଳେ ବଗୁରନ୍ତି—ମୋହନ ପାଖରେ ହାତ ପାତିବାଠୁଁ ଭଗବାନ ମିଶ୍ରର ଗୋଡ ଧରିବା ଷନ୍ଦଗୁଣେ ଶ୍ରେୟ । ମୋହନଟା ଅପଣା ବଢ଼ିମା ଗାଇ ବୁଲେ । ଯାହା ଅଗରେ ପାରେ ତା' ଅଗରେ କହିଦଏ ଯେ ଅମୁକ ଲୋକ ତା' ପାଖରୁ ଧାରିଛି ।

ପାଟପୁର ଉଡ଼ ଖଣ୍ଡିକ ପାଇଁ ତେଣେ ଭଗବାନ ମିଶ୍ରେ ଅଟେଇଛନ୍ତି ତ ଏଣେ ରସିକ ପଟ୍ଟନାୟକ ତରଫ ମୋହନ ପଟ୍ଟନାୟକ । ଦୁହିଁଙ୍କର ଟଙ୍କା ଅଛି ବାକି । ମଦନ ପଟ୍ଟନାୟକ

ବୁଢ଼ିଙ୍କର ଧାରଣା । ତେବେ ବେଶୀ ଝଙ୍କା ଭଗବାନ ଈଶ୍ୱର । ସେ ଦାବୀ କରନ୍ତି, ତାଙ୍କର ଯେହେତୁ ପାଉଣା ବେଶି, ଅତଏବ ପାଟପୁର ଉପରେ ହକ ତାଙ୍କର । ମୋହନ ଅପି କହନ୍ତି—ମଦନାଧ, ତମେ ପାଟପୁର ବଳବ ତ ମୋତେ ଅଗେ ମାରିବ ।

ମଦନାଧ କହନ୍ତି—'କ'ଣ ! ପାଟପୁର ? ପାଟପୁର ମୁଁ ଛାଡ଼ି ଦେବ ! ତମେ ସବୁ ମୋର ଏତେ ଶୁଭରେ ଅଛ ନା ? ପାଟପୁର ମୋର ସାତହାଣ୍ଡି—ମୁଁ ପାଟପୁର ଛାଡ଼ିଦେବି !'

"ମୁଁ କଣ କହୁଛି—ଛାଡ଼ିଦେବାକୁ ଏମିତେ ? ଚୋରଁ ସ୍ବେର ଚଣ୍ଡାଳ କହିବ ସେ କଥା, ମୁଁ ଶୁଣିଲା କଥା କହୁଛି । ଲୋକେ ଯେ କ'ଣ ନ କହନ୍ତି ! ଶୁଣିଲାଯଣି ମୁଁ ତ ସେଇଆ କହୁଲି—ପାଟପୁର ଜମିଦାରୀ ପର ସମ୍ପତ୍ତି—ପୁଣି ଉଚ୍ଚ ସମେତ—ପଟ୍ଟନାହାକର ଘର ଚୋରଁ ପୁରୁଷରୁ ଉନ୍ନ ସେ—କହିବାକୁ ଗଲେ ପଟ୍ଟନାହାକ ଘର ନେଇଛନ୍ତି" କଅର—ମଦନାଧ ଖଳି ଦବ—କ'ଣ ତାଙ୍କୁ ଭୂତ ଲାଗିଛି—ନା, ଧରମ ଗଳୁଛି ସେ ! ତେବେ ମୁଁ ବାହିଁକି କହୁଲି କି—ଯେତେହେଲେ, ଅମ ପୈତୃକ ସମ୍ପତ୍ତି ସେଟା, କେତେ ପୁରୁଷରୁ ହେଲାଣି ତାର ଥିବୁ ନାହିଁ—ସେ ଯେମିତି ଅନ୍ୟ କାହାର—ଏ ବଂଶକୁ ବାହାରେ କାହାର ହାତରେ ନ ପଡ଼େ—ଭଗବାନ ନ କରନ୍ତୁ । ଅମ ଘର ସମ୍ପତ୍ତି ପର ଖାଇବ ! ବଡ ସା'ନ୍ତ୍ୱନା ଆସ୍ଥା କାହିବ । କେତେ କଷ୍ଟରେ ସେ ପାଟପୁରକୁ ରଖିଛି । ନିଲାମ ତ ହେଇଯାଇଥିଲା । କମିସନ ଅଟକ ନଚି, ଭଣ୍ଡ—୯୫ ଲକ୍ ଟରେ ତ ହେଇଗଲା ସେଥିପାଇଁ ! ସେଥିପାଇଁ କହୁଛି, ଅନେକ ଲୋକ ଅଖେଇଛନ୍ତି—ଆମ ବଂଶର ଉନ୍ନତି ଦେଖି ସାହାଙ୍କ ଦେହ ସହୁ ନାହିଁ—ତାଙ୍କ କର ଅନେଇଛନ୍ତି—ତାଙ୍କୁ ଲାଗିଥା ଥିବ; ଏଣିକି ଟମା କହିବାର କଥା । ମୋତେ ଠିକ୍ ଏ ପଗ୍ରୁହୁଥିବ । ତେଣିକି

ଭଗବ ନଙ୍କର ଯାହା ବଦେ ଥିବ । ଘର ସମ୍ପତ୍ତି, ସେ ଯଦ ଘରେ ରଖିବାକୁ ଗୃହାନ୍ତ ତ ରଖିବେ—ନହେଲେ ନାହିଁ—ତାଙ୍କ ଅନ୍ୟ ଭା'ର ବଳ ଅଛି ?"

"ନା—ନା—ମୁଁ ତାଙ୍କୁ ଏକାକ ନାହିଁ । ଭଗବାନ ମିଶ୍ର ମୋତେ ବହୁତ ସ୍ନେହ ଦେଖେଇଲଣି । ମୁଁ ତାଙ୍କୁ ମନା କରି ଦେଇଛି ।"

"ଠିକ୍ କରିଚ, ଭଗବାନ ମିଶ୍ର ଇମିତ କଣ ହେଇଗଲା କି ? କେଉଁଠି ବଡ଼ ମଣିଷ ହେଇଗଲା କି ? ବୁନିଆଦ ଅଛି, ନା ବୁନିଆଦ ? ସେ ପୁଣି କିଣିବ ପଟ୍ଟନାୟକ ଘର ପାଟପୁର ଜମିଦାରୀ—ପାଟପୁର ଜଡ଼ ? କମ ହିମତ ନୁହେଁ ତ ? କେତେ ଦର ସେ କେବେ ? କେତେ ଦବାକୁ କହୁଛି ? ପଟ୍ଟନାୟକ ବଂଶରେ ମଣିଷ ଅଛନ୍ତି, ତା ବଦଲ ଦେଇ ପାଟପୁରକୁ ତାହା ସାଙ୍ଗରେ ତାଙ୍କୁ ତା'ବଂଶଧରପୁରୁଷଙ୍କୁ କିଣିନେବେ । କଣ କରିପାଇଛି କି ଆମକୁ ସେ ବାହ୍ମଣ ଟୋକା ! ମୋତେ ସବୁ ଗାଁ ବାଲା କହୁଥିଲେ ମଦନ-ପଟ୍ଟନାୟକ ପାଟପୁର ବିକିଲେ, ତମକୁ କିଛି ଭର୍ ସମ୍‌ରେ ଦେବ ସେ । ଆପଣା ଆପଣା ଭିତରେ ତ ! ତାଙ୍କର କଣ—ତମର କଣ ? ତମ ହାତରେ ସଂପତ୍ତି ରହିବା ଯାହା, ତାଙ୍କ ହାତରେ ସମ୍ପତ୍ତି ରହିବା ସେଇଆ । ଖାଲି ଖାତାରେ ନାଁ ବଦଳିବା କଥା । ଖାଲି ପୁଣି ମଦନ ପଟ୍ଟନାୟକର ଅବସ୍ଥା ଭଲ ହେଇଗଲେ ସେ ସମ୍ପତ୍ତି ସେ ଫେରସ୍ତ ମାଗିଲେ ତମେ କଣ ଫେରେଇ ଦେବନ୍ତ ନାହିଁ ? ମୁଁ କହିଲି—ବହୁତ ଏ କଥା ! ମୋ ହାତରେ ସମ୍ପତ୍ତି ଥିଲେ ତାର ଯେତେବେଳେ ଖୁସି ସେତେବେଳେ ନେଉ—ଅଦ୍ଭୁତ ଦ'ପଇସା କମ୍ କରି ଦେଉ । ମୋର କିଛି ଆପତ୍ତି ନାହିଁ । ତେବେ ମୁଁ ଚାହିଁବି ତାଠାରୁ ଫଳପ ଭାବରେ କିଣିବ ! ତାର ସେମିତ ଗରଜ ଥିଲେ ସେ

ପାଟପୁର ଭଳି ସେବନ୍ତୀ ସୁନାଫଳା ସମ୍ପତ୍ତିକୁ କିଏ ବସିଛି—ମଦନାଙ୍କ ପରି ବୁଦ୍ଧିମାନ୍ ଲୋକ ସେମିତି ଅଡ଼ୁଆରେ ନ ପଡ଼ିଥିଲେ ପାଟପୁର ଛାଡ଼ି ଦିଅନ୍ତା ? ତାର ଏ ବିପଦ ବେଳରେ ମୁଁ ତାଙ୍କୁ ଲାଭ ଉଠେଇବି ! ସେ କଥା ହବ ନାହିଁ । କିଏ ସେ ଦପଇସାରେ ମୁଁ ଅଳ୍ପ ଦ' ମହଲା କୋଠା ବାଡ଼େଇବି ? ବରଂ ଅଳ୍ପ ଲୋକେ ଯାହା ଦର ଦେଉଥିବେ ତାଙ୍କୁ ଦଶଟା ଅଧିକ ଦେବାକୁ ମୋର ଆପତ୍ତି ନାହିଁ । ଟଙ୍କା ମୋର କିଏ ତାର କିଏ ? ଏ ସିନ୍ଦୁକରୁ ଯାଇ ସେ ସିନ୍ଦୁକରେ ପଶିବ । ଏଇ ତ !"

ମଦନପଟ୍ଟନାୟକ କହାଣ ବୋଲା ମଣିଷ ନୁହନ୍ତି । ସବୁକଥା ଶୁଣିଲେ, ବୁଝିଲେ, ଜାଁ କି ଚୁଁ କିଛି କହିଲେ ନାହିଁ । ନାହିଁ ବି କଲେ ନାହିଁ—ହଁ ବି କଲେ ନାହିଁ । "ହଁ ମୋହନ ସେଠି ସବୁ କଥା । ମୋର କାମ ଅଳ୍ପ ମୁଁ ଅସେଇଁ ।"

କହି ସେ ଉଠି ଗୁଲିଗଲେ । ମୋହନ ଘରକୁ ଫେରିଲେ । ବାଟରେ ପାଟପୁର ଉପରୁ ଖଣ୍ଡିଏ ଦିଶିଲା । ଧାନପାଚି କଅଁଳ ଉଠି-ଯାଇଛି । ଯେମିତି କାହାଘର ନୂଆ ବହୂଟିଏ ମଠା ଓଢ଼ଣୀ ପକେଇ ନଇଁ ପଡ଼ି ଦଣ୍ଡବତ କରୁଛି ମା ଧରତୀଙ୍କୁ । ମୋହନ ପଟ୍ଟନାୟକଙ୍କ ମନ ଭିତରେ କେଉଁ ଗୋଟାଏ ପାପ ମୂର୍ତ୍ତି ଧରି ଠିଆ ହେଲା ।

ଘରେ ଆସି ଭାବିଲେ—ଭଗବାନମିଶ୍ର ଗୋଟେ ମଣିଷ, ସେ ଟିକ୍ଟର ଦର ବଢ଼ୁଆହେବ ରସିକପଟ୍ଟନାୟକ ଭାଇ ମୋହନ ପଟ୍ଟନାୟକ ସାମ୍ନାରେ ? ଏତେ ସାହସ ? ଅଚ୍ଛା ଦେଖିନେବି ।

ସେଇଦିନ ସେ ଭାଇ ପାଖକୁ ଚିଠି ଲେଖିଲେ । ଭଗବାନ ମିଶ୍ର ବଡ଼ ହଟଗୋଳ କରୁଛି, ତା ଦାଉରେ ମଫସଲ ଅଞ୍ଚଳରେ ଘର କରି ରହିହବ ନାହିଁ । ଏଠା ହାକିମ ହୁକିମ ବି ତା'ର ପକ୍ଷ ନେଉଛନ୍ତି । ଘୁଷ୍ ଦେଇ, ଭୋଜି ଦେଇ ସମସ୍ତଙ୍କୁ ହାତ କରି ରଖିଛି ।

ପ୍ରଜା ଖାତକମାନଙ୍କ ଉପରେ ଭୀଷଣ ଅତ୍ୟାଚାର କରୁଛନ୍ତି । ସେ କଥାଗୁଡ଼ାକ କହିବା କଥା ନୁହେଁ । ମଦନ ପଟ୍ଟନାୟକ ବି ତାର ସାଥିରେ—ନୁହେଁ ସଲ୍ଲ ସୁତ୍ରୁସ । ମଦନାଦ ମୋଟେ ସାଂପୂର ଉଦ୍ଧ ଓ ଜମିଦାର ଦେଖିବାକୁ ଜବାବ କରି ଭିତରେ ଭିତରେ ଭଗିମିଣ୍ଡୁ ଦେଇ ଦେବାକୁ ବସିଛନ୍ତି । ଏକଥାକୁ ବିଚାର କରି ଯାହା କରିବ । ଏଠା ସବ୍‌ଡିଭିଜନ ମାଜିଷ୍ଟ୍ରେଟ ସାହେବ ତୁମ୍ଭ ପରିଚୟ ବନ୍ଧୁ ଥିବାରୁ ତାଙ୍କୁ ଯାହା ଉଚିତ ବିଚାରିବ ତାହା ଲେଖିବ ।" ନଚେତ୍ ଅମ୍ଭର ଏଠି, ଘର କରି ରହିବା ସେପରି ସେପରି ଜାଣିବ ।

ସେଇଦିନ ପୁଣି ମୋହନବାବୁଙ୍କର ଭାରି ଟେଇଁଏ କି ଦାମ ପଡ଼ିଲା ଯେ ଜଗେଇ ମାହାନ୍ତି ଛଡ଼ା ସେ ଦାମ ଆଉ କେହି ପାରିବେ ନାହିଁ । ଜଗେଇ ମାହାନ୍ତି ମଦନପଟ୍ଟନାୟକ ଘରେ ଥିଲା, ଖବର ପହଞ୍ଚିଲା । ମୋହନବାବୁ ଜଗେଇ ମାହାନ୍ତିକୁ ଡାକୁଛନ୍ତି । ମଦନ-ପଟ୍ଟନାୟକେ କହିଲେ—“ସେ ଏଠି କାମ କରୁଛି—କାମ ଛାଡ଼ିଲ ଟିକିଏ ଲୁଚିକି ଯାଉଛି ।”

ମୋହନ ପଟ୍ଟନାୟକଙ୍କ ଲୋକ ଫେରି ଆସିଲା । ମୋହନବାବୁ ଶୁଣି ତାତି ଉଠିଲେ—“ହଁ, ମୋ କାମ ହେଲା ନାହିଁ, ତାଙ୍କ କାମ ବଳି ପଡ଼ିଲା । ଏ ଶଳା ଗୋଲମ ଟୋକାର ଏତେ ସାହସ ! ଦେଖି ନେବି କେତେ ପୁଅ ସେ—ଆଜି ତା ମୁଣ୍ଡବ ମଦନପଟ୍ଟନାୟକ କେତେ ମଣିଷ । ନା, ଆଉ ସେ ଜଗାମାହାନ୍ତି ମୁହଁ ଚାହିଁବି ନାହିଁ । ସେ ପୁଣି ଦିନେ ଏ ଅମ ପାଖ ମାଉଛି ଯେବେ ତା’ ଠେଙ୍ଗାଣୀ ନ ଭାଙ୍ଗିଛି ତ ମୁଁ ମୋହନପଟ୍ଟନାୟକ ନୁହେଁ ।”

ମଦନପଟ୍ଟନାୟକ ଏ କଥା ଶୁଣି କହିଲେ – ଜଗା ଦେହରେ କେହି ଟିପ ଛୁଇଁବ ତ ମୁଁ ବି ଦେଖି ନେବି ପୁଅର କେତେ ତାକତ ।

ଏଇ ଜଗେଇ ମାହାନ୍ତିଙ୍କ ଉପଲକ୍ଷ କରି କଳି ଆରମ୍ଭ ହୋଇଗଲା ଦୁ’ ଘର ଭିତରେ—ମଦନପଟ୍ଟନାୟକ ଓ ରଘୁନାଥପଟ୍ଟ-ନାୟକ ମାରଫତ୍ ମୋହନପଟ୍ଟନାୟକ ଭିତରେ କଳି । ମଦନପଟ୍ଟ-ନାହାକ କହନ୍ତି, ଜଗେଇ ତାଙ୍କ ଘରର ଦେଢ଼କୋଡ଼ି ବର୍ଷର ଚାକର, ତାକୁ କିଏ ନେଇଯିବ ଅଛି କାହାଘରେ କାମ କରେଇବାକୁ, ଦେଖାଯାଉ ।

ମଦନପଟ୍ଟନାହାକ କହୁଛନ୍ତି, ଜଗା ଆସିବ ନାହିଁ । ନଆସିବ ଛ ମୋ ନାଁ ମୋହନ ନୁହେଁ । ଟଙ୍କା ପାଖରେ ବାଘ ଆସି ପିଠେ ପଡ଼େଇ ଦବ । ଜଗା କୋଠପୁଅ କି ଛାର ।

କିନ୍ତୁ ଜଗା କୋଠପୁଅ ଯୋଉଁଠି ଥିବ ସେଇଠି ରହିବ । ମୋହନ ପଟ୍ଟନାୟକ ପାଞ୍ଚଟଙ୍କା ଦରମା ଅଧିକ ଦବ, ଜମି ଦ’ମାଣ ଦବ, ଭଙ୍ଗାଘର ନୂଆ କରିବାକୁ ବାଉଁଶ ଦବ—ଏବୁ ଦବାକୁ କହୁଛି, ତଥାପି ଜଗାର ଏକ ଜବାବ—ନା । ପିଲାଦିନରୁ ଯାହାର ଦାନାଖାଇ ଅଛି—ତାକୁ ଛାଡ଼ି ଯାଇ ପାରିବ ନାହିଁ । ପଇସା ବଡ ନୁହେଁ, ମଣିଷର ଇଲତ୍ ବଡ଼ ।

ଜଗାମାହାନ୍ତି କଳି ଯାଇ ପଡ଼ିଲା ଗାଁ ମାଷ୍ଟରାଣୀ ଉପରେ । ଗାଁରେ ବାଳିକା ସ୍କୁଲ ନାହିଁ । ଅନେକ ଦିନରୁ ଚେଷ୍ଟା ଚାଲିଛି—କିନ୍ତୁ ବୋର୍ଡ ମଞ୍ଜୁର କରୁ ନାହିଁ । ଯେତେବେଳେ ଝିଅ ପଢ଼ିବାର କଥା ସେତେବେ ଝିଅ ସ୍କୁଲରେ ପଢ଼ନ୍ତି ନାହାନ୍ତି । ଅଏ, ହେ ଗାଁଅର ମାଉସୀ ପିଣ୍ଡିପେ, ଏଥର ଅଧିକ ଝିଅ ଜନମ ନକଲେ ବାଳିକା ଇସ୍କୁଲ ହୋଇ ପାରିବ ନାହିଁ ।

ଯେତେଗୋଟି ଝିଅ ପଟ୍ଟନାୟକ ପଢ଼ାର ପଢ଼ନ୍ତି, ତାଙ୍କ ଛଡ଼ା ସାହିରୁ ଆଉ ତନି ଗୁରେଟି ବ ଅସନ୍ତି । ସଦାହୁଏ ମୋହନପଟ୍ଟନାୟକେ ବଙ୍ଗଳାର ଗୋଟିଏ ଭଡ଼ାଘ କରିଛନ୍ତି । ମୋହନଙ୍କର ତନବର୍ଷର ଗୋଟିଏ ଝୁଅ ଅଛି ବସେ । ତେଣେ ରାଧା ଗୋବିନ୍ଦଙ୍କ ଯୋଉଏ ଝିଅ ଆସୁଥିଲେ । ମଦନପଟ୍ଟନାୟକ କହିଲେ, ନା ସେ ଆଉ ମୋହନ ପଟ୍ଟନାୟକ ଘରକୁ ଯିବେ ନାହିଁ । ମାଷ୍ଟରାଣୀ ତାଙ୍କ ଘରଟିକୁ ଆସି ପଢ଼େଇ ଯିବ ତ ଯାଉ । ହଉ ପଇସା ଦବା, ଆଉ କାହା ଡିଣ୍ଡା ତଳରେ ବସି ପଢ଼ିବେ କାହିଁକି ଆମ ଝିଅ ଝିଅସ୍ତ ? ମୋହନ ପଟ୍ଟନାୟକ କ'ଣ ବେଶି ପଇସା ଦଉଛି ।

ମାଷ୍ଟରାଣୀ କିନ୍ତୁ ମନା କଲା । ସେ ଏତେ ଠା ହେଇ ପାରବ ନାହିଁ । ତା ଛଡ଼ା ମୋହନ ପଟ୍ଟନାୟକଙ୍କର ଅଲଗା ବଖରା ଅଛି, ସେ ସେଠି ରହେ, ତାଙ୍କ ଘରେ ଖାଏ । ସେଇଠି ପଢ଼େଇବାକୁ ସୁବିଧା ହୁଏ । ଗାଁର ଗୋଟାଏ ମୁଣ୍ଡରେ ରହି ଆଉ ଗୋଟାଏ ମୁଣ୍ଡରେ ଯାଇ ପଢ଼େଇବା ତା' ପକ୍ଷରେ ସୁବିଧା ହବ ନାହିଁ । ମଦନ ପଟ୍ଟନାୟକ ସେ କଥା ଶୁଣି କହିଲେ—ଘର ସେ ଦେବେ, ଖାଇବାକୁ ସେ ଦେବେ । କିନ୍ତୁ ମାଷ୍ଟରାଣୀ ନାହିଁ କଲା । ନାଁ—ଗୋଟାଏ ଜାଗାରେ ଆସି ରହିଗଲାଣି ଯେତେବେଳେ, କଣ କହି ସେଠୁ ପଳେଇ ଆସିବ ?

କିନ୍ତୁ ମୋହନ ପଟ୍ଟନାୟକଙ୍କ ଘରେ ସେ ରହିପାରିଲା ନାହିଁ । ଦିନେ ସଞ୍ଜ ନ ପାହୁଣୁ ପେଡ଼ି ପୁଟୁଳି ଧରି ଆସି ଅଟେ ଆପେ ମଦନ ପଟ୍ଟନାୟକଙ୍କ ଘରେ ହାଜର । ରାଧାଗୋବିନ୍ଦଙ୍କ ସ୍ତ୍ରୀଙ୍କ ହାତରେ ମହାପ୍ରସାଦ ଦେଇ ଧରମ ଝିଅ କରିଲା ।

ମୋହନପଟ୍ଟନାୟକ ମହା ଖପ୍ପା—ରାଧାଗୋବିନ୍ଦ ସେ ଟୋକୀଟାକୁ ଚିତେଇ ନେଇ ଯାଇଛି । ବଜାର ଖାନକୀ ମାଇକିନା ହେଲ

ସାଙ୍ଗରେ ରହିବାକୁ ଗଡ଼େଇବ—ଯାଉ ପଣ୍ ସେଇ ସଧା ଗୋବିନ୍ଦ ପାଖରେ । ବଡ଼ ସୁନାମ ସଧା ଗୋବିନ୍ଦଙ୍କର । ବଂଶାସ୍ତ୍ର ସବୁ ବନ୍ଧୁ ଏକା ଚାହିଁବ, ସେ ଗୋଲାମ ସାମ୍ନାଷ୍ଟାପାଉ ଗନ୍ଧର, ସମସ୍ତେ ବାନ୍ଧିବେ, ସଧା ଗୋବିନ୍ଦ—ତୁଳସୀ । ଅଉ ଯାବତ ବଦମାସ ଏଇ ମୋହନ । କାରଣ, ତା' ନାଁରେ କେତେ କେତେ ପଦେ ଲୁହଂଭୂଷ ବ ହତା ନଥିବ, ମାଷ୍ଟରାଣୀ—ଯୁବତୀ ଟୋକୀଟା—ସେ ତ'ଣ ଖାଲି ଗଣ୍ଡେ ଖାଇବାକୁ ମୋହନଙ୍କ ସଙ୍ଗେ ପଡ଼ ରହନ୍ତା । ଗୁଲିଗଲା—ସଧା ଗୋବିନ୍ଦ ପାଖକୁ ଯାଉ । ରାୟବାହାଦୁର ରସିକ ପଟ୍ଟନାୟକ ଆଉ ମୋହନପଟ୍ଟନାୟକର ପ୍ରିୟ ତ'ଣ ସେଥିପାଇଁ ମୁକ୍ତଣ ରହିବ ସମ୍ପୂର୍ଣ୍ଣ ଟଙ୍କା ଖରଚ ନହେଲା ଚାହିଁବ, ଛୁଟିକୁ ପାଞ୍ଚ ବରଷ ପଣିଆ ଝୁଣ୍ଟ ସେ ଚୋରିରୁ ହେଲେ ଚୋରିରୁ ମାଷ୍ଟରାଣୀ ରଖିବେ । ଦେଖିବେ । ଦେଖିବେ ମଦନ ପଟ୍ଟନାୟକର ଧନ ପଣ କେତେ ।

ମାଷ୍ଟରାଣୀ କାନରେ ଏ କଥା ପଡ଼ିଲା । ସେ ଡରିଗଲା । ସେ ଯେ ଚାହିଁଲା ମୋହନ ପଟ୍ଟନାୟକଘରୁ ପଳେଇ ଆସିଲା, ସେ କଥା କେହି ତାହାଆଗେ କହି ପାରିବ ନାହିଁ । କହିଲେ ଅପକୀର୍ତ୍ତି ତାହାର । କାରଣ ସେ ମାଇକିନିଅ ଝିଅ । ମୋହନ ପଟ୍ଟନାୟକର ଦୋଷ କେହି ଦେବେ ନାହିଁ । କାରଣ ସେ ପୁରୁଷ । ସେ ବେହିସ୍ତାଙ୍କ ପରି ମୁହଁ ଲୁଚାଇ ମାରି ବୁଲି ପାରିବ—ତ'ଣନା, ଆମେ ପୁରୁଷପୁଅ—ଆମର ସେ ଧର୍ମ—ଆମେ ଭ୍ରମର ଜାତି ।

ଗାଁ ଯାକ ଦୁର୍ନାମ ଗୁଞ୍ଜୁ ଗୁଞ୍ଜୁ ପାଣିରେ ତେଲ ପରି ବ୍ୟାପିଗଲା । ମାଷ୍ଟରାଣୀ କାନରେ ନପଡ଼ନ୍ତା କିମିତି । ମୋହନ ପଟ୍ଟନାୟକ ଘରୁ ଅସିବା ଏକ ଅପରାଧ ଓ ମଦନପଟ୍ଟନାୟକ ଘରେ ରହିବା ଆଉ ଏକ ଅପରାଧ । ଏ କଥା ଶୁଣି ମଦନ ପଟ୍ଟନାୟକ କହିଲେ—"ଏ ସବୁ ମୋହନର ଫିକର । ମାଷ୍ଟରାଣୀକୁ ମୋ ଘରୁ ତାଡ଼ିବା ପାଇଁ

ଏ ଷଡ଼ଯନ୍ତ୍ର । ମୋ ନାତି ନାତୁଣୀଏ ପାଠ ପଢ଼ିଲେ ବୋଲି ସ୍ୱାଙ୍କ ତଳ ଶୁଦ୍ଧା ପଡ଼ୁନାହିଁ । ଏଇ ଖାଲି ସାହେବ ହେବେ, ଇଂରାଜୀ ପଢ଼ିବେ । ସ୍ୱାଙ୍କ ଝିଏ ମେମ୍ ହୋଇ ବୁଲିବେ । ଆଉ କେହି ପାଠ ପଢ଼ିବେ ନାହିଁ । ଦେଖିବା ତ ଭଲ—ମାଷ୍ଟରାଣୀକୁ କଏ କଣ କହୁଛି—କଏ କ୍ରିଆଦେ ନକରି ।

ମାଷ୍ଟରାଣୀର ସେ ଗାଁରେ ଆଉ ମୁହୂର୍ତ୍ତେ ବି ରହିବାକୁ ଇଚ୍ଛା ହେଉ ନାହିଁ । କିନ୍ତୁ ସେ ଯାଇ ପାରେ ନାହିଁ । ମଦନପଣ୍ଡା ଜାଣୁକ ବଜଂଖ୍ୟା ପକ ତାଙ୍କୁ ଲାଗି ବହିଥାନ୍ତି । ତାଙ୍କ ଘର ବଗିଚାର କୁକୁର ବି ତାଙ୍କୁ ଦାନ୍ତ ଦେଖାଳନ୍ତି ।

ମାଷ୍ଟରାଣୀଟି ବିଧବା । ବିଧବା ବ୍ରାହ୍ମଣୀ । ଅଦ୍ଭୁତ ଧରଣର ସ୍ତ୍ରୀ ଲୋକ ସେ । ପାଠ ସାଠ ପଢ଼ିଛନ୍ତି ହେଲେ, ପାଠ ସାଠ ପଢ଼ା ମେମ୍ ସାହେବ ନୁହେଁ—କିରସ୍ତାନୀ ବି ବଙ୍ଗାଳୁଣୀ ନୁହେଁ । ବାଟରେ ବୁଲେ, ଯେମିତି ବହୁଡ଼ିଏ ଯାଉଛି । ଅଥଚ ଏଇ ଗାଁର ସାଆନ୍ତାଣୀ-ମାନଙ୍କ ପରି ମୁଣ୍ଡରେ ତାର ହାତେ ଲମ୍ବର ଓଢ଼ଣା ନଥାଏ । ବୟସ ବି ବେଶୀ ନୁହେଁ । ତିରିଶ ପଚିଶ ହେବ । କହନ୍ତି ବାଲବିଧବା । ପାଠ ପଢ଼ିଛି । ଇଂରାଜୀ ଜାଣେ । ତେବେ ବି ଏକାଦଶୀ କରେ—ଫଳାହାର କରେ—ମାଛ ମାଂସ ପିଆଜ ରସୁଣ ଛୁଏଁ ନାହିଁ ।

ଝିଅଗୁଡ଼ାକ ତାଙ୍କୁ ଏତେ ଭଲ ପାଆନ୍ତି ଯେ କହିବାର କଥା ନୁହେଁ । ଯିଏ ପାଠ ପଢ଼ନ୍ତି ସେ ତ ସହଜେ, ଅନ୍ୟ ଯିଏ ତାଙ୍କ ପାଖରେ ପାଠ ନ ପଢ଼ନ୍ତି, ଘରେ ରହିଲେଣି, ସେ ବି । ଅନେକ ବାଡ଼ବାଡ଼ ଗଣା ଆସନ୍ତି ତାଙ୍କୁ । ଗାଁ ଝିଅପାକ—ଏଇ କରଣ ସାହିର ଝିଅପାକ ବ'ହାଘରଅ ତା ପାଖକୁ ଯାଇ ବୁଣାବୁଣି ଶିଖି ଆସନ୍ତି । ମାଷ୍ଟରାଣୀ ନିଜେ ବି ଦିନେ ଦିନେ ଜଣ ଜଣଙ୍କ ଘରକୁ ଯାଏ ବୁଲି । ସେଇଠି ସେ ବୁଣା ବି ଶିଖେଇ ଦିଏ । ଗାଁଟାପାକ ମାଷ୍ଟରାଣୀ

ଗୋଟାଏ ଫଟଧରେ ବାନ୍ଧ ପଡ଼ିଯାଇଥିଲା । ସବୁ ବାଡ଼ୁଅ ଝିଅଙ୍କର ଛ ସନ୍ଧିରେ ସେ ଲାଗା । ତାଛଡ଼ା, "କିଏ ହେବ ମାଉସୀ କେ କିଏ ହେବ ନଣଦୀ ।" ଯାହାବାଲା ଗାଉଥିଲେ ଲୋକେ ସମସ୍ତେ ତାର ମାଉସୀ ଖୁଡ଼ୀ କିଛି ନା କିଛି ହେବେ । ତା ଭିତରୁ କେବଳ ବାଦ୍ ପଡ଼ିଗଲେ ରହିତ ପଟ୍ଟନାୟକ ଭାଇ ମୋହନଙ୍କ ଘର । ସମ୍ଭବ ତାଙ୍କ ସହ ଅଛ ବସିଲା ନାହିଁ । ତାଙ୍କ ଘରଛଡ଼ା ଅଉ କେହି ମାଷ୍ଟ୍ରାଣୀ ନାଁରେ ଲଟଗାଇ ମଡ଼ଦ ବି କହୁନାହିଁ । କିନ୍ତୁ ଥରେ ଯେତେବେଳେ ନାଁରେ ଦୁର୍ନାମ ରଟିଗଲା ସେତେବେଳେ ସେ ଯାଇ ମାଇପେ ମିଶିମେ କଣ ବଖରେ କେଜାଣି ମାଷ୍ଟ୍ରାଣୀ ଡରୁଥିଲା । ସେଥିପାଇ ପଳେଇ ଯିବାକୁ ଗୃହିଲା । ସବୁଠୁଁ ବେଶି ଚଢ଼ିଥିଲା ଗାଁକୁ, ଅସ୍ତେ ଅସ୍ତେ ଗାଁର ଝିଅ ବହୁ ପଟ୍ଟନାୟକ ଘରକୁ ବି ଫଳପ ଯିବା ଆସିବା କଲା । ଖାଲି ସେଇ ମାଷ୍ଟ୍ରାଣୀ ସେଠି ଥାଏ ବୋଲି, କେହି କେହି ତାଙ୍କ ନାଁଙ୍କୁ ବଦ ବି କହି-ଦେଲେ—କେତେ ବାହାନାରେ ।

ମାଷ୍ଟ୍ରାଣୀକୁ ବଡ଼ ବାଧିଲା । ସେ ଅଉ ସେ ଗାଁରେ ଏ କଳଙ୍କ ବୋଝ ନେଇ ରହିବ କିମିତି ? ମଦନପଟ୍ଟନାୟକ କହିଲେ—'ପଳେଇଲେ ଲୋକେ କହିବେ ସତରେ ଏ ଲୋକଟା ଦୁଷ୍ଟରିତ୍ର ଥିଲା । କଳଙ୍କରେ ପଳେଇଗଲା ।' କିନ୍ତୁ ମାଷ୍ଟ୍ରାଣୀ ବୁଝୁଥିଲା ଅନ୍ୟ ପ୍ରକାରରେ । ସେ ଭାବୁଥିଲା, ଯେଉଁଠି ପେଟରେ ବି ଏତେ ବଡ଼ ଗୋଟାଏ କଥା ଉଠି ସତ ଠିଆ ହୋଇଯାଏ ସେଠି ସେ ରହିବ କିମିତି ? ଯେତେବେଳେ ଦୁନିଆଁ ଯାକ ତାକୁ ଚୋର ବୋଲି କହିବେ, ସେତେବେଳେ ସେ ଚୋର ନୁହେଁ ବୋଲି ପ୍ରତି ମୁହୂର୍ତ୍ତରେ ପ୍ରତିବାଦ କରି ଚାଲିବ କେତେ ! ଯେ ଚୋର ହୋଇଥିବ ସେ ବଳିବ ଅଛ ସହିବ । କିନ୍ତୁ ଯିଏ ଚୋର ନୁହେଁ ସେ ସିନା ସ୍ୱଗତ ନାହିଁ—ସହିବ କିମିତି ?

ସେ ଗୁଳିପିବ ବୋଲି ଠିକ୍ କଲା । ସେଇ ସମୟରେ ହଠାତ୍ ଗାଁରେ ପଡ଼ିଲା ବାଣ । ସେପାଖ ସାହିରୁ ଅଗି ଆରମ୍ଭ ହେଲା । ପହିଲୁ ଭଣ୍ଡାସ ଘୋଡ଼ାଏ ତନିଥା—ତନ ତନ ଗୁର ଗୁର ମୁଣ୍ଡ ଗଣ୍ଡ ପଡ଼ିଲେ । ତାପରେ ପଶିଲା ମଝି ସାହିରେ । ଅଗି ଧରିଲା କଂସାରୀ ଘର ପଦ୍ମକୁ । ଘରେ ପଦଅ ନାହିଁ । ଦଣ୍ଡେକ ହେଲା ଗଲାଣି ଗୋଡ଼ ଢାଙ୍କି ଘରୁ ସେ, ଯାଇଚି ଆଉ ଫେରି ନାହିଁ । କୋଉଁଠି ଭଙ୍ଗା କଂସା ବାସନ ବଦଳ ଦେଇ ନୂଆ ବାସନ ଦେଇ-ଥିବ । ଏଣେ ବହୁ ପଡ଼ିଚି ବାଣରେ । ପଦଅର ଭଉଣୀଟା ରଡ଼ି ଛାଡ଼ିଲା—"ମୁ କଣ କରିବ ଲୋ ! ମୁଁ କୁଆଡ଼େ ଯିବ ଲୋ !" କିନ୍ତୁ କିଏ ବା ସେଠି ସେ ଗୃହରେ ସାଣ୍ଟି ହେଉଚି ତା ପାଖ ପଶିବାକୁ ନାହିଁ । ଖାଲି ଲୋକ ଦେଖାଣିଆ ଭିଡ଼ । ବେଳେ ବେଳେ ଭୁଣ୍ଡ-ଟାରେ ପାଟି କରୁଚି—"ରେ ପଦଅ—ପଦଅରେ—ଇରେ ତୁ କୁଆଡ଼େ ଗଲୁ ମୋତେ ଏ ଜଂଜାଳରେ ପକେଇ ଦେଇ ରେ ପଦଅ—ଇରେ ତୋର ଏଡ଼େ ଅହଙ୍କା ମୋ ଉପରେ ରେ ପଦଅ ।" ଲୋକେ ପଦଅକୁ କ'ଣ ହେଲା ବୋଲି ଦଉଡ଼ ଅପି ଦେଖିଲେ, ବହୁ ପଡ଼ିଚି । ବଣ୍ଡ କାନ୍ଦୁଚି—'ମୁଁ କ'ଣ କରିବ ଲୋ—ମୋ ବହୁ ଇମିତ କାହିଁକି ହଉଚି ଲୋ । ଇଲୋ ମୁଁ କି ବୁଦ୍ଧି କରିବ ଲୋ । ମୋତେ ତ ସବୁ ଅନ୍ଧାର ଦିଶୁଚି—ଇରେ ପଦଅ, ତୁ କଲଧ ଆରେ—ଅମର କଏ ସେ କରିବ ରେ !''

ଟୋକା ଗାଁ ଗୋଟେଇଲା । ଗୁରୁଅଡ଼େ ଯେମିତି ଗୋଟେ ଜଣ ଧୂ ଧୂ ହୋଇ ଜଳୁଛି । ବାଣ—ଝାଡ଼ାବାନ୍ତି—ଦ'ତନ ବର୍ଷକେ ଥରେ ଅସେ । ଏମିତି ହାଙ୍ଗାମା ଲାଗିଯାଏ । ଅନାମତେ ଟିପ୍ସ କଲା ପରି । ଖାଲି ଅଭଙ୍ଗରେ ଲୋକେ ଗୁହିଁ ରହନ୍ତି, କେତେବେଳେ କାହା ପାଳି ପଡ଼ିବ ।

ଚଉଦ୍ୱାର ଥାନାରେ ଖବର ଦିଏ । ପ୍ରେସିଡେଣ୍ଟ, ଅଥ ପାଞ୍ଚଜଣ ଭଦ୍ରଲୋକ ଜିଲ୍ଲାବୋର୍ଡଙ୍କୁ, କଲେକ୍ଟରଙ୍କୁ ଜଣେଇ ଦିଅନ୍ତି— ହାତରୁ ପୋଷ୍ଟ କାର୍ଡ ଛପା ଖର୍ଚ୍ଚ କରି, ତାଙ୍କ ମନେ ମନେ ପାଠ ପଢ଼ା ଭଦ୍ରଲୋକ ହିସାବରେ ତାଙ୍କ କର୍ତ୍ତବ୍ୟଟା ସେତିକିରେ ସରିଗଲା ।

ତେଣେ ସରକାରୀ ଲୋକେ ସଂବାଦ ପାଇ—ଖୁବ୍ ତତ୍ପରତା ଅନ୍ତତଃ ଅଠଦିନ ପରେ ଲୋକ ପଠାଇ ଟୀକା ଦେବାର ବ୍ୟବସ୍ଥା କରନ୍ତି—ଅଉ ହଇଜା ହେବ ନାହିଁ । ସେତେବେଳକୁ ଗାଁରୁ କୋଡ଼ିଏ ପଚିଶ ମୁଣ୍ଡ ଯାଇ ସାରନ୍ତିଣି । ଯମ ମା ସାତ ଭଉଣୀରୁ ଅନ୍ତତଃ ଜଣେ ଗଣ୍ଡେ ପୂଜାପେଟ ହୋଇ ସାରେଣି ।

ଗାଁ ଦେବତାଙ୍କ ପାଖରେ ମାର୍ଜଣା ହୁଏ—କାଳସୀ ଲାଗେ । ବଳି ପଡ଼େ—କୁକୁଡ଼ା ବଳି । ଯମ ମା ମଣିଷ ରକତ ପିଇବାକୁ ଆସି କୁକୁଡ଼ା ରକତରେ ସନ୍ତୁଷ୍ଟ ହୁଅନ୍ତି କି ନାହିଁ କିଏ ଜାଣେ ! ତେବେ ମଣିଷ ଠାକୁରଙ୍କୁ ବି ଏମିତି ଠକିବାକୁ ଚେଷ୍ଟା କରେ । ନିଜେ ନିଜର ଠାକୁର ଗଢ଼ି, ତାକୁ ନିଜଠାରୁ ବଡ଼ କରି ପୁଣି ନିଜର ଦୁର୍ବଳତାକୁ ନେଇ ଲୁଚେଇ ଦିଏ ତା'ର ମୁଣ୍ଡରେ ।

ଦୁଃଖ କହେ—ଠାକୁର ସବଳତାର ପ୍ରତୀକ ନୁହନ୍ତି— ଦୁର୍ବଳତାର ପ୍ରତିମୂର୍ତ୍ତି । ଏଇ ଯେଉଁ ଠାକୁର, ଦେବତା, ଗଛ ତେରରେ କି ମାଙ୍କଡ଼ା ପଥର ମୁଣ୍ଡରେ ସିନ୍ଦୂର ବୋଳି ଗୋଳ ତଥାପି ହୋଇଛନ୍ତି, ତାକୁ ମଣିଷ ଦୁଆରକରେ କାହିଁକି ? ମଣିଷ ନିଜର ମନୁଷ୍ୟତ୍ୱ ଉପରେ ଅନାସ୍ଥାର କରିବା ପାଇଁ ନୁହେଁ ତ ? ଏ ବଳି, ଏ ଭୋଗ ପଣା, ଏ କାଳିସୀର ବିକଟାଳ ନାଚ—ତେଣେ ଅସୁମାରି ମନ୍ତ୍ରପଢ଼ ଗଢ଼ୁଛନ୍ତି—ମଲା ବେଳର ଚାଳ ର ଶଢ଼ଢ଼ା ଶୁଭୁଛନ୍ତି—ପାଟିରେ ପାଣି ଦେବାକୁ ମଣିଷ ନାହିଁ—ମୁହଁରେ ଟୋପାଏ ଔଷଧ ଦେବାପାଇଁ କାହାରି କ୍ଷମତା ନାହିଁ—କଣ୍ଠରେ ସାଗୁ କି ବାର୍ଲି

ପାଣି ମୁନ୍ଦାଏ ଦେବାର ଉପାୟ ନାହିଁ—ତଥାପି ଏଠି ଏ ରୋଗ, ଶୋଗ, ପୂଜା ? ତଥାପି କାଳସୀ କହୁଚି—'ତମ ହାତରେ ଯେ ଦେଲ ବଂଶୀ ଆମ ଦେବ ହାତରେ ସେ ଗୋଲୁ ଗାଈ ?' ତଥାପି ଲୋକେ ତାକୁ ବିଶ୍ୱାସ କରନ୍ତେ ! ସତ ଦେଖ ମିଛ ହଉ ଏ ସବୁ ଗାଁଲୁ ଅପଣାକୁ ବଞ୍ଚାଇବାର ଇଚ୍ଛାକୁ ଅଧ ମରିଯିବାର ଭୟକୁ ତୃପ୍ତ କରିବା କଥା। ଆଉ ଯିଏ ପଣ୍ଡା ମହାଯାଜକ ତା କଥା ଛାଡ଼ ହିଁଅ ନାହିଁ । ଦେବତା ନେଣିଷ୍କୁ ନେଇ କ'ଣ ଏଉଟ ଟିଏ କରି ଦେଇଛି ?

ସଂଧ୍ୟାବେଳେ ସଂକୀର୍ତ୍ତନ ହୁଏ—ନାମ ସଂକୀର୍ତ୍ତନ । ଚାଁ ଚାଁ ସାଙ୍ଗୀ ସାଙ୍ଗୀ ଟୋକାଏ କୀର୍ତ୍ତନ କରି ନାଚି ନାଚି ବୁଲନ୍ତି । ଠାକୁର ତାକୁ ଶୁଣନ୍ତୁ ନ ଶୁଣନ୍ତୁ ମଣିଷ ମନରେ ଗୋଟେ ଦମ୍ଭ ଆସେ । ମାର୍ଜ୍ଜଣାର ବାଜା ବି ସେମିତି ସାହସ ମନକୁ ଆଣି ଦେଉଥିବ । ତଥାପି ଏ ଗାଁଟାରେ ଭୟ ଭୂତ ରେ ଟିଏ ହୋଇଛି ।

ହଁ, ଭୂତ—ଭୟର ଭୂତ । ସେଇଟର ଭୟ ଗାଲି ନୁହେଁ, ତା ମଣଦେ ଠାକୁରାଣୀର ଭୟ, କାଳସୀର ଭୟ ଅଧୁର ଭୟଙ୍କର । ଗାଲି ଭୟ କରି କରି ଏ ଗାଁଟା ଯେମିତି ଅଚେତ ହୋଇ ପଡ଼ିଛି ।

ଭୟ ! ଭୟ !! ରୋଗ ଯେମିତ ନାହିଁ—ଅଛି ଖାଲି ଏଇ ଭୟଟା ।

ଉଡ଼ିର ମାହାନ୍ତି, ସେ ସାହିର ଗୋଲ । ଶ୍ୱଶୁର ଘର ଗାଁରୁ ଫେରି ଘରେ ଗୋଡ଼ ଦେଇଛି—କିଏ କହିଦେଲା ଗାଁରେ ହଇଜା ! ସନ୍ଦେହ କଥା । ସେଇଟ୍ ଦେଖେଇଲା ଝାଡ଼ା । ଦାଣ୍ଡରୁ ଦାଣ୍ଡକୁ ଗଲା ସେ ଲେଟିଅ ଧରି ପୋଖରୀ ପାଣି । ଫେରିବା ବେଳକୁ ଚେତା ନାହିଁ । ଗୋଟାଏ ଝାଡ଼ା—ଗୋଟାଏ ବାନ୍ତି—ଶେଷ ।

ମରଣକୁ ଏତେ ଭୟ । ମଇଁଷିକୁ ଭୟ କରି କରି ଗାଁଟା ଯାକ ଜୀବନକୁ ବି ଭୟ ପାଇ ଗଲେଣି । ଜୀବନ ମରଣ ଭିତରେ ତଫାତ ନାହିଁ । ଅଛି ଖାଲି ଭୟ ।

ଇଞ୍ଜେକ୍ସନ ଦେବାପାଇଁ ହେଲ୍‌ଥ ଅଫିସରଙ୍କୁ ଦେଖି ପିଲାଏ ଘର ଭିତରେ ଲୁଚିଗଲେ । ମାଇପେ ହାଣ୍ଡିଶାଳେ ପଶିଗଲେ । ମରିବେ ପଛେ ଇଞ୍ଜେକ୍‌ସନ ନେବେ ନାହିଁ । ଯେମିତି ମରଣକୁ ତାଙ୍କର ଭୟ ନାହିଁ । କିନ୍ତୁ ପ୍ରକୃତରେ ମରଣ ଭୟଠାରୁ ଇଞ୍ଜେକ୍‌ସନ ଭୟ ହେଇଯାଏ ବଡ଼ । ମରଣ ତ ଆସିନାହିଁ—ଆସି ନପାରେ । କିନ୍ତୁ ଇଞ୍ଜେକ୍‌ସନ ଯେ ଆଖି ଆଗରେ । ଯିଏ ଇଞ୍ଜେକ୍‌ସନକୁ ଡରିବ, ସେ କେମିତି ମରଣର ଭୟ ଏଡ଼ି ଦେଇ ପାରିବ ?

ଏଣେ ନୟଇ ଦୁଣ୍ଡି ଦାଶ । ଦୁଣ୍ଡି ଦାଶ ଘର ଘର ବୁଲି ବୁଢ଼ିଆଙ୍କୁ ଧରି ଧରି ଇଞ୍ଜେକସନ ଦିଆଉଥାଏ । ତା ସାଙ୍ଗରେ ଧନା ମାଷ୍ଟର । ଆଉ ସେ ଖଣ୍ଡ ମାଷ୍ଟରାଣୀ । ସେ ବି ଘର ଭିତରେ ପଶି ମାଇପଙ୍କୁ ହାଣିମାଣି ହଇଜା ଟୀକା ଦେଇ ତାଙ୍କୁ ଜବରଦସ୍ତି କରୁଥାଏ ।

ତେଣୁ ସେ ପଦଅ ଡଂସାଣି ଖଣ୍ଡ ଭଉଣୀର ଭାଷଣା ଶୁଣିଲା । ଦୁହେଁଯାକ ଦଉଡ଼ିଗଲେ ସେଠିକି । ଧନା ମାଷ୍ଟରକୁ ଟୀକା ଖାଇ ଦେଇ । ଦୁଖିଆ ଚାହିଁଲା ମାଷ୍ଟରାଣୀକି, ମାଷ୍ଟରାଣୀ ଚାହିଁଲା ଦୁଖିଆକୁ । ଆଗରେ ଝାଡ଼ା ବାନ୍ତି ରୋଗୀ ।

ପ୍ରେମ ନୁହେଁ । ଦୁହିଙ୍କର ହୃଦୟ ସାର୍ଥକତାରେ ପୂରିଗଲା । ଦୁଖି ଭାବିଲା, ମଣିଷ ପରନ୍ତୁ ଦୁନିଆରେ । ମାଷ୍ଟରାଣୀ ଭାବିଲା— ଗାଁଟା ଦୋରବସ୍ତ ମରିଯାଇ ନାହିଁ । ନାଉ ଗୁଲ୍‌ଟି—ଏବେ ବି । ଏଁ ହଇଜା କଣ ସତ ସତ ଏ ଗାଁକୁ ମାରିଦେଇ ଯିବ ? ନା—ନା— ପାରିବ ନାହିଁ—ମାରି ପାରିବ ନାହିଁ । ଦୁଖି ଦାଉ ପରି ଲୋକ

ପଛିଁ ଟାଁରେ ଅଛନ୍ତି ସେ ଟାଁକୁ ହଇଜା ହଜମ କରି ପାରିବ ନାହିଁ—ଅସମ୍ଭବ । ତା ଛାତିରେ କ୍ଷଣେ ମୋଟର ବଳ ହେଲା ।

ପଟ୍ଟନାୟକ ପରିବାର ବାବୁମାନେ ଊ ମଣିଷ । ଗରିବଗୁରୁବଙ୍କ ପାଇଁ ତାଙ୍କ ହୃଦ ସବୁବେଳେ କାନ୍ଦୁଥାଏ । ମଦନ ପଟ୍ଟନାୟକଙ୍କ ଘର କର୍ପୂରବସ୍ତୁ ୬ ଶିଶି ସଢ଼ିଗଲଣି । ପଟ୍ଟନାୟକେ ତାଙ୍କୁ ଦେଖୁଛନ୍ତି କହୁଛନ୍ତି—"ଛ'ଛଟା ଶିଶି ମୁଁ ଦେଲି । ଘର ସର୍ବସ୍ୱ ଅଗାଡ଼ି ଦେଲି । ଅଭ ଟୋପାଟାଏ କଣ ଅଛି, ଦରକାର ବେଳେ ସମୟ ଅସମୟରେ କାମରେ ଲାଗିବ ! କଣ କରିବି । ତଥାପି ଏ ନିମକହାରାମ ଲୋକେ କଣ କଥା ପଡ଼ିଲେ ଜାଣିବେ ଯେ, ମଦନ ପଟ୍ଟନାୟକ ଅମର ଏତେ କରିଥିଲେ । ହଉ ନ ମାନନ୍ତୁ । ଧର୍ମ ତ ଅଛି । ମୁଁ ଯାହା କରିଥିବି ମୋର । ତାକୁ କେହି ଛଡ଼ାଇ ନେଇ ପାରିବେ ତ ନାହିଁ । ଜାଣିଥିଲେ ଦାଉ—ଦେଇଥିଲେ ପାଇ ।"

ମୋହନ ପଟ୍ଟନାୟକଙ୍କ ଘରେ ଗୋଟାଏ ହୋମିଓପାଥି ବାକ୍ସ ଅଧା ହୋଇ ଗଲଣି । ତାଙ୍କର ବି ଡ୍ୟାମର (କର୍ପୂର) କେତେ ଶିଶି ଖରଚ ହୋଇଛି । ସେ ବି କହୁଛନ୍ତି—"କଣ କରିବି—ଔଷଧ ତ ଆସି ନଥିଲା । ମୁଁ ଲୋକ ପଠେଇଛି ତାର କରିବାକୁ, କାଲି ସୁଦ୍ଧା ସହରରୁ ଆସି ଔଷଧ ପହଞ୍ଚିବ । ବଡ଼ ଦାମିକା ଔଷଧ । ମଦନ ପଟ୍ଟନାୟକ ପାଇବ କୋଉଠୁ ? ସବୁର କର—କାଲି ଔଷଧ ଆସିଯାଉ ।"

କିନ୍ତୁ ଯମ ଆଉ ସବୁର କରେ ନାହିଁ । ବାବୁ ସାଆନ୍ତଙ୍କ ଔଷଧକୁ ବି ଡରେ ନାହିଁ । ତାରକୁ ବି ଅପେକ୍ଷା କରେ ନାହିଁ ।

ଗୋଲାମ ସାହୁର ସେ ରଣ୍ଡୀ ବୁଢ଼ୀଟା କହେ—"ତମ ଉଦ୍ କପଣକୁ ବି ଯମ ଡରେ ନାହିଁ ।"

ବୁଢ଼ୀ ଆଜ ମାଷ୍ଟରାଣୀଙ୍କ ପଛେ ପଛେ ସେ ବି ଯାଇ ମନ୍ଦିରକୁ ଯାଇଥିଲା କଂସାରୀ ବନ୍ଧୁକୁ ବଞ୍ଚାଇବା ପାଇଁ ।

ବୁଢ଼ୀ ପଚାରିଲା—"ମାଉସୀ, ତୁ ଟୀକା ନେଇଛୁ ?"

"ଟୀକା ?" ବୁଢ଼ୀ ହସିଲା । "ଯାଆନ୍ତୁ ଭଗମ ଠାକୁରାଣୀ ମାର୍ଜଣା କର ଲଗେଇ ପାରିବ ନାହିଁ କି ଟୀକା ଦେଇ ତାଙ୍କୁ ଫେରେଇ ହେବ ନାହିଁ; ପାପ ଯେ ପାପ । ସେ ଯେଉଁଠି ଥିବ, ପୁଣି ବାହାରିବ ଚାପ, ପୁଣି ବାହାରିବ ।"

"ନା ମାଉସୀ, ପାପ ଫାପ କିଛି ନୁହେଁ—ଏ ସବୁ ଗୋଟେ ରୋଗ—କଲେରା ବୀଜାଣୁ ବୋଲି ଗୋଟେ ପୋକ ଅଛି—"

"ହଁ, ହଁ ଜାଣେ—ଜାଣେ ! ମୁଁ ବି ସେଇ ପୋକ କଥା କହୁଛି । ଏଇ ପାପ ଭଳି ନାସନା ପୋକ ଆଉ କେହି ନାହିଁ । ଏଇ ପାପ ଯୋଗୁ ପୋକ ଏଣେ ମରୁଛନ୍ତି ଏ ମଣିଷଗୁଡ଼ାକ—ଅକାଳ ମୃତ୍ୟୁ ହେଉଛି ଏଙ୍କୁ । ମୁଁ ପଢ଼ି ନାହିଁ—ଏଇ ଏକା ପାଠ ପଢ଼ିଛି । ଭାଗବତ କହୁଛି—

ଏ ଘୋର କଳିଯୁଗ ଗତି । ଲୋକେ ହୋଇବେ ଦୁଷ୍ଟମତି ॥
ହିଂସା ବଢ଼ିବ ଏକେ ଏକେ । ସର୍ବେ ମରିବେ ଦୁଃଖ ଶୋକେ ॥
ଅଗମ୍ୟ କରିବେ ଗମନ । ନିନ୍ଦିବେ ନିଗମ ବଚନ ॥
ଏଣୁ ହୋଇବେ ଅଳ୍ପାୟୁଷ । ପାପେ ସକଳେ ଯିବେ ନାଶ ॥

"ଏ ରୋଗ ଯେ ଗରିବ ଗୁଡ଼ାଙ୍କୁ ବେଶି ହେଉଛି ମାଉସୀ ! ସେଇ କଣ ଏକା ପାପ କରନ୍ତି ।—ସବୁ ପାପ ତାଙ୍କର ମୁଣ୍ଡରେ ?"

"କଣ ନାହାନ୍ତି ? ଏତେ ଟେଙ୍କି ଅଛ କାହିଁ ? ଏ ମେଲଛ ଗୁଡ଼ାକ—ଯାଙ୍କୁ ଏମିତି ନୁହେଁ—ଯେଉଁଙ୍କୁ ଗାଳି କଳଙ୍କୀ ଅବତାର—କଳଙ୍କୀ ଅବତାର ! ମ୍ଲେଚ୍ଛ ସଂହାର ହେବା ଦରକାର

ଗଢିଲଣି । ରୁହ ରୁହ ବଲେ ହବ ଯେ—ଏଇ ଅବସ୍ଥ ହେଲ ବୋଲି ଜାଣିବ । ଇଏ ଅଛ ବଣ ହଳଚ କ ? ଏ ମରଣ ଅଛ କ ମରଣ ବୋଲି ଭାବଚ୍ଛ କ । ଏଇ ତ କଲିଯୁଗ ଶେଷ । ଏଇ ତ କଲ୍କି ଅବତାର—ମ୍ଲେଚ୍ଛ ସଂହାର ।”

ଦୁଖି ହସିଲ । ମାଷ୍ଟ୍ରାଣୀ ବି । ଦୁହିଁ ସେ ହସ ଦେଖିଲ ନାହିଁ । ନିଜ କଥାରେ ସେ ନିଜେ ମୁଣ୍ଡ ହଲେଇ ଜୋର ଦେଉଥାଏ । ମାଷ୍ଟ୍ରାଣୀ କହିଲ—“ଯିଏ ସବୁ ‘ବଡ଼୍‌ମଣ୍ଡ—ଏଇ ବାହ୍ମଣଲୋକ ଦେବେ, ପେଟ ପୂର ଖାଉଛନ୍ତି, ସଫା ଧୂତିରେ ରହୁଛନ୍ତି, ତାଙ୍କୁ ପାପ ଲଗୁ ନାହିଁ ? ସେ ମରୁ ନାହାନ୍ତି ?”

“ତାହିଁକି ମରିବେ ! ସେ ତ ସଫା ସୁତୁରାରେ ରହୁଛନ୍ତି । ତମକୁ କିଏ ମନା କରୁଛି କ ? ସେ ଯେମିତି ସଫା ସୁତୁରାରେ ରହୁଛନ୍ତି, ତାଙ୍କୁ ସେମିତି ଏ ପାପ ଛୁଉଁ ନାହିଁ । ତେବେ ମଲଗୁ, କିଳିଛା, କୁତୁରା ହେଲ ଗିଳିତ ତମ ଦାନ୍ତରେ ଏଇ ବାଇଗା ପାପ ନାଗୁଛି ଟିମିତ । ଯାହା ଦଇ ପାପ କରିବ, ତା ଧ୍ରୁପ ମରିବ ନାହିଁ ? ଭୋଗିବ ନାହିଁ ? ନରକ ଭୋଗିବ ନାହିଁ ତ ଅଉ କିଏ ଭୋଗିବ ? ଏ ଧିଅ ପଟ କଥାରେ କହୁଛି ଠାକୁର ମନ୍ଦର । ପକଲ ପଟେ ନାରାୟଣ । ସେଇ ଘଟରେ ତମେ ପାପ ପୂରେଇବ, ଆଉ ଠାକୁର ରହିବେ ସେଠି ?”

ପଦଅ ବଂସାଶ୍ରି ବଢ଼ୁର ଧୁଅ ଲୁଗାକୁ ନେଇ ପକେଇଲ ପାଣିରେ ବୁଡ଼ାଇ ଦୁଖିଆ କହିଲ—“ବଡ଼ଲୋକଙ୍କ ଘଟରେ କ ଠାକୁର ଥାଆନ୍ତି ମାଉସୀ ?”

“ମୁଁ ଜାଣେ ରେ ଜାଣେ । ସେଠି ଠାକୁର ଥାଏ ନାହିଁ—ଥାଏ ସଇତାନ । ଏ ଦେହକୁ ସେଇ ସଇତାନ ରଖିଲେ ରଖିବ କ ଠାକୁର ରଖିଲେ ରଖିବ । ମଣିଷ ରଖି ପାରିବ ନାହିଁ ରେ

ମଣିଷ ରଖି ପାରିବ ନାହିଁ । ବଡ଼ ଲୋକଙ୍କୁ ସେଇ ସଉଠାନ ରଖିଛି । ହେଲେ, ଦୋଷ କାହାର ? ବଡ ଲୋକଙ୍କର ନା ତମର ? ତମେ ଯେ ସେଇ ସଉଠାନକୁ ଫୁଙ୍କା କରୁଚ—ବଡ଼ ଲୋକ ଦେଖି ଫୁଙ୍କା ଦଉଚ । ଯେ ମନ୍ଦରବରର ସଉଠାନ ରଖେଇଛି ଦୋଷୀ ସେ ନା ସଉଠାନକୁ ଫୁଙ୍କା ଦେଇ ଖୋଇ ଖେଇ ବଢେଇଛି ସେ ?”

“ଯାହା କୁହ ମାଉସୀ, ଗରିବ ଲୋକେ ବଡ଼ଲୋକଙ୍କ ଭଳି ଏତେ ସଫା ସୁତୁରା ହୋଇ ପାରିବେ ନାହିଁ । ପଇସା କାହିଁ ?” ମାଷ୍ଟରାଣୀ କହିଲେ ।

“ସଫା ସୁତୁରା ହବାକୁ ପଇସା ଲାଗେ ନାହିଁ—ମନ ମନ ! ଯିଏ ସଫା ସୁତୁରା ଲୋକଙ୍କୁ ଅଧିଆ, ଅତୁବ, ବଡ଼ ବୋଲି କହି ଫୁଙ୍କା ବାଢ଼ିବ ସେ ନିଜେ ସଫା ସୁତରା ହୋଇ ପାରିବ କିପରି । ହେଲେ ଆଉ ଫୁଙ୍କା କରିବ କାହାକୁ ? ଗରିବ ଲୋକେ ଗାଲ୍ ଟିକିଏ ସଫା ସୁତୁରା ହୁଅନ୍ତେ—ଏ ସଉଠାନ ଫୁଙ୍କା ଉଡ ହେଇଯାନ୍ତା ।”

“ନା ମାଉସୀ, ତମେ ଜାଣି ନା !” ମାଷ୍ଟରାଣୀ ଆଉ କଲେ—“ଗରିବ ଲୋକେ ତ ବଡ଼ଲୋକଙ୍କ ପରି ବସି ରହି ନାହାନ୍ତି ଯେ ଦେହରେ ମଳି ଧୂଳି ଲାଗିବ ନାହିଁ । ସବୁବେଳେ ପାଣି କାଦୁଅ, ମାଟି ବାଲିରେ ଖଟି ଖଟି ଆଉ ସଫା ହୋଇ ପାରନ୍ତି ନାହିଁ । ସଫା ହବାକୁ ତର କାହିଁ ? କେତେ ବା ସଫା ହେବେ ?”

“ଧୂଳି ମାଟି ଦେହରେ ବି ମଣିଷ ସଫା ହୁଏ । ନାଲିମାଟିରେ ଲୁଗା ରଙ୍ଗେଇ ବି ଅନେକ ବାବାଜୀ ସବୁ ସଫା ଥାଆନ୍ତି । ସଜ ମାଟିରେ ବି ଲୁଗା ସଫା ହୁଏ । ସଫା ହବାକୁ ଚାହିଁଲେ ଧୂଳି ମାଟି ଉଡ଼ି ଯିବ ଆପେ ଆପେ । ତବ ବଳେ ବଳେ ମିଳିବ । ସଫା

ସୁରୁସ ହେବାକୁ ତର ମିଳୁ ନାହିଁ, ଆଉ ବଡ଼ଲୋକଙ୍କ ପଛରେ ଗୋଡ଼େଇବାକୁ, ଖୋସାମଦ କରିବାକୁ, ହାତ ଯୋଡ଼ିବାକୁ ତର ମିଳୁଚି ନା ? ମୋ ହାଡ଼ ଜଳୁଚି—ତୁ କହନା ସେମିତିଆ କଥା । ବଡ଼ଲୋକ—ବଡ଼ଲୋକ—ଏ ବଡ଼ଲୋକ ତାହା ପାଇଁ—ବଡ଼-ଲୋକ କଲା କିଏ ? ଠାକୁର ଭଲେ—ନାଁ, ତମେ ଅମେ ? ଦଲେ ଲୋକଙ୍କୁ ଠାକୁର ବାହୁଣିଙ୍କଠୁଁ ବି ବଡ଼ କରି ତାଙ୍କ ଦାଜକୁ ଯେ ତୁନି ହେଇ ସହୁ ଯାଅନ୍ତି ତାଙ୍କଠୁ ବଳି ପାପୀ ଆଉ କିଏ ଅଛି ଦୁନିଆରେ ? ମରିବେ ନାହିଁ ସେ ? ଝାଡ଼ାବାନ୍ତି ଖାଇବ ନାହିଁ ତାଙ୍କୁ ? ଆଉ କାହାକୁ ଖାଇବ ? ଆଉ କିଏ ମରିବ ?"

ଏ ବୁଢ଼ିଟା ସବୁଦିନେ ଏମିତି ଅଲକ୍ଷୁ ବାଲକ୍ଷୁ ହୋଇ କହେ । ତାକୁ ଅନେକ କହନ୍ତି ପାଗଳି ବୋଲି । କେହି କେହି କହନ୍ତି ଡାଆଣୀ । ସେ ସମସ୍ତଙ୍କୁ ଖାଇଛି—ପୁଅ ନାତି ଗେରସ୍ତ ସମସ୍ତଙ୍କୁ । ଘରେ କେହି ନାହିଁ ତାର—ଏକା । ବୁଢ଼ୀକି କେତେ ବର୍ଷ ହେଲାଣି କେହି କହି ପାରିବ ନାହିଁ । ଏ ଗାଁର ସବୁଠୁ ପୁରୁଣା ବୁଢ଼ୀ ସେ । କିନ୍ତୁ ବୁଢ଼ୀର ଏହି ଡାହାଣୀ ଦୁର୍ନାମଟା ଯୋଗୁଁ ବୁଢ଼ୀ କି କେହି ଆଦର କରନ୍ତି ନାହିଁ । ସଭାକୁ ଜଠେ କେହି ତା' ମୁହଁ ଚୁହନ୍ତି ନାହିଁ—ଚୁହିଁଲେ ଯଶ ନାହିଁ । ତାହିଁକି ପୁଣି ବୁଢ଼ୀଟା କଳହୁଣ୍ଡି ଯେ ସମସ୍ତଙ୍କ ସାଙ୍ଗେ ଏମିତି ଚୋଖଣ୍ଡି ଲଗେଇଥିବ । ହଉ କଥାରେ ଠକ ଠକ ନ ଥାଏ ତାର ।

ଅଉ ଏତିକି ଭଲ ଗୁଣ, ଯାହାର ଯାହା ହେଲା ବୁଢ଼ୀ ଜରୁର ଖବର ନବ । ନିଜେ ଗଲା କିଏ କାଲେ କ'ଣ କହିବ, ସେଥିପାଇଁ ସେ ଶହେ ଲୋକଙ୍କ ହାତରେ ପଚାରି ପଠଉଥିବ; ଔଷଧ ବଟେଇ ଦେଉଥିବ । ଜର ହେଲେ ତ ହିଂହାରଦାର ପଦ ଭେଜି

ରସରେ ପଣସ୍ତ ପୃଷ୍ଠ ଦେଇ ପେଲ ଦେ । ଝାଁଙା ହେଉଛି ତ ପେଟ ଗରମ ହେଲା—ଶୁଣିଲେ ବୁଢ଼ୀ କହିବ—ବାଙ୍ଗର୍ ଛା ପଥର—ବାଙ୍ଗର୍ ଲା ପଥର—ନ ହେଲା; ଦ'ଦସ୍ତା ହେଲା ଜଲଦ—ଜଲଦ । ତାହାକୁ ବଡ ହଜମି ହେଲା ତ ବୁଢ଼ୀ ନିଜେ ନିଜ ବାଉନ୍ସ ପୋଦନା ପଥର ଗୁଣ୍ଡି ପଠେଇ ଦବ । ତଥାପି ବୁଢ଼ୀର ଦୁର୍ଦ୍ଦନା ।

ଯାହାର ବ୍ୟାଧି ଅତି ଅଧିକ ହୁଏ—ମର ମର ହେବାକୁ ବସେ—ବୁଢ଼ୀ ଅଉ ସମ୍ଭାଳି ପାରେ ନାହିଁ । ନିଜେ ଛୁଟିଯାଏ ଦେଖିବାକୁ । ନିଜେ ହାତ ଦେଇ ସେବା କରେ—ସେଇ ଥରିଲା ହାତରେ—ସାକ୍ଷାତ୍ ମା ପରି ।

ତଥାପି ଦୁର୍ଦ୍ଦନା । ଶେଷ ଅବସ୍ଥାରେ ଯେତେବେଳେ ସମସ୍ତେ ଆଶା ଛାଡ଼ି ବସନ୍ତି ସେତେବେଳେ ବୁଢ଼ୀ ଯାଏ । କିଏ ବା ବଞ୍ଚେ କିଏ ବା ମରେ—ଅଧିକାଂଶ ମରନ୍ତି । ସେଥିପାଇଁ ବୁଢ଼ୀ ଦେଖି ରୋଗୀ ପାଖକୁ ଗଲେ ଲୋକେ ଫୁସ୍ ଫାସ୍ ହୁଅନ୍ତି—ହେଇଟି ବୁଢ଼ୀ ଆସିଲାଣି । ତା' ମାଣ ପୂରିଗଲା, ଆଉ ସେ ବଞ୍ଚିବ ନାହିଁ ।

ଯିଏ ମରନ୍ତି ସେ ବୁଢ଼ୀ ଉପରେ ଦୁର୍ଦ୍ଦନା ନଦ ଦେଇ ଯାଆନ୍ତି । ଯେ ବଞ୍ଚନ୍ତି, ସେ କହନ୍ତି ଭାଗ୍ୟ ଥିଲା ବଞ୍ଚିଗଲା । ଗାଳ ଯମ କତୁରରୁ ନୁହେଁ, ବୁଢ଼ୀ ମୁହଁରୁ ବି । ବୁଢ଼ୀ ଯାହାର ଯେତେ କରୁ, ତାହାର ମୁହଁରୁ ସେ ଦିନେ ସୁଖ୍ୟାତି ଶୁଣି ନାହିଁ । ଯିଏ ବୁଢ଼ୀର ସେବା ଶୁଶ୍ରୂଷାରେ ଭଲ ହୁଏ ସେ ଦୁଃଖ ରୋଗରୁ ନ ଉଠୁଣୁ ଠାକୁରଙ୍କ ଗୁଣ ଅନ୍ଧ ଦେବତାଙ୍କ ଆଣି ବାନ୍ଧେ । କାଳେ ଦୃଷ୍ଟି ପଡ଼ି ଯାଇଥିବ—ଲୁଣ ନ ଥିବ ।

ବୁଢ଼ୀ ଦୁଖିଆ ଆଉ ମାଷ୍ଟରାଣୀଙ୍କି ଅନେକ କହୁଛି—ତୁଅ ଧ'ଟା ଢେଢେବେଙ୍କୁ ଆସିଲେଣି—ତମେ ଯା—ମୁଁ ଜଟି ବଇଠ। ଛନ୍ତା ନାହିଁ। ମୁଁ ଜଗି ବସିଥିବା ଯାବେ ଯମର ସାଧ ନାହିଁ ମୋ ଅଗରୁ ମୋ ତୁଅକୁ ଟାଣି ନେଇ ଯିବ। ଯା—ଯା—ଶୋଇବ ଯା ତମେ।

ଦୁଖିଆ କହୁଛି—"ହଉ ମାଉସୀ, ତୁ ଥା। ମୁଁ ଗଣ୍ଡେ ଖାଇ, ପାଣି ପାଢ଼ୀ ଅବ, ବୁଲି ଆସେଁ।"

ମାଷ୍ଟରାଣୀ କହିଲେ—"ମୁଁ ବି ଯାଆନ୍ତି ଆପଣଙ୍କ ସାଙ୍ଗରେ। କିନ୍ତୁ ପାଣି ପାଢ଼ୀ କି ଗଲେ ଓଝନାହାକ ଘର ଯଦ—"

"ଆପଣ ପାଣି ପାଢ଼ୀ ନ ଯାନ୍ତୁ—ଯଦ ପାରନ୍ତି ଅଉ ଲୋକଙ୍କୁ ଦେଖନ୍ତୁ। ଓଝନାହକ ଘରୁ କହୁଁ ଗଦେଇ ଯେଉଁଠି ପାଇବେ ଅନନ୍ତୁ। ଫାଲ୍ ଅସିଲେ ଫାଲ୍ ଦେବବ। ଜଣେ ହେଲଥ ଇଡ଼ିସର ଆସିଛନ୍ତି। ଆଉ ଜଣେ ଡାକ୍ତର ନ ଆସିଲେ ଚଳିବ ନାହିଁ। ମୁ ପୁଣି ଲୋକ ପଠେଉଛୁ। ଦେଖାଯାଉ—ଭଗବାନଙ୍କ ଇଚ୍ଛା।"

ଦୁଖି ଯାଇଁ ଦୋକାନ ଘରେ ପହଞ୍ଚିଛି। ଗାଧୋଇ ପାଧୋଇ ଖାଇ ବାହାରିଛି—ଘରକୁ ଯିବ। ତେଣୁ ମାଷ୍ଟରାଣୀ ଅପି ହାଜର।

"କୁଅଟେ?" ଦୁଖି ଅଣ୍ଟୁଆ ହେଲା—କଣ ହେଲା କି?

"ଓଝନାହକ ଘର ଘଡର ପୂରେଇ ଦେଲେ ନାହିଁ।"

"ମାନେ?"

"ବାର ଅଟେ ବୁଲି ଝାଡ଼ାବାନ୍ତି ରୋଗୀଟାକୁ ସେବା କରୁଛି।"

"ଲୁଗା ପଟା ଧୋଇ ଗାଧୋଇ ପାଧୋଇ—"

"ଏକୁ କହୁଛି। ଫିନାଇଲ ପାଣିରେ ଲୁଗା ଧୋଇଛି—ହାତଗୋଡ଼ ବି ଧୋଇଛି।"

ଦୁଖି ଅଳ୍ପ ହସିଲା । କହିଲା—"କିଛି ଚିନ୍ତା ନାହିଁ—ଆପଣ ଆଜଠୁଁ ମୋ ଘରେ ରହିବେ ।"

ଦୁଖିର ଘର ? ହଁ ଦୁଖିର ଘର । ଦୁଖି ଘର ଭିନେ—ବାପ ଠାରୁ ଅଲଗା । ସେ ତ କେତେ ଦିନର କଥା । ଏବେ ସେ ଅନେକଟା ଲାଗିଲଗି ହୋଇଗଲେଣି । ତଥାପି ଅଲଗା ରହୁଛି । ବାପ ଆଉ ପୁଅ ଭିତରେ ଯେତିକି ଲଗା ସେତିକି । ପୁରୁଣା ଆଉ ନୂଆ ଭିତରେ ଯେତିକି ଅଲଗା, ଯେତିକି ଛଡ଼ାଛଡ଼ି ସେତିକି ତଫାତ୍ ।

ଅଗଣିଦାଶ ବନ୍ଧୁ ଘରକୁ ଆଣିବାବେଳେ ଆଉ ଅଲଗା କରି ପାରିଲା ନାହିଁ ପୁଅକୁ । ବନ୍ଧୁ ଘରକୁ ଆସିଲା । କନ୍ୟା କାଳପରେ ଆଉ ବାପଘରେ ଝିଅ ରହିବା ପାପ । ପୁଅ କହିଲା, ମୁଁ କିଛି ଜାଣେ ନାହିଁ । ବନ୍ଧୁ ନ ଆସୁ । ଅଗଣିଦାଶ ନାକକାନ ମୋଡ଼ି ହୋଇ ପୁଅର ବାହାଘର କଲା । ଦୁଖିର ପୁନର୍ବିବାହ ହେଲା । ବନ୍ଧୁ ଆସି ଘରେ ରହିଲା—କୁଳବଧୂ ହୋଇ । କିନ୍ତୁ ଦୁଖିଆର ଭାଗ୍ୟ ସେଇ ଦୋକାନ ଗୁଳରେ । ସେଇଠି ଅରଖ ଗଣ୍ଡେ, ଭଣା ଗଣ୍ଡେ ପଡ଼ିଥାଏ । ଦଉଡ଼ିଆ ଖଟିଆଟାଏ ଶୋଇବାକୁ । ଘରକୁ ଆସି ଖାଇଯାଏ । ଦଣ୍ଡେ ଘଡ଼ିଏ ବସେ । ତା'ପରେ ଦୋକାନ । ଘର ସାଙ୍ଗରେ ତାର ସେତିକି ସଂବନ୍ଧ । ଦିନେ ଦିନେ ସେଇ ଗୁଳରେ ସେ ନିଜେ ଭାତ ଫୁଟେଇ ଦିଏ, ବିଶେଷତଃ ଯେଉଁଦିନ ବଂଶରାଣୀ ଭଣିଆ ଆସନ୍ତି ।

ଆଜି ବି ସେ ଛାତ ଗଣ୍ଡେ ପୂରେଇ ଦେଇ ପାରିଥାନ୍ତା—ଅନ୍ତୁ ଦଶା ଚଳେଇ । କିନ୍ତୁ ଏତେ ବେଳ ହେଲଣି ଅସି । ଭସ୍ତୁ ହେଳା, ଘରେ ପଦ ଭାତ ନଥାଏ । ପୁଣି ମାଷ୍ଟ୍ରାଣୀ—ମାଇପି ଲୋକଟା—ଦୋକାନ ଘରେ ସବୁଦିନେ ରହିବ ବା କିମିତି ?

ଦୁଖି 'ମୋ ଘର' ବୋଲି କହି, ଛବୁଁ ଭବୁଁ ବାପ ଅଗଣ ଦାଖ ଘରମୁହାଁ ଚାଲିଲା । ତା ପଛେ ପଛେ ମାଷ୍ଟ୍ରାଣୀ ।

ଘରେ ମା । ଅଗଣି ଦାଣ ନାହିଁ—ଯାଇଥାଏ କୁଆଡ଼େ । ଦୁଖି ସ୍ତ୍ରୀ ବାପଘରେ ।

ଦୁଖି ମା ମାଷ୍ଟ୍ରାଣୀ ଙ୍କୁ ଦେଖି ଗୃହିଁଲା । ଦୁଖି ମାକୁ କିଛି ନ କହି ମାଷ୍ଟ୍ରାଣୀଙ୍କ ପାଣି ଆଣିଦେଲା ଗୋଡ଼ ହାତ ଧୋଇବାକୁ । ନିଜେ ଗୋଡ଼ହାତ ଧୋଇ ଦରକୁ ଗଲା । ମାଷ୍ଟ୍ରାଣୀ ପଛେ ପଛେ ଆସୁଥାଏ—ଏତେବେଳେ, ଦୁଖି ମା ଫୁସ ଫୁସ ହୋଇ ପଚାରିଲା—"ସେ କିଏ କିଠୁ ! ମାଇପିଟେ—କୁଟିକି ଅସିଛୁ ?"

"ସ୍କୁଲ ଉଚ୍ଚ ମାଷ୍ଟ୍ରାଣୀ । ପାଟି କରନା । ଶୁଣିବ । ହାଇଜାରେ ସେ କେତେ କାମ କରୁଛି ।"

"ଜାଣିଲି ଯେ । ମୁଁ କ'ଣ କହୁଛି କିଛି ? ତୋ ବାପ ଅସିଲେ ଯେ କିଅଁ ବାଣ ହେଇଯିବ । ଜୁଆନ ମାଇପିଟା—ବାହା ହେଇଚି ନା ?"

"ହେଇଣି ମା, ମୁଁ ଜାଣେ ନାହିଁ ଏତେ କଥା । ପଟ୍ଟନାହାକ ଘରେ ଥାଏ । ତାଙ୍କର ଚଢ଼ପାଢ଼ୀରେ ଗାଁ ଝିଅଙ୍କୁ ପଢ଼ାଏ । ଆଜି ହାଇଜାରୋଗୀଙ୍କି ସେବା କରୁଛି ବୋଲି ଘରେ ପୁରେଇ ଦେଉ ନାହାନ୍ତି ।'

'ଯେ ଯୋଉ ଘରେ ନ ପୁରେଇଲେ, ତୁ କୁ ସାହାସରେ ପୁରେଇବୁ ଆଣି ?"

''ଭାଗ୍ୟରେ ଯାହା ଥିବ ।''

"ଅଚଲ୍ ଦେଖ । ଭାଗ୍ୟରେ ଥିବ ବୋଲି ମଣିଷ ଜାଗତା ରହିବ ନାହିଁ ।''

ତେଣେ ଦାଣ୍ଡରେ କିଏ ଡାକ ପକେଇଲା । ମାଷ୍ଟ୍ରାଣୀ ଅଛି ଦୁଇଁ ପାଖରେ । ଦୁଖି ଦାଣ୍ଡକୁ ଯାଇ ଦେଖିଲା, ତା ଶଶୁର ଘର ଗାଁର ଲୋକ । ଭଷା ଖଣ୍ଡ ତା' ହାତରୁ ଅଣି ଦୁଖି ପଡ଼ିଲା । ତାପରେ ଚୂପ୍—ଗମ୍ଭୀର । ସେ ଲୋକଟିକୁ ଅପ ଖାଇବାକୁ ଦେଲା । କହିଦେଲା ଅବଧା ପାଟି ଗୁଣ୍ଡି କିଛି କର୍ନା । ସେ ଲୋକଟି ଭୁନ ଫଣ ରହିଲା । ମା ପଚାରିଲା—"ବାହୁଁଡ଼ ଅସିଚ କ'ଣ ରେ ?"

''ଭଷା ଅଣିଛ ।"

''କି ଭଷା ?''

''ଯିବାପାଇଁ ଲେଖିଚନ୍ତି ।''

"କିଏ—ତୋ ଶଶୁର ? କାହିଁକିରେ ?"

''ଖାଲିଟା—ଏମିତି ।"

''ଯାଉନୁ''—ଭୁଲ୍ ଅସିବୁ । ଯେତେ କହିଲେ ତୁ କଣ ଶୁଣିବୁ ଯେ ! ମନ କରୁଥିଲେ ଯେଉଁ ଦ'ଥର ହୋଇ ଅସନ୍ତୁ—କେତେ ବା ବାଟ । ଗାଇଦେଲେ ଜଣ ଲୋକଟିଏ ବାହାର ଯା—ବାହୁଁଡ଼ ଡାକଚନ୍ତି—ଭଲ କି ମନ୍ଦ ବୁଝି ଅସିବୁ ।''

'ହଉ' ବୋଲି କହି ଦୁଖି ମାଷ୍ଟ୍ରାଣୀ ପାଇଁ ଭାତ ବାଢ଼ି ଦେଇ ବସିବାକୁ କହିଲା ।

ମାଷ୍ଟ୍ରାଣୀ ପଚାରିଲେ 'ଆଉଣ ?'

ଦୁଖି ଲଜ୍ଜିତ ହୋଇ ଅସିଲା । କହିବସିରେ ନିଜକୁ ସଂଯମ କରି କହିଲା—'ଆପଣ ଖାଇ ସାରନ୍ତୁ ।'

'ନା—ନା—ଆପଣ ନ ବସିଲେ—ମୁଁ ବସିବି ନାହିଁ ।''

ଦୁଖି ଘଡ଼ିକ ସ୍ନାନ କରିନେଲା । ଭାଗ୍ୟକୁ ଘରେ ଭାତ ଥିଲା । ସେ ବାଢ଼ି ଆଣିଲା । ଦୁହେଁଯାକ ବସିଲେ ।

ଖାଇସାରି ମାଷ୍ଟରାଣୀ କହିଲେ—ଆପଣ ଟିକିଏ ବିଶ୍ରାମ ନିଅନ୍ତୁ । ମୁଁ ବୁଲିଲି ପାଣି ସାହିକୁ । ଦୁଖି ରାଜିହେଲା । ଇସ୍କୁଲ ଭିତରେ ଦୁଖି ମା ପାଇଁ ପଚାର ଆରମ୍ଭ କରି ଦେଇଛି, ଦୁଖି ଶଶୁର ଘରୁ ଆସିଥିବା ଲୋକଟିକୁ । ଖୋଲି ଚାଉ ପଚାରୁଛନ୍ତି । ମାଷ୍ଟରାଣୀ ଘରୁ ବାହାରି ପାଣିହାତ ବାହାରି ପାଇଛନ୍ତି କି ନାହିଁ, ବୁଢ଼ୀ କାନ୍ଦି ଉଠିଲା—"ହେ ମୋ ଝିଅ—ମୁଁ କ'ଣ କରିବି ରେ ଦୁଖିଆ—ତୋ ବାପକୁ ଡାକ୍‌ରେ ଦୁଖିଅ ।"

ମାଷ୍ଟରାଣୀ ଫେରି ଗଲେ । ପଚାରିଲେ—'କ'ଣ ମାଉସୀ ?'

'ମୁଁ କ'ଣ କରିବି ଝିଅ ? ମୋତେ ତ କିଛି ଦିଶୁନାହିଁ । ଦୁଖି ଭାଇଯାକୁ ଠାକୁରାଣୀ—'

ମାଷ୍ଟରାଣୀ ବୁଝିଲେ । ଦୁଖି ଘର ଭିତରେ ଠିଆ ହେଉଛି—କାଠ ପୁଣି ନିର୍ବେଦ—ନିସ୍ପନ୍ଦ ।

"ଦୁଖି ବାବୁ ଆପଣ ଠିଆ ହେଇଛନ୍ତି କ'ଣ ?'

"ଏଁ—ହଁ । ମୋତେ ଯିବାକୁ ହବ, ନା ? ମୁଁ ତାହେଲେ ପାଣି ସାହିକୁ ଯାଉଛି—ତମେ—ଆପଣ ସେ ଶଙ୍କା ଘରକୁ ଯାଆନ୍ତୁ ।"

"ଆପଣ ଶଶୁର ଘରକୁ ଯିବେ ନାଇଁ ?"

"ଏ ଟାଆକୁ କାହା ହାତରେ ଛାଡ଼ି ଯିବି ?"

"ମୁଁ ଅଛି ।"

"ଏକୁଟିଆ ଆପଣ ପାରିବେ ନାହିଁ ।"

"ପୁଣି ସେଠିକି ଯିବା ତ ଆପଣଙ୍କର କର୍ତ୍ତବ୍ୟ ।"

“ହଁ, ଭବିଷ୍ୟେ ଓ ସ୍ୱାର୍ଥ ଭରସୁ । ଏଠି କେବଳ ଭବିଷ୍ୟ । କେଉଁଠା ଭଙ୍ଗିବ ? ଆପଣ କହନ୍ତୁ ।”

ମାଷ୍ଟରାଣୀ କିଛି କହିପାରିଲେ ନାହିଁ । ଦୁଃଖି ଧୀରେ ଧୀରେ ଘରୁ ବାହାରିଲେ । ଶଶୁର ଘର ଲୋକଟା ଚିତ୍କରିଲା—“ନା ନା ଯିବ ପେ ।”

“ମୁଁ ଯିବ, ଭୁ ଯା ।”

ଝଗଣିଦାସ ଆସି ଶୁଣିଲାପରି ନାଚିଁ ଢେଇଗଲ । “ମୁଁ ଜାଣେ —ମୁଁ ଜାଣେ—ସେ ଟୋକାଟା ପଥର—ସେ ଟୋକାଟା ଅପଣିଷ୍ଟ । ବହୁଟାକୁ ଧନକର ଧନେ ସୁଖ ପାଇଲା ନାହିଁ । ମୁଁ ବାହା କରେଇ ବହୁ ଆଣିଥିଲି ବୋଲି ତାର ଏତେ ଅହଙ୍କାର । ମୁଁ ଜାଣେ । ଅଜା ଭାଲିଆ ଟୋକାଙ୍କ କଥା କ'ଣ ମୋତେ ଅମାଲୁମ୍ ? ହଇ ନ ଯା'ଛୁ ! ମୁଁ ଯିବ—ମୋ ଲଗା ଛାଡ଼ି ଦିଅ—ମୁଁ ଯିବି । ମୁଁ ମୋ ବହୂକୁ ବଞ୍ଚେଇବ—ମୁଁ ମୋ ଝିଅକୁ ବଞ୍ଚେଇବ । ଭାବନ୍ତୁ ଏ ବୁଢ଼ା ଦେହରେ ବଳ ନାହିଁ—ମନରେ ଜୋର୍ ନାହିଁ—ନା ? ଅଚ୍ଛା, ଦେଖିବା ଭଲ ।”

ବୁଢ଼ା ସାଙ୍ଗେ ସାଙ୍ଗେ ଛତା ବାଡ଼ି ଧରି ଲାଗାତର ଭାଗରେ ଯାଇ ଖଣ୍ଟରେ ଭ ସମ୍ବନ୍ଧଘରକୁ ବାହାରିଲେ—ବାଟ ଦୁଇକୋଶ ।

ମାଷ୍ଟରାଣୀ ପଚାରିଲେ—“ଦୁଃଖିଶ୍ୟାମ ବାବୁ, ଆପଣ ଗଲେ ନାହିଁ ?” ଦୁଃଖି ଅଳପ ହସିଲେ । ସେ ହସ ଯେମିତି ଆପଣାକୁ ବହଲେଇବାର ହସ । କେତେବେଳ ପରେ କହିଲେ—‘ସେଠି ତ ତାକୁ ଦେଖିବାକୁ ଲୋକ ଅଛନ୍ତି—ବାପ ମା, ଭାଇଭଉଣୀ—ସମସ୍ତେ । ଏଠି ଏ ଗଡ଼ବଗୁଡ଼ାଙ୍କୁ ଦେଖିବ କିଏ ? ଗୋଟିଏ ଜୀବନ ପାଇଁ ଏତେଟା ଦୁଃଖ ଜୀବନକୁ ଉପେକ୍ଷା ଦେଇ ଯିବ ?’

ମାଷ୍ଟରାଣୀ ଚାହିଁଲା ହୋଇ ଅନେଇ ରହିଲେ । ଏ କ'ଣ ମଣିଷ ? ଛଳନା କରୁନାହିଁ ତ ଅଉ । ଦୁଃଖି ଜଣ ତା'ର ସ୍ତ୍ରୀକୁ ଭଲ ପାଏ ନାହିଁ । ନା—ଏ ଦେବତା ? ଅସ୍ତେ ଅସ୍ତେ ତାର ମୁଣ୍ଡ ତଳକୁ ହୋଇ ଅସିଲା ।

ମାଷ୍ଟରାଣୀ ପୁଣି ଥରେ ଅନୁରୋଧ କଲେ—"ଅପଣ ଯାଆନ୍ତୁ—ମୁଁ ଅଛି ।"

"ତମେ ପାରିବ ନାହିଁ—ମୋର ଖାଲି ତମେ ହେଇ-ଯାଉଛି—କ୍ଷମା କରିବେ ।"

"ଅପଣ ମୋତେ ଅପଣ ବୋଲି କହିବା ଅନ୍ୟାୟ ।"

"ଅଛା, ଏଣିକି ତମେ ବୋଲି କହିବି—ଅପଣଙ୍କ ନାଁ ବି କ'ଣ ଜାଣେ ନାହିଁ ।"

"ପୁଣି ଅପଣ କହିଲେ ? ମୋ ନାଁ ଦେବକୀ ।"

"ଦେଖନ୍ତୁ ଦେବକୀ ଦେବୀ, ଅପଣ—କିଛି ମନେ କରିବ ନାହିଁ—ଅସ୍ତେ ଅସ୍ତେ ତମେ ହେଉଥିବ—ତମେ ଏକୁଟିଅ ଏତେ ଲୋକଙ୍କୁ ସେବା କରି ପାରିବ ନାହିଁ । ଅମେ ଭାଗ ହେଇଯିବା । ମୁଁ କଣ୍ଡର ସାହିକୁ ଯାଉଛି । ତମେ ଏ ସାହିରେ ରୁହ । ଧନୀ ମାଷ୍ଟର ତମକୁ ସାହାଯ୍ୟ କରିବ ।

ତାପରେ ଦିନ ଗଡ଼ି ଚାଲିଲା । ଝାଡ଼ାକଇ ସଂକ୍ଷପୀର ମନ ବୋଧ ହେଲା ନାହିଁ । ଗୋଟାକ ପରେ ଗୋଟାଏ ଲୋକ ଗଡ଼ିମରି ଯାଉଛନ୍ତି । ଔଷଧ ପତ୍ର କିଛି ଶୁଣୁ ନାହିଁ । ଖାଲି କ'ଣ ଏ ଝାଡ଼ା ବାନ୍ତି ମାରୁଛି । ଏ ରୋଗଟା ଉପଲକ୍ଷ । ଲୋକଗୁଡ଼ାକ ଯିମିତ ଆଗରୁ ମରିକି ରହିଛନ୍ତି । ଝାଡ଼ାବାନ୍ତି ଧରିଲା, ଗଲେ । ରୋଗ ସହିତ ଯୁଝିବାର ଶକ୍ତି ନାହିଁ କାହାରି । ଦୁର୍ଗଶ୍ୟାମ ସେ ବୁଢ଼ୀର

କଥା ଖାଲି ବାରମ୍ବାର କାନପାଖରେ ଶୁଣିଥାଏ—ପାପ—ପାପ । ମାତ୍ର ଏ ପାପର ପ୍ରାୟଶ୍ଚିତ୍ତ କ'ଣ ?

ପୁଣି ହସେ । ପାପ କରିବ ଜଣେ—ଭୋଗିବ ଆଉ ଜଣେ ? ଏ ଗରିବ ଗୁଡ଼ାକର କି ଅପରାଧ ? ତାଙ୍କୁ ଅପରିଚ୍ଛନ୍ନ କରିଛି କିଏ ? ତାଙ୍କ ତୁଣ୍ଡରୁ ଦାନା ଛଡ଼େଇ ନେଇ ତାଙ୍କୁ ଦୁର୍ବଳ ଦରମରା କଲା କିଏ ? ଏଇ ବଡ଼ ଲୋକ, ମହାଜନ ଜମିଦାର, ଏଇ ପୁଲିସ ପ୍ରେସିଡେଣ୍ଟ, ଏଇ ଡାକ୍ତର ଉପଟି, ଉକିଲ ମୁକ୍ତାର, ଏଇ ମନ୍ତ୍ରୀ ମେମ୍ବର, ଲାଟ ଗଭର୍ଣ୍ଣର । କାହିଁ, ତାଙ୍କର ତ କିଛି ହଉନାହିଁ—ତାଙ୍କୁ ତ ବାଡ଼ ପଡ଼ୁନାହିଁ ? ଗରିବଙ୍କ ଗରମ ନିଃଶ୍ୱାସରେ ଲାଟ କୋଠିରେ ନିଆଁ ତ ଲାଗି ଯାଉ ନାହିଁ ? ଏ ନିରନ୍ନ ଲୋକଙ୍କ ହାହାକାରରେ ବାହାର ମୂର୍ଚ୍ଛନାପାତ ତ ହେଉନାହିଁ !'

ତାଙ୍କୁ ସବୁ ପାର । ସବୁ ତାଙ୍କର ନ୍ୟାୟ, ଧର୍ମ । ତଥାପି ଈଶ୍ୱର ଅଛନ୍ତି—ତଥାପି ଭଗବାନ ଶୁଣୁଛନ୍ତି । ମଣିଷ ଏ କଥା ବିଶ୍ୱାସ କରିବ—ବିଶ୍ୱାସ କରିବାକୁ ବାଧ୍ୟ ।

ଦୁଃଖିର ମନ ବିଦ୍ରୋହ କରି ଉଠିଲା । ଗୋଟିକ ପରେ ଗୋଟିଏ ଶବ ସଂସ୍କାର କରି ସେ ଗୋଟିଏ ଗୋଟିଏ ନିଃଶ୍ୱାସରେ ଏଇ ମାଟି ତଳେ କେତେ ଅତ୍ୟାଚାରର ଇତିହାସକୁ କବର ଦେଇ ଆସେ, ପୁଣି ଯାଏ ଆଉ ଜଣକ ପାଖକୁ । ଏ ସବୁ ତାର ସରେ ନାହିଁ ।

ହାଡ଼ାବାନ୍ଧଣା ସବୁ ଅଡ଼ୁ ଗୁଣ୍ଡ ଆସି ଦନ୍ତ ବାମୁଣ ପଣ୍ଡ ରହିଲା ସେଇ କଣ୍ଡ୍ରା ସାହିରେ । କିଛି ନଥିବ, ହଠାତ୍ ଦେଖାଦିବ ଜଣକୁ ଧରିଲା—ବାସ୍ ଦୁଇ ତିନଧାନ ପରେ ଶେଷ । ଏମିତି ଲାଗି ରହିଲା ।

ଆଠଦିନ ହୋଇଗଲା । ଅଗଣିଦାଣ ଗଲା ରବିବାରକୁ ରବିବାର ଆଠ, ସୋମବାର ନ, ମଙ୍ଗଳବାର ଦଶ, ଦିନହେଲା,

ଫେରିନାହିଁ । ଖବର ଆସୁଛି କେବଳ—ଭଲଅଛି । ଜଣେ କିଏ ଆସି କହିଲା ବହି ଖୋଜୁଛି—ଦୁଖି ବାବୁଙ୍କୁ ।

ଦେବକୀ ଯାଇ କହୁଛି—'ଦୁଖିବାବୁ, ଯିବେ ନାହିଁ ?'

ଦୁଖି ଅଖିରୁ ଟୋପାଏ ଲୁହ ଗଡ଼ି ପଡ଼ିଲା । ଦେବକୀ ମଧ୍ୟ କାନ୍ଦି ପକାଇଲା ।

"ଆପଣ ଯାଅନ୍ତୁ ।" ଦେବକୀ ଲୁହ ପୋଛୁ କହିଲା ।

"ଦେବକୀ ଦେଈ, ସେ ମରିଥିଲେ ଆଜକି ଦଶଦିନ ହୁଅନ୍ତାଣି । ଯେତେବେଳେ ଯିବା କଥା ଥିଲା, ସେତେବେଳେ ଯାଇ ନାହିଁ । ଆଜି ସେ ସନେକଟା ଭଲ ହୋଇ ଆସିଲେଣି । ମୋ'ଜ ମୁହଁରେ ଯିବି ?"

"ନା—ନା—ଅପଣଙ୍କୁ ଯିବାକୁ ହେବ—ଏସବୁ ନିହାତ ପିଲାଳିଆ କଥା ।"

"ପିଲାଳିଆ ନୁହେଁ । ମୁଁ ଭାବୁଛି, ଯିଏ ସମସ୍ତଙ୍କ ପାଇଁ କରେ, ତାକୁ କଣ ନିଜପାଇଁ କରିବାକୁ ମନା ? ମୁଁ ନିଜ ତୁଚ୍ଛ ଅନ୍ୟାୟ କରି କଣ ସମସ୍ତଙ୍କର ମଙ୍ଗଳ କରି ପାରିବି ?"

"ଦୁଖିବାବୁ, ମୁଁ ଏତେବଡ଼ କଥା ବୁଝିପାରେ ନାହିଁ— ମୁଁ ମାଇପି ଲୋକ—ମୁଁ ଏତିକି ଜାଣେ, ପର ପାଇଁ ଯାହା ପ୍ରାଣ କାନ୍ଦେ, ନିଜ ପାଇଁ କାନ୍ଦିବାକୁ ତାର ବେଳ କୁଳାଏ ନାହିଁ । ସେ କଣ ମନକଲେ ନିଜ ପାଇଁ କାନ୍ଦି ପାରନ୍ତା ନାହିଁ ! ସେ କଣ ଏତେ ଅମଣିଷ ପଶୁ ? ନିଜପାଇଁ ତ ସମସ୍ତେ କାନ୍ଦି ପାରନ୍ତି ।"

"ମୁଁ କ'ଣ ତା ଛଡ଼ା ମୋର କର୍ତ୍ତବ୍ୟ କହୁଚି ।"

"ଆପଣ କରି ନ ଥାଇ ପାରନ୍ତି । ଆପଣ ଦୁଖିଶ୍ୟାମ ଦାଶ ଶ୍ରୀମତୀ"—

"ସ୍ତ୍ରୀ ତା"

"ଶ୍ରୀମତୀ ସୀତା ଦେବୀଙ୍କ ପ୍ରତି କର୍ତ୍ତବ୍ୟ କରି ନ ଥାଇ ପାରନ୍ତି, କିନ୍ତୁ ସ୍ତ୍ରୀ ପ୍ରତି ସ୍ୱାମୀର କର୍ତ୍ତବ୍ୟରେ ତ ତ୍ରୁଟି ହୋଇନାହିଁ।"

"ମୁଁ ବୁଝିପାରୁ ନାହିଁ ତମ କଥା । ବରଂ ତମେଇ ବଡ଼ କଥା କହିବାକୁ ଆରମ୍ଭ କଲ ।"

"ବଡ଼ କଥା ନୁହେଁ । ନିହାତି ଛୋଟ କଥାଟିଏ । ଆପଣ ଏ ଗାଁରେ ଯେତେଟି ସ୍ତ୍ରୀଙ୍କୁ ଜୀବନ ଦେଇ ଯେତେଟି ସ୍ୱାମୀଙ୍କର ସୁହାଗ ସଂସାରକୁ ଟେକି ଧରିଛନ୍ତି, ସେତିକିରେ ଜଣ ଜଣେ ସ୍ୱାମୀର କର୍ତ୍ତବ୍ୟ ପୂରା ହୋଇ ନାହିଁ । ବରଂ ଢେର ବେଶି ହୋଇଛି ।"

"ଦେବକୀ ଦେଈ, ମଣିଷ ମୁଁ, ମୋର ଘରଦ୍ୱାର, ଚିକି କୁଟୁମ୍ବ ଅଛନ୍ତି । ମୋତେ ସେମାନଙ୍କୁ ଯେମିତି ଦେଖିବାକୁ ହେବ, ପ୍ରତ୍ୟେକର ନିଜ କୁଟୁମ୍ବଙ୍କୁ ସେମିତି ଦେଖିବା କଥା । ସମାଜରେ ଯେତେବେଳେ ସମସ୍ତେ କର୍ତ୍ତବ୍ୟ ଭୁଲିବେ—ନିଜର ନିଜ କୁଟୁମ୍ବଙ୍କ ପ୍ରତି କର୍ତ୍ତବ୍ୟ କରିବାକୁ ଅକ୍ଷମ ହେବେ, ସେତେବେଳେ ଜଣେ ଲୋକ ସମସ୍ତଙ୍କର କାମ ତୁଲାଇ ପାରିବ ?"

"ସମାଜର ଏଇ ଭୁଲ ପାଇଁ ତାହାହେଲେ ତ ପ୍ରାୟଶ୍ଚିତ କରିବାକୁ ପଡ଼ିବ ପୁଣି ?"

"ଦେବକୀ ଦେଈ, ମୋର କେବଳ ଭୟ ହେଉଛି—ଏ ପ୍ରାୟଶ୍ଚିତ୍ତ ପାଇଁ ମୁଁ ପ୍ରସ୍ତୁତ । ଏ ପ୍ରାୟଶ୍ଚିତ୍ତ ପାଇଁ ମୋର ଧୈର୍ଯ୍ୟ ଅଛି ତ ?"

"କେହି ଜାଣିଶୁଣି ବୋଧହୁଏ ପ୍ରସ୍ତୁତ ହୋଇ ନ ଥାଏ ଆଗରୁ । ଯିଏ ପ୍ରସ୍ତୁତ ହେବାକୁ ମନ କରୁଥାଏ, ତାର ପ୍ରସ୍ତୁତ ହେବା ସରେ ନାହିଁ । ବାଟରେ ପଡ଼ିଲେ ବାଟୋଇ ନେବାକୁ ହୁଏ—ସେ ଯେମିତି ବାଟ ହେଉ ।"

ଦୁର୍ଲଭଶ୍ୟାମ ସେଇ ଅସାଧାରଣ ମହିଳାଟିକୁ ଭକ୍ତି କରି ଗ୍ରହିଲେ । ଦେବକୀ ଲଜ୍ଜାରେ ମୁହଁ ତଳକୁ କରିନେଲି ।

କୃଷ୍ଣଶ୍ୟାମ ଭାବନ୍ତି—କାହିଁକି ସମାଜର ଏ ପାପକୁ ଶିରରେ ଲଦି ପ୍ରାୟଶ୍ଚିତ୍ତ କରିବାକୁ ଆସିଛନ୍ତି ଏ ବଳେ ବଟଳ ! ପ୍ରତିଶୋଧ ନ ନେଇ ଏ ଆସିଛି ଶତ୍ରୁର ପାପ ପାଇଁ ନିଜେ ପ୍ରାୟଶ୍ଚିତ୍ତ କରିବାକୁ ? ଏଇ ଦେବକୀ ?

ଏଇ ଦେବକୀ । ନିଷ୍ପାପ ବିଧବା । ତାର ମନେ ନାହିଁ, ସ୍ୱାମୀ ତାର କି ସ୍ୱଭାବ ଧରିଥିଲା—ସେ ଦିନେ ବାହା ହୋଇଥିଲା—ଠିକ୍ ପିଲାଙ୍କ କଣ୍ଢେଇ ଖେଳ ପରି । ଖେଳଘର କଥାକୁ ଭୁଲିଲା ପରି ସେ ଭୁଲି ଗଲାଣି । ଖେଳ ଖେଳିବାଟା ହୁଏତ ମନେଥିବ । ହଁ ସେ ଦିନେ ଖେଳିଥିଲା—ଏତିକି । କେଉଁ ଖେଳ, କେଉଁଠି କେଉଁଦିନ ସେ ଖେଳିଥିଲା, ତା ତ ମନେ ନାହିଁ ତାର । ସେମିତ ସେ ବି ଗୋଟେ ଖେଳ ।

ସେ ଖେଳଘର ଭାଙ୍ଗି ଗଲା । ସେ ଖେଳଘର ପୋଡ଼ିଗଲା—ଜଳିଗଲା । ଅଉ କାହିଁକି ? ଖେଳ କଣ ସବୁଦିନେ ଲାଗି ଥାଆନ୍ତା କି ? ତାର ମନେ ହେଲା ସତ ଘର କରିବାକୁ । ସମସ୍ତେ ତ ଦିନେ ଖେଳଘର ସାରି ସତ ଘର କରିବାକୁ ଦିନେ ନା ଦିନେ ଯାଆନ୍ତି—ନିହାତି ଅଜଣା ଅଚିହ୍ନା ଜାଗାକୁ ପୁଣି—ତାର ପରି କେତେ ହୁଏ । ତାର ଏମିତି କି ଅପରାଧ ହୋଇଗଲା କି ?

ଓଃ—ସେ ଥରେ ବାହା ହୋଇଛି । ଥରେ ବାହା ହେଲେ ଅଉ ଥରେ ବାହା ହୁଅନ୍ତି ନାହିଁ ସିନା ! ଠିକ୍ କଥା । ସେ ପୁରୁଷ ଜାତ ନୁହେଁ—ମାଇକିନିଆ । ହେଲା ଏବେ ।

କିନ୍ତୁ ସେ ବାନ୍ଧା ହୋଇଛି ବୋଲି କହିଲା କିଏ ? ତମେ ଜବରଦସ୍ତି ମାଡ଼ ବସି କହିବ ନା—ତୁ ବାନ୍ଧା ହୋଇଚୁ—ବାନ୍ଧା ହୋଇଚୁ—ହଁ କର—ଅଲ୍‌ବତ୍ ହଁ କରିବୁ—ଏଇୟା କହିବ ? ବାନ୍ଧା ହେଲା କିଏ ? ସେ ବାନ୍ଧା ହୋଇଛି ନା, ତମେ ଜବରଦସ୍ତି ବାନ୍ଧା କରେଇଲ ? ତମେ ନା ବାଲ୍‌ଗ ଥିଲେ ତମ ସମ୍ପତ୍ତି ବାହାର ଲୋକେ ଛକି ଲାଗି ପାରିବେ ନାହିଁ, ଅଉ ସେ ନାବାଲ୍‌ଗ ଥିଲେ ତା ସମ୍ପତ୍ତିଟାକୁ ଅଉ ଜଣକୁ ହସ୍ତାନ୍ତର କରିଦେଲ ? ସେଥିପାଇଁ ସେ ଦାୟୀ ରହିବ କାହିଁକି ? ଏ କେଉଁ ନ୍ୟାୟ ?

ଷାଁଢ଼ା ବାନ୍ଧ ଛାଡ଼ିଗଲା । ଶେଷରେ ଗୋଟିଏ ବିଚାର କଲାବାର ପରି ଶେଷ ମୂର୍ଚ୍ଛ ହୋଇଗଲା ଦେବକୀ ଦେବୀଙ୍କଠି ।

“ଦୁଖିଶ୍ୟାମ ! ଦୁଖିଶ୍ୟାମ !”

ଦୁଖୀଶ୍ୟାମ ନିଜକୁ ଡାକିଲା । ଦୁଖୀଶ୍ୟାମ ବୁଝିପାରୁ ନ ଥିଲା ସେ କଣ କରିବ । ଘରେ ଅଉ କେହି ନାହିଁ । ଏକା ମା । ଧନୀ ମା,ସ୍ଵରଟା କି ପଳେଇ ଯାଇଛି । ଥିଲେ ହେଲେ ସାହାଯ୍ୟ କରନ୍ତା । ଏକା ମା । ସେ ଖାଇ ସିଝିବ, ଘର ଦ୍ଵାର ଗୋରୁ ଗାଈ ସବୁ ଦେଖିବ—କୋଉଁଠା ତ ନ ହେଲେ ନଚଳେ—ପୁଣି—ସେବା କରିବ କେତେବେଳେ ?

ଅଉ ଦୁଖିଶ୍ୟାମ, ନିଜେ ? ସେ ସେବା କରିବ ଦେବକୀର ?

ତା’ କାନରେ ବାଜିଲା—ପେଟିଛ ସାରା ଗାଁଟାର ଲୋକେ ଠୋ ଠୋ ହୋଇ ହସି ଉଠୁଛନ୍ତି—“ଦେବକୀ ଦୁଖୀଶ୍ୟାମ—ଦେବକୀ ଦୁଖିଶ୍ୟାମ ।”

ନିଷ୍ଠୁର ସମାଜ—ନିଷ୍ଠୁର ଏ ଗାଁ—ନିଷ୍ଠୁର ନିର୍ମମ ଝୁଢଙ୍କ ଏ ମଣିଷ ଗୁଡ଼ାକ । ଦୁଖିଶ୍ୟାମ ଏ ଗାଁର କଣ ନ କରିଛି ? ତଥାପି ଏ ଗାଁର ଲୋକେ ତାକୁ ହସୁଚନ୍ତି । ଦେବକୀ

ଭଲ ଦେବା ନା'ରେ ଲଗାଇ ତାଙ୍କୁ ଝାହି ଝାଟଣ କରୁଛନ୍ତି । କି ନୃଶଂସ ଷଡେ ଏ ମଣିଷ ଜାତ !

ମୂର୍ଖ—ଅମଣିଷ ।

ମା ତାର ବିରକ୍ତ ହେଲା । ଗାଁ ଯାକ ଲୋକେ ତାର ଅନା ଭବ କହିବେ କାହିଁକି ?—ନା—ନା ତାଙ୍କୁ ଏ ଘରେ ପ୍ରଶ୍ନ ନା—ନ୍ୟଥନ ହୁଅନ୍ତା !

"ସେ ଆଜ ଯିବ କେଉଁଠିକି—ତାର ଅଜ ଅଛୁ କଏ ?"

ମା ଅଢ଼ କିଛୁ କହି ପାରିଲା ନାହିଁ । ଦୁର୍ଗୀଶ୍ୟାମ ଭାନରେ ଖାଲି ତାର ନିଜ କଥିଲ କଥିଷ୍ଟା ବାରମ୍ବାର ବାଜିଲା—ସେ ଆଜ ଯିବ କେଉଁଠିକି— ତାର ଅଜ ଅଛୁ କଏ ?

ବାହାରେ ଅସି କ'ଣ ତ ଛଲା । ଦୁଖି ଶୁଣିଲା—ଓଛେନ ଡାକେ ପଚାରୁଛନ୍ତି—ଦେବକୀ ମାନ୍ଦ୍ରଣୀ କୋଉଠି ଅଛୁ, କେମିତ ଅଛୁ ?

ଦୁଖି ବୁଝିଲା । ସେ ଜବାବ ଦେଲା—ବହୁଦବ, ଦେବକୀ ମାଷ୍ଟ୍ରଣୀଙ୍କ ଦୁଖିଶ୍ୟାମ ଦାଣ ଅଣି ଘରେ ରଖିଛୁ ।

ମୋହନ ପଟ୍ଟନାୟକ ଉର ବ ପଗ୍ଡ ପଚେଇଲେ ଦେବକୀ ମାଷ୍ଟ୍ରଣୀ ଭଲ ଅଛୁ ତ ? ଦୁଖି ତାର ବ ଜବାବ୍ ଦେଲା—ଖୋଲା—ପଣ୍ଟେଶ୍ୱର ।

କଣେ ନୁହେଁ, ଦ'ଜଣ ନୁହେ, ଜଣ ଜଣେ ତାଙ୍କୁ ଯ କର ଅଜ, ଏତେ ଦିନରେ ମନେ ପଡ଼ୁଛ— ପଗ୍ଡୁଛନ୍ତି—ଦାଣ୍ଡ ଦୁଅରଙ୍କୁ ଗଣ୍ଡେ ଘଡ଼ିଏ ଥିଏ ହେଇ—କିମିତ ଅଛୁ ?

ମୋହନ ପଟ୍ଟନାୟକ ପୁଣି ପଗ୍ଡରଲେ— ଔଷଧ କିଏ ଦଉଛ, ଔଷଧ ବା ଡାକ୍ତର ପାଇ ପଇସା ଦରକାର ହେଲେ ସେ ଦେବେ ।

ଏ କ'ଣ ସତ ସତ ସହାନୁଭୂତି—ନା—ବିଦ୍ରୂପ ? ଏଇ ଯନ୍ତ୍ରମାନେ ଆଜି ଅଢ଼ି ଏଠି ମୂର୍ତ୍ତି ଦେଖାଉଚନ୍ତି—ଗାଁ ଯାକ ଯେତେବେଳେ ମରୁ ଗରୁ ଯାଉଥିଲେ ସେତେବେଳେ ତ କେହି ଆସି ଭଲା କଥା ଏଠିକି ପୁଛିବ ନାହିଁ ! ଆଜି ଦେବକୀ ମାଷ୍ଟରାଣୀ ପଣ୍ଡିତ ବେଲ୍ ସହାନୁଭୂତି, ନା···ଦେବକୀ ମାଷ୍ଟରାଣୀ ଆସି ଦୁଇ ଦଣ୍ଡ ଘରେ ପଶୁଛି, ଆଉ ଦୁଇ ଦଣ୍ଡ ନିଜେ ତାର ଦେହାଲ ଅବସ୍ଥାନ୍ତର ସେବା କରୁଛି ବୋଲି ଏ ସହାନୁଭୂତି ? ଏ ସହାନୁଭୂତି ବୁଝିବ ନା—ଦେବକୀ ! ତାହାକୁ !

ଏଇ ଲୋକଙ୍କୁ ପୁଣି ମୂର୍ଖ କହନ୍ତି । ଏ ଗୁଡ଼ାକ ଅପଶିଷ୍ଟ—ପଶୁ—କିନ୍ତୁ ମୂର୍ଖ ନୁହନ୍ତି । ସବୁ ଜାଣନ୍ତି—ସବୁ ବୁଝନ୍ତି—କିନ୍ତୁ ଧଳାକୁ ଧଳା ବୋଲି କହିବାର ସାହସ ନାହିଁ । ସେମାନଙ୍କ ମନରେ ଯେଉଁ ସନ୍ଦେହ ଉଠୁଛି, ତାକୁ କେହି ଦୋଷ ଦେଇ ନାହିଁ । କିନ୍ତୁ ସେ ସନ୍ଦେହକୁ ଖୋଲି ଖୋଲି ସେ କହି ପାରୁ ନାହାନ୍ତି । ନିଜ ଭିତରେ ବୋହେଁ ଅଳିଆ—ଅସନା । ସେଥିପାଇଁ ଗୁଳୁଅଛି, ସେ ଦୁର୍ଗନ୍ଧ ସାଜଚନ୍ତି ।

ଦେବକୀ ସଙ୍ଗରେ ସେ ଯେତେବେଳେ ଏକୁଟିଆ ରୋଗୀ ସେବା କରୁ ବୁଲିଲା, ରାତି ଅଧଯାଏଁ, ଦୁହେଁ ଯାକ ତାହାରେ ଭାବରେ ରହୁଲେ—ସେ ଦିନରୁ କଥା ଉଠିଲାଣି—କଥା ଉଠିଲା ବୋଧେ ଆଗ ସେହି ଘଟନାହାକ ପରା ଅଛି । କିନ୍ତୁ ଘଟନାହାକ ପଛାରେ ସେ ବସିଲା, ଶୋଇଲା, ମରଣ ଡାଉର ଘରେ ପଶିଲା, ବାବୁମାନଙ୍କୁ ଖବର ଦେଲା କେଉଁ କିଏ ? ଏଇ ଲୋକେ ତ ! ଏଇ ଗାଁର ଚମ୍ପା ଗୁପୀ, ମୁକୁଆ ପାଣିଆ, ଲଗି ଖାଇଲା, ମାରି ଖାଇଲା ଲୋକେ କି ? ଆଉ ତ ବାହାରୁ କେହି ଆସି ଦେଖି ନାହିଁ ! ଏଇ ଲୋକେ—ଖଟୁଆ, ମିଛୁଆ, ଭରୁଆ, ଘୁରୁ !

ହଁ, ଡରୁଆ—ଭୀରୁ ! ନ ହେବେ କିଆଁ ? ତମେ ଯେତେ ସମାଜର ଉଚ୍ଚଶ୍ରେଣିଆ, ସାହସୀ, ତମର ସ୍ୱାର୍ଥ ପାଇଁ ତମେ ଆଜି ଦଳେ ଲୋକଙ୍କୁ ମୂର୍ଖ ଅମଣିଷ କରି ପକେଇ ରଖିଚ—ଆଖି ଦେଖାଇ ଶାସନ କରିବା ପାଇଁ । ତାଙ୍କୁ ଡରେଇ ଡରେଇ ଡରୁଆ ଭୀରୁ କରି ଦେଇଚ—ସତ କଥା, ଖୋଲା କଥା ପଦେ କହିବାର ସାହସ ବି ତାଙ୍କଠୁ ଛଡ଼େଇ ନେଇଛ, କାଳେ କେତେବେଳେ ସେ ତମର ଶ୍ରେଷ୍ଠ ବଦମାସି ପାଜି ଗିରିକୁ ପଦାରେ ପକେଇ ଦେବେ, ସେ ଡରୁଆ ନ ହେଇ ଯିବେ କୁଆଡ଼େ—ଜବାବ୍ କ'ଣ ? ସେ ମୂର୍ଖ ଅମଣିଷ ହେଲେ ବାହୁଁଛ । ତମେ ବଡ଼-ବଡ଼ଆ ଯାକ ତାଙ୍କ ରକତ ଚରଲା ମୁଣ୍ଡ ଝାଳକୁ ପାଣି ମଡ଼େଇ ଯେତେ ସବୁ ଦାନା ଖାଉଚ—ତମେ ତାଙ୍କୁ ପଣ୍ଡିତ ମଣିଷ କହିବା ପାଇଁ କଣ୍ଟ କରୁଚ ଭଲା । ସେ ତମଠୁ ମୂର୍ଖ ତମଠୁ ଅମଣିଷ ହୋଇଗଲେ—ଆଜି ତମେ ତାଙ୍କଠୁ 'ସାହସୀ ବୀର ହେଇଗଲ ? ତମେଇ ତାଙ୍କୁ ଶିଖେଇଚ ଏ ପଶୁ ପଣ । ତାଙ୍କୁ ବଳି ପକେଇ ଖାଇବା ପାଇଁ ।

ବୁଝି ଅଛ ଶୁଣି ପାରିଲା ନାହିଁ । ଦାଣ୍ଡରେ ପିଏ ଡାକୁଥାଇ, ସେ ଆଜି ଜବାବ୍ ଦେଲା ନାହିଁ । ସେ ଘର ଭିତରକୁ ଯାଇ ଦେବକୀ ପାଖରେ ବସି ରହିଲା ।

ମନେ ହେଲା; ସେ ଯେମିତି ଭିତରୁ କବାଟ କିଳି ଆଣିଛି । ଆଜି ଦାଣ୍ଡ ଦୁଆରେ ଗୋଷ୍ଠୀ ଯାକ—ଜଣେ ନୁହେଁ, ଅଧେ ନୁହେଁ—ଜଣ ଜଣ କି ଆସି ତାକୁ ଡାକୁଚନ୍ତି ବାହାରେ । ଆସ୍ତେ ଆସ୍ତେ ସେ ଡ଼ାକ ଚଢ଼ା ହେଇ ଆସୁଛି—ଚିହାର ହୋଇ ଉଠୁଛି—ଚିହାର କରି ସମସ୍ତେ ତାକୁ ଡାକୁଛନ୍ତି । ତା'କାନରୁ ଅତଡ଼ା ଖସି ପଡ଼ୁଛି—ତଥାପି ସେ ଶୁଣୁ ନାହିଁ ।

କେତେବେଳ ଯାଏ—କେତେବେଳ ଯାଏ ସେ ସହିବ ? ରୋଗୀର ଅବସ୍ଥା ଖରାପ ହୋଇ ଆସୁଛି । ନିଶ୍ୱାସ ଖର ବହିବାକୁ ଲାଗିଲାଣି । କଣ୍ଠେ ଅନ୍ତୁର ଖର ଗମ୍ଭୀର ହୋଇ ଆସୁଛି । ସେ ନିଶ୍ୱାସରେ ଯେମିତ ଦେବକୀର ମଧ୍ୟ ଚିତ୍କାର ଉଠୁଛି—ଆଉ କେତେ ଅଛି ଚାର ?

ସେ ତାହାର ଚିତ୍କାରକୁ କାନ ଦେବ ! ଗାଁ ଲୋକଙ୍କର—ନା—ଦେବକୀର ?

ଦେବକୀ ଚିତ୍କାର କରି ଉଠିଲା—ମୋତେ ନେଇ ଗଲ—ମୋତେ ନେଇ ଗଲ ଦୁଖିଆ ଭାଇ !

ଆଜି ସେ 'ଦୁଖିଭାଇ' ବୋଲି ଡାକୁଛି । ଏଇ ଡାକଟା ଯେମିତ ଲୁଚି ରହିଥିଲା ଦେବକୀ ଭିତରେ—କେତେ ଦିନର ପୁରୁଣା ଡାକ ସେ—କେତେ ଦିନର ସ୍ୱତ ସଂପର୍କକୁ ଦେବକୀ ଆଜି ଜଣେଇ ଦେଲା । ମନେ ହେଲା, ସତେ ଯେମିତ ଭାଇ ଭଉଣୀ ଦି'ଜଣ ଯାକ ପିଲା ଦିନରୁ ଭାଗ୍ୟଚକ୍ରରେ ପଡ଼ି ଛଡ଼ା ଛଡ଼ି ହୋଇ କେଉଁଠି ବୁଲୁଥିଲେ—ଅନେକ ଦିନପରେ ଭେଟ ହେଲା—ଭେଟ ହେବାର ପୁଣି କେତେଦିନ ପରେ ଦୈବାତ୍ ଦିନେ ଆପଣା ଆପଣାକୁ ଚିହ୍ନି ପକେଇଛନ୍ତି—ଆଜି ଏଇ ମୁହୂର୍ତ୍ତରେ ।

"ଆଃ, ବଡ଼ କଷ୍ଟ, ମୋତେ ନେଇ ଗଲ ! ନେଇ ଗଲ !

ଏଟା ପ୍ରଳାପ ନୁହେଁ ତ ?

ଭିତରେ ଏଇ 'ନେଇଗଲ, ନେଇଗଲ' ଚିତ୍କାର । ଯେତେବେଳେ ବାହାରେ—ଦାଣ୍ଡ ଦୁଆରେ ଯେମିତ କବାଟରେ ହାତ ବାଡ଼େଇ ଶହ ଶହ ଲୋକ ଯେମିତ ରଡ଼ି ଛାଡ଼ୁଛନ୍ତି—"କବାଟ ଖୋଲ—କବାଟ ଖୋଲ ।"

"ନବ ନାହିଁ ଦୁଖିଭାଇ, ନବ ନାହିଁ ?"

ହେ ଅନ୍ଧ ପୁଣି ଯାଅନ୍ତା କେଉଁଠିକି ? ତାର ଘର କାହିଁ ? ତାର ଅଛି କିଏ—କିଏ ଅଛି ତାର ?

ଦୁଖିଯାଇ ତା ପାଖରେ ବସିଲା । ମୁଣ୍ଡ ଅଉଁସି ଦେଲା । ତଥାପି ତାର ଶାନ୍ତି ନାହିଁ ।

"ଗୋଡ ଗଲା—ଗୋଡ଼ ଗଲା—ଆଃ ଫାଟି ଗଲା ଗୋଡ଼ ।"

ଅନ୍ଧ ନା – ଅନ୍ଧ ହବ ନା—ଡାକ୍ତର ଏତେ ବେଳଯାଏ ଆସିଲା ନାହିଁ—ଅନ୍ଧ ବଞ୍ଚିଇବା ଅସମ୍ଭବ ।

ଦୁଆରେ ସେମିତ ଲବାଟକୁ ଯେମିତ ରାଜଚନ୍ଦ୍ର ସବୁ—ବାଉଆ ଗ୍ଲାସ—ଯେମିତି କହୁଚନ୍ତି—କବାଟ ଖୋଲ, କବାଟ ଖୋଲ, ଘର ଭିତରେ କିଏ ଅଛେ ଦେଖିବୁଁ ।

ଦୁଖି ଦେବକୀର ଗୋଡ଼ ଚିପି ଧରିଲା । ଦେବକୀ ଘୁଞ୍ଚିଦେଲା ଗୋଡ଼କୁ ।

"ରକ୍ଷାକର—ରକ୍ଷାକର ଦୁଖି ଭାଇ—ପାପ ହବ ।" ଅନ୍ଧ କହି ପାରିଲା ନାହିଁ ।

ଦାଣ୍ଡରେ ଶବ୍ଦ ଅଧିକ ଜୋରରେ ହେଲା—ଯେମିତ କବାଟ ଭାଙ୍ଗି ପଡ଼ିବ ।

"ଦୁଖି ଭାଇ !" ଦେବକୀ ଡାକିଲା । ଦୁଖି ପାଖକୁ ଗଲା—ମୁହଁ ପାଖକୁ ।

"ମୋର ଅଉ କିଏ ଅଛି ଦୁଖି ଭାଇ ?" ଦେବକୀ କାନ୍ଦିଲା ।

"କାହିଁକି ? ତୋ ଦୁଖି ଭାଇ ଅଛି ଯେ !" ଦୁଖି ଦେବକୀର ଲୁହ ପୋଛି ଅଉଁସି ଦେଲା, ଶୀତଳ ହେଇ ଆସୁଚି ସେହି ଲୁହଧୁଆ କପୋଳକୁ ।

'ଦୁଖି ! ଦୁଃଖି !' ଦାଣ୍ଡରେ ଯେମିତ ସତ ସତ କିଏ ଏଥର ଡାକୁଛି । ସେ ଦୌଡ଼ି ଯାଇ ଠକ୍ କିନା ଦାଣ୍ଡ କବାଟଟାକୁ ବନ୍ଦ

ଜବଦେଲା । ତାପରେ କଣ ଭାବି ପୁଣି ଧୀରେ ଧୀରେ ଖୋଲି ଦେଖିଲା—କେହି ନାହିଁ—ଗୋଟିଏ ବି ମଣିଷ ନାହିଁ । ରାତି ହୋଇ ଗଲାଣି । ଭୟଙ୍କର ରାତି । ରାତି ପୁଣି ଏତିକି ଭୟଙ୍କର ହୁଏ। ଦୁଖି ଡାକିଲା—"ଡାକ୍ତର ବାବୁ—ଡାକ୍ତର ବାବୁ !"

କେହି ନାହିଁ—କେହି ଶୁଣିଲେ ନାହିଁ । ଦୁଖି ମଣିଷ ପଠେଇଥିଲା ସକାଳ ପହରୁ ଡାକ୍ତର ଡାକିବା ପାଇଁ ।

ଦୁଖି ଫେରି ଆସିଲା । ମା ଡାକିଲା ଖାଇବା ପାଇଁ । ସେ ଖାଇବ କ'ଣ ? ଦୁଖି ପୁଣି ଫେରିଲା । ଦେବକୀ ପାଖକୁ । ଏତ ସବୁ କେହି ନାହିଁ ତାର । ଗୋଡ଼ରେ ହାତ ମାରି ଦେଖିଲା, ଗୋଡ଼ ଥଣ୍ଡା ।

"ମା !" ଦୁଖି ଡାକିଗଲା । ମା ଦଉଡ଼ି ଆସିଲେ ।

"ମା—କାଁଅ ! କାଁଅ କରୁଅଛି ।"

ଦେବକୀ ଏବେ ବି ଗୁହାଁରି—ଏବେ ବି ଥଇଁ ସଇଁ ହେଉଛି କଷ୍ଟରେ । ଗୋଡ଼ଠାରୁ ଛାତି ଉପରଯାଏଁ ଜଣ ଗୋଟାଏ ଛଟ୍‌ପଟ—ବଡ଼ କଷ୍ଟ ।

"ଦୁଖି ଭାଇ, ମୁଁ ଚାଲିଲି ।"

ଦୁଖି ଆଉ ସମ୍ଭାଳି ପାରିଲା ନାହିଁ । ପିଲାଙ୍କ ଭଳି ସେ କାନ୍ଦ ପକାଇ ଥାନ୍ତା । ବଡ଼ ହେବାର ଅଭିମାନ ଅଧିକ ପାଇଲେ ଯେଉଁ ଲଜ୍ଜା ହୁଏ, ସେଇ ଲଜ୍ଜା ତାକୁ କନ୍ଦାଇ ଦେଲା ନାହିଁ । ସେ ସଂଯତ ହେବାକୁ ଚେଷ୍ଟା କରୁଥିଲା । ପାରୁ ନଥିଲା ।

ମା ନିଅଁରେ ଗୋଡ଼ ସେକି ଦେଲେ । ଦୁଖି ଦେବକୀର ମୁଣ୍ଡ ପାଖକୁ ଗଲା । ଦେବକୀ ଚେତି କ'ଣ ଖୋଜୁଛି ।

କାହାକୁ ଖୋଜୁଛି ସେ ? ତାର ଛୁଏ ଅଛି—କେଉଁଠିକି ଯିବ ସେ ?

ହଁ, ଗୋଟାଏ ଯାଗା ତାପାଇଁ ଅଛି । ମଣିଷର ଏଇ ନିଷ୍ଠୁର ସମାଜ ଯାହାକୁ ସ୍ଥାନ ନଦିଏ ତା' ପାଇଁ ଗୋଟିଏ ଯାଗା ନିଶ୍ଚୟ ଅଛି—ଅତି ସୁନିଶ୍ଚିତ ନିରାପଦ ସେ ଯାଗା । ସେଠି ଯେମିତି ତାର ଅତି ନିଜର, ଅପଣାର ଲୋକ ଅଛନ୍ତି । ନହେଲେ ସେ ଯିବାକୁ ସେଠିକି ମନ କରନ୍ତା କାହିଁକି ? ଏଠିକାର ନିଷ୍ଠୁର ମଣିଷଙ୍କଠୁ ସେମାନେ ଢେର୍ ଭଲ ।

ସେ କଣ ସେଇଠିକି ଯିବ ?—ସେ ଦୂରକୁ ।

ଦେବକୀ ହାତ ବଢ଼େଇଲା ଦୁଖିର ପାଦ ଉଦ୍ଦେଶ୍ୟରେ । ଦୁଖି ପାଦ ବଢ଼ାଇଦେଲା । ଗୋଡ଼ରୁ ଧୂଳି ନେଇ ଦେବକୀ ମୁଣ୍ଡରେ ମାରିଲା । ତା ପାଟିରୁ ବାହାରି ପଡ଼ିଲା—"ଦେବତା !"

ଯେମିତି ସେ ଖୋଜୁଥିଲା ଏ ଜୀବନଟା ଯାକ ଏଇ ଦେବତା ଦର୍ଶନ ପାଇଁ । ତାପରେ—ତାପରେ—ତାର କାମ ସରିଲା—ତାର ମନବାଞ୍ଛା ପୂର୍ଣ୍ଣ ହୋଇଗଲା ।

ଦୁଖି ଏଥର ଦାଣ୍ଡକୁ ଚାହିଁଲା । କାହିଁ, କେହି ବି ନାହାନ୍ତି—କେହି ତ ରହି ଯାଇ ନାହାନ୍ତି ଏତେବେଳେ ଅଉ । ଦୁଖି ନିର୍ଜୀବ । ଖୋଲା ଆକାଶ ତଳେ ନିର୍ଜୀବ—ଦମ୍ଭ !

ଧୀରେ ଧୀରେ ଦେବକୀର ଦୁଃଖ ଶେଷ ହୋଇ ଆସିଲା ।

ଏଇ ଦେବକୀ । ବାଳ ବିଧବା ସେ । ସମସ୍ତେ କହୁଥିଲେ ପାଠ ପଢ଼ିବାକୁ ସେ ପାଠ ପଢ଼ିଲା । ସେଇ ହେଲା ତାର ଅପରାଧ ।

ଗାଁରେ ଗୋଟିଏ ମାଷ୍ଟର ଥାଏ—ବୁଢ଼ା ମାଷ୍ଟର । ସେଇ ଆସି ପଢ଼େଇ ଦେଇଯାଏ । ସେତେବେଳକୁ ସେ ଘରେ ବଢ଼ିଲଣି ।

ସମସ୍ତେ କହିଲେ, ଏ ବୁଢାଟାର କି ସ୍ୱାର୍ଥ—ସେ ବାହୁନି ଆସି ଝିଅଟାକୁ ପାଠ ପଢ଼ାଉଛି । ବୁଢ଼ୀ ବ୍ରାହ୍ମଣୀ ମାଷ୍ଟରଙ୍କୁ ଧରମ ପୁଅ କହିଥାଏ । ମାଷ୍ଟର କହେ—"ବିଦ୍ୟାଦାନ କରି ସମସ୍ତଙ୍କଠୁ ଉପରେ ପୁଣ୍ୟେ କିଛି ନା କିଛି ନଉଛି—ଜଣକୁ ହେଲେ ମୁଁ ସେଲ ନିସ୍ୱାର୍ଥ ବିଦ୍ୟାଦାନ କରିଥାଏଁ ।" ଲୋକେ କିନ୍ତୁ ବିଶ୍ୱାସ କରନ୍ତି ନାହିଁ । ବୁଢ଼ାକୁ ଦୋଷ ଦିଅନ୍ତି, ସେହି ବୟସରେ ବି ।

ଦୋଷୀ ବୁଢ଼ା ନୁହେଁ । ଦୋଷୀ ସେ ନିଜେ ଦେବକୀ ଦିନେ ସେ କହିଲା "ଦୁଃଖିବାବୁ, ଅପରାଧିନୀ ମୁଁ । ମୋ ଭାଗ୍ୟକୁ ମୁଁ ନିଜେ ଖାଇଛି ।"

ବୁଢ଼ା ମାଷ୍ଟର ସାଙ୍ଗରେ ଦିନେ ଦିନେ ତାଙ୍କ ଦାଣ୍ଡ ଦୁଆର ଯାଏଁ ଆସୁଥିଲା—ନବୀନ । ସୁନ୍ଦର ଯୁବକ । ବୁଢ଼ାର ସାଙ୍ଗରେ । କି ସାଙ୍ଗ, କେଉଁଠି ସାଙ୍ଗ, ବୁଝି ହୁଏନା । ବୁଢା ଛୋକରାର ଏ କି ଅପୂର୍ବ ମିଳନ ।

ଆଉ ଦିନେ ଦିନେ ସେ ଆସି ବୁଢ଼ାକୁ ଡାକିନେଇ ଯାଏ ତାଙ୍କ ଘରୁ । ଏମିତି କେତେ ଦିନର ଦେଖା—କେତେ ଦିନର ଚିହ୍ନା ଚିହ୍ନି ହେଉଥିବ । ଦେବକୀ ମନେ ମନେ ତାକୁ ଭଲପାଇଲା । ତାକୁ ଭଲ ପାଇବା ନ କହି ଆଉ କ'ଣ କହିବ ।

ବୁଢ଼ା ଥରେ ଚାଲିଗଲା କୁଆଡ଼େ । କହିଗଲା ନବୀନ ଆସି ଦୁଇଦିନ ପଢ଼ାଇ ଦେଇଯିବ । ସେ ଦୁଇଟା ଦିନ ପାଞ୍ଚଦିନ ହେଲା । ତଥାପି ଜଣା ପଡ଼ିଲାନି, ବୁଢ଼ା ଫେରିଲାନି—ବୁଢ଼ା ଫେରି ଥିବ ଏକା ସେ ଦିନ ଗୁଡାକ କୁଆଡେ ଗଲା । ବୁଢା ମାଷ୍ଟର ଆସି ପଚାରୁଥିବ—କଣ ଚିହ୍ନିଲୁ କେତେ ଅଗକୁ ପଢ଼ିଲୁ ?—ଜବାବ ଦେଉଥିବ ଦେବକୀ—କିଛି ନା—କିଛି ଜବାବ ଦେଇ ପାରି ନଥିବ ।

କ୍ରମେ କ୍ରମେ ପରିଚୟ ଘନିଷ୍ଠ ହେଲା । ବୁଢ଼ୀର ଗୋଡ଼ରେ ଦେଖାଟା ବୁଢ଼ୀର ଅଙ୍ଗ ପାଣେର ହେବାକୁ ଲାଗିଲା । ନବୀନ ପିଣ୍ଡାଟାରେ ଗୋଡ଼ କାଟେ ବୁଢ଼ୀଙ୍କୁ— 'ମାଉସୀ ଅଛନ୍ତି ନା ?' ଦେବକୀ ପ୍ରଥମେ ପ୍ରଥମେ ଘର ଭିତରେ ପଶି ନାହିଁ କରୁଥିଲା, ଏବେ ଏଣିକି ଅଳପ ଅଳପ ବାହାରକୁ ବାହାର ଆସି କହେ— 'ମାଉସୀ ଆସି ନାହାନ୍ତି— ମାଉସୀ ବାହାରି ଗଲେଣି ।'

ସେଇ ପହେ ପହେ କଥା— ସେଇ ଥରେ ଅଧେ ଦେଖାରେ କେତେଦିନ ବା ହୋଇଥିବ—ତାର କେତେ ଅର୍ଥ ଦୁହେଁଯାକ କରୁଥିବେ—କେତେ ଶବ୍ଦ ଅର୍ଥ ଥିବ । ପାପ ପୁଣ୍ୟର କେତେ ପ୍ରଶ୍ନ ମନ ଭିତରେ ଉଠିଥିବ—କେତେ ଯୁକ୍ତି ତାକୁ କାଟିଥିବ । କାରଣ ଦେବକୀ ବ୍ରାହ୍ମଣୀ, ନବୀନ ଶଣ୍ଡ୍ରାପୁତ୍ର, ଦେବକୀ ବିଧବା, ନବୀନ ଅବିବାହିତ ।

କେତେ ବାହାଘରରେ ଦେବକୀ କେତେ ଝିଅଙ୍କ କେତେ ଯୁବତୀଙ୍କର ସ୍ୱାମୀମାନଙ୍କୁ ଦେଖିଥିବ । ସ୍ୱାମୀର ଅର୍ଥ କେତେଛ ସେ ମନେ ମନେ କରୁଥିବ—ସ୍ୱାମୀ ଶବ୍ଦଟା ଯେମିତି ଦେବକୀ ଭାଷାରେ ନାହିଁ—ଦେବକୀ ଭାଷାରେ ନିର୍ଥକ ।

ଅନ୍ନ ନବୀନ ସତେ କି ସେ ଭାଷାଟାକୁ ସାର୍ଥକ କରେଇ ଦେଇଛନ୍ତି—କଣାଇ ଅଭିଧାନ ପରି । ସେ ନବୀନ ଭିତରୁ ସ୍ୱାମୀର ରୂପପୃଷ୍ଠି ସ୍ୱାମୀର ସ୍ୱରଛାର୍ଥ, ସ୍ୱାର୍ଥ, ବିବିଧାର୍ଥ ବାହାର କରୁଛି ବସି । କହିଥିବ ସେ ବେଦନ । ଅଥଚ ନବୀନ ତାର ସ୍ୱାମୀ ନୁହେଁ । ନବୀନକୁ ସେ ସ୍ୱାମୀ ଆଖିରେ ଦେଖିବା ତାର ପାପ ।

ଏତିକି । ଏତିକି ସଂପର୍କ । ଏତିକି ଭଲ ପାଇବା—ଏତିକି ସୁଖ ପାଇବା । ମାତ୍ର ଏତିକି । ସତେ ଅବା ଜୀବନ ଥିଲା ପରି,

ଟୋକା ଚେଇଁ ବସିଥିଲା ଯେମିତି ଏକୁଇ ଧରିବା ପାଇଁ—ପ୍ରଘାତ କରିବା ପାଇଁ—ପ୍ରତିଶୋଧ ନେବା ପାଇଁ।

ବୁଢ଼ା ମାଷ୍ଟରଙ୍କୁ ଛକି ଛକି ଟୋକାଏ ପିଟିଲେ—ଶଳା ଛତୁଅଟିର କର ଅସ୍ପୃଷ୍ଟ। ବୁଢ଼ାମାଡ଼ ଖାଇ ପଳାଇ ଗଲା। ନବୀନ ସହରକୁ ଚାଲିଗଲା ଚାକିରି କରି—ଯାଇ ଖଣ୍ଡେ ଚିଠି ଦେଇଥିଲା ଦେବକୀ ପାଖକୁ। ସେ ଚିଠିରେ କ'ଣ ସବୁ ଲେଖା ହୋଇଥିଲା କେଜାଣି—ସେ ଚିଠିକୁ ପୋଷ୍ଟ ଅଫିସରୁ ଅସିବା ବାଟରେ ଟୋକାଏ ସବୁ ଧଇଲେ। ସେଇ ଚିଠି ହେଲା ପ୍ରମାଣ। ଦେବକୀ ବାପା ବଦେଇ ସଙ୍ଗରେ ହେଲା ପତିତ। ତାକୁ ପ୍ରାୟଶ୍ଚିତ୍ତ କରିବାକୁ ପଡିବ।

ପ୍ରାୟଶ୍ଚିତ୍ତ କରିମଧ୍ୟ ଘାଞ ଗଲା ନାହିଁ। ଦେବକୀ ଅଉ ବାହାରକୁ ବାହାରି ପାରିଲା ନାହିଁ। ଦେବକୀଟା ବେହଧଇ, ଲୁଣ୍ଠାଳି ଗାଲିଛି। ସେ ଅଉ କାହାକୁ ମୁହଁ ଦେଖାଇ ପାରିଲା ନାହିଁ।

ଦେବକୀ ବାପା ଅଉ ଯଯମାନ ବି ଡାକୁପାରିଲେ ନାହିଁ। ଯେଉଁଠିକି ଗଲା, ସେ ହସିଲା, ଟାହୁ ଟାପରା ଲଗେଇଲେ—ନୂଆଁକୁ ଲଗେଇ ଦ'କଥା ପଚାରିଲା। ସେ ଚୁପ୍।

ଶେଷରେ ଦେବକୀ ଆତ୍ମହତ୍ୟା କରି ବସିଲା। କିନ୍ତୁ ସେଥିରେ ବି ସେ ମଲା ନାହିଁ। ଲୋକେ ଜାଣିଲେ। ବାନ୍ତି ଜଗଜ କରି ସେ ଭଲ ହୋଇଗଲା। ଦୁର୍ନାମ ଅଧିକ ବଢ଼ିଲା। ଲୋକେ ଉଲଟି ଦୋଷ ଲଗେଇଲେ—"କିଛି ହୋଇଥିବ, ନହେଲେ ବିଷ ଖାଆନ୍ତା କାହିଁକି?

ପୁଲିସ ଆସିଲା। ତାକୁ କେସବର ଖୋଳତାଡ଼ି ଢେରଢେ ପ୍ରଶ୍ନ ପଚାରିଲା। ବାପ ସେମିତି ଠିଆ ହୋଇ ଶୁଣୁଥାଏ। ବାପ ହେବାର ଅପରାଧ। ଝିଅର ବାପ ହେବା ପାଇଁ ଏତେ ବଡ଼

ପ୍ରାୟଶ୍ଚିତ୍ତ । ପୁଲିସର ଅସଭ୍ୟ ପ୍ରଶ୍ନ ଶୁଣି ଦେବକୀର ରକ୍ତ ନିଅଁ ହୋଇ ଯାଉଥିଲା । କିନ୍ତୁ ଉପାୟ କ'ଣ ? ଗାଁ ଟା ଯାକ ତ ପୁଲିସ ପକ୍ଷରେ ।

ପୁଲିସ ତାକୁ ଧରିନେଲେ ଥାନାକୁ । ତାପରେ—ତାପରେ । ସେ ଆଉ ଫେରି ନାହିଁ ଗାଆଁକୁ । ଆଉ ଫେରିବାକୁ ମୁହଁ ନଥିଲା ଦେବକୀର, ବାଟ ନଥିଲା । ବାଟ ବନ୍ଦ ଚିରଦିନ ।

"ଆଉ ନବୀନ ?"

କୁଣି ଥରେ ପଚାରିଥିଲା ଦେବକୀକୁ ।

"ଜାଣେ ନାହିଁ ।" ଦେବକୀ ସ୍ୱରରେ ତଳକୁ ମୁହଁ ପୋତି ଉତ୍ତର ଦେଲା ।

"ମୂର୍ଖ—ଅମଣିଷ ।" କୁଣି ରାଗରେ କହୁଥିଲା ।

"ନା—ନା ତାଙ୍କର କିଛି ଦୋଷ ନାହିଁ ଏଥିରେ ।" ଦେବକୀ ପ୍ରତିବାଦ କଲା ।

ଏବେ ବି ସେ କ୍ଷମା ଦେଇ ପାରିଛି ନାରୀ ହୃଦୟରେ । ଯେଉଁ ପୁରୁଷ ପ୍ରେମକୁ ପାପ ବୋଲି ସ୍ୱୀକାର କରି ଉପୁରେ ଗଣ୍ଡ ପଳାଏ ସମାଜ ଭିତରୁ, ଅପଣାର ପ୍ରିୟବସ୍ତୁକୁ ପଚି ସଢ଼ି ନଷ୍ଟ ହେବାର ଦୁର୍ଭାଗ୍ୟ ଦେଇ, ତାକୁ ଭଗବାନ ମଧ୍ୟ କ୍ଷମା କରି ପାରନ୍ତି ନାହିଁ—କ୍ଷମା କରେ ଏଇ ନାରୀ ।

ହୁଏତ ଆଜି ଏଇ ଶେଷ ନିଶ୍ୱାସର ଅବ୍ୟବହିତ ପୂର୍ବରୁ ମଧ୍ୟ ନବୀନ ତା' ଆଖି ଆଗରେ ମୂର୍ତ୍ତି ପରିଗ୍ରହ କରିଥିବ । ଆଜି ବି ସେ ହୁଏତ ଭୁଲି ନାହିଁ ନବୀନର କଥା । ଆଜି ସମ୍ଭବତଃ ସେ କିଛି କହିବାକୁ ଚାହୁଁଛି, କହିପାରୁ ନାହିଁ—ଓଠର ଭଙ୍ଗୀରେ କେବଳ ଦରଫୁଟ ହୋଇ ରହିଯାଉଛି—ସେଇ ତାର ନବୀନ ନିକଟକୁ ଶେଷ ବାଣୀ ।

ଏମିତି କେତେ କଥା ଏ ଦୁନିଆରେ ଅକୁହା ରହିଯାଏ—ଏଇ ମାଟିତଳେ ଅଯୁତ ·ଅଯୁତ ଶବ ପୋତି ହେଲାପରି । ସମାଧି ବି ତୋଳା ହୁଏ ନାହିଁ ।

ଏଇ ମାଟିର ଗନ୍ଧ, ସେ କେତେ କଷ୍ଟ ଅନୁଭୂତି ସତେ !

ଏଇ ଟାଙ୍ଗର ମୂଳିଆ ମାଟି ହାଣି ଟେଳା ଟେଳା ଗଡ଼େଇ ଦେଇ ଯାଏ—ଏଇ ଗାଁର ଚମାର ତାକୁ ଦିଏ ତା' ଶାଳକୁ ଲଙ୍ଗଳ ଫଳ—ସେଇଥିରେ ସେ ମାଟିର ବୁକୁ ଚିରି ଚାଲିଯାଏ—ସେଇ ମାଟି—ସେଇ ପୋଡ଼ି ମାଟି—ଏଇ ସେ ମାଟି—ଏଇ ହୁଡ଼ତଳ ମାଟିରେ—କେତେ ଅସ୍ମାର—କେତେ ଅମର ଅସ୍ମାର ବେଦନା ଆଉ ଅଶ୍ରୁନାଦ ଜମାଟ ବାନ୍ଧି ରହି ନଥିବ । ତାକୁ କେହି ଶୁଣେ ନାହିଁ, କେହି ବୁଝେ 'ନାହିଁ ।

ସେ ଚିତ୍କାର—ସେ ଦୁଃଖ ସେ ଯନ୍ତ୍ରଣା ଶ୍ୟାମଳ ଶସ୍ୟ ସିଆଁରେ ଲହସି ଖେଳୁଥିବ, ଗଛ ଲତାରେ'ଫୁଲ ଫୁଟାଇ ଫଳ ଫଳାଇ, ସେଇ ଦୁଃଖ ସେଇ ଯନ୍ତ୍ରଣା ପୁଣି ହସି ଉଠୁଥିବ । ମନେ ହୁଏ ଏଇ ସମାଜରେ ଯେତେ ଶୁଭ୍ର ରୂପ, ଯାହା କିଛି ସୁନ୍ଦର, ତା' ତଳେ ଏମିତି କୋଟି କୋଟି ଅସଂଖ୍ୟ ଅସଂଖ୍ୟ ବେଦନା ଦୁଃଖ ଅନ୍ୟାୟ ଅତ୍ୟାଚାରର ସାର ଗଢ଼ ହୋଇ, ମାଟି ହୋଇ, ରକ୍ତ ହୋଇ, ବାସ୍ପ ହୋଇ ମିଶିଯାଇଛି ଯେପରି ।

ଦେବକୀ ଚାଲିଲା । ଅପବାଦର କଳଙ୍କକୁ ଦୁନିଆ ଦୁଆରେ ଥୋଇ ଦେଇ ସେ ଚାଲିଗଲା । ଦୁର୍ଗ ଅନ୍ଧାରରେ ବାହାରକୁ ଯାଇ ଦେଖିଲା—କେହି ନାହିଁ । ଦେବକୀର କେହି ନାହିଁ । ତାର ବି ଯେମିତି କିଏ ସବୁଥିଲେ—ଏତେବେଳେ କେହି ନାହାନ୍ତି ।

ଶବ ଉଠେଇବାକୁ ହବ । ଗାଁକୁ ହୁଏତ କେହି ବାହାରିବେ ନାହିଁ । ସେ ଘର ଘର କି ବୁଲିଲା । ସମସ୍ତଙ୍କୁ କହିଲା—'ଦେବକୀ

ଗୁଲଗଲା।' ଦଣ୍ଡକେ ସେ ଖବରଟା ଗାଁ ଯାକ ଖେଳିଯିବ। ଭୂଷି କହିବା ଆଗରୁ ଯିମିତି ସମସ୍ତେ ଜାଣିଛନ୍ତି। ତଥାପି ଭୂଷି ଆଗରେ ସମସ୍ତେ ଚୁପ୍।

ଆଜ୍ଞା ପଛରେ ? ସେ ଅନେକ କଥା। ସାଉ ଏତିକି—ପାପ ପାପ-ପାପ ଲୁଚିବ ନାହିଁ। ଏବା ଝାଡ଼ା ଏବା ବାନ୍ତିକେ ଶେଷ। ହବ ନାହିଁ ? ଷଣ୍ଡ ବ୍ରାହ୍ମଣୀ ପାପକୁ ପାର କରି ପାରିଲା ନାହିଁ। ମରିବା ପାଇଁ ସେ ହେଲା କ'ଣ ? ଜାତି ପତି କୁଳଗୋଳ କିଛି ମାନିଲା ନାହିଁ ସେ ପରା !

ଭୂଷି ତାଙ୍କୁ କଥା ଅପିଲା। ତଥାପି ସେ ବେହିଆ ମୁହଁରେ ଯାଇ କହିଲା ସମସ୍ତିଙ୍କି। କେହି ପଟେ ସହାନୁଭୂତି ପ୍ରକାଶ କଲେ ନାହିଁ। କେହି କହିଲା ନାହିଁ,କି ଶବ ଉଠିବ କିମିତି। ବ୍ରାହ୍ମଣ ସାହି ଗୋଟାକ ଭୁଲିଲା। କେହି ତୁଣ୍ଡ ଖୋଲିଲେ ନାହିଁ। ତେଣୁ ପାଣି ଟୋପା ତକସ ଅପି କହିଲା—ଚଳିବ ? "କେବି ଗୋସେଇ।— ବାଁଉଶ କଣ୍ଟସ ଦେଇ କାମ ଚଳିବ ?"

ଭୂଷି ଶଙ୍କିଗଲା। କେତେ ଜନ୍ମର ସଂସ୍କାର ଯେମିତି ଶବ ସଂସ୍କାର ପରି ଭୂତ ହେଇ ଠିଆ ହେଇଛି ତା ଆଗରେ। ସେ ତା' ସହିତ ହିଂସା କରି ଲଢ଼ିବାକୁ ଗୃହିଲା ନାହିଁ। ତାର ସେ ଭୂତଭସ୍ମ-ଟାକୁ ହସି ଉଡ଼ାଇ ଦେବ—ଭୂଷି ନାହିଁ।

"ନ ଚଳିବ କାହିଁକି ?" ସେ କହିଲା। କେବଳ ଭାବିଲା, ଦେବକୀର ଶେଷଇଚ୍ଛା ସେ କହିଯାଇ ନାହିଁ। ତାର ଆତ୍ମାର ଅସନ୍ତୋଷ ହେବ ନାହିଁ ତ ଏଥିରେ। କାହିଁକି ହେବ ? ଦେବକୀ ଆଗେ ଯାହା ଥାଉ, ଯେଉଁ କୁଳରେ ଜନ୍ମ ହେଉ, ଶେଷବେଳକୁ ତ ସେ ତାହାର ସାଙ୍ଗରେ ହାଣ୍ଡିଦର ପାଣି ଘର ପଣି ବୁଲିଛି— ନିର୍ବିକାରରେ—ଘର ସେବା କରି।

ଅଉ ଅମ୍ବା ! ଅମ୍ବାଟାଏ ଅଛି ତ ନାହିଁ କିଏ ଜାଣିଛି । ଥିଲେ ଥାଉ । ସେ ଅମ୍ବାର ଏ ଦୁନିଆ ସାଙ୍ଗରେ କି ସମ୍ପର୍କ । ଏ ଦୁନିଆର କେବେ କ'ଣ ହେଲେ କି ହେଲେ ସେଥିପାଇଁ ଦୁନିଆ ବାହାରର ସେ ଅମ୍ବାର ଯାଏ କେତେ ଆସେ କେତେ ! ମଣିଷ ମଲା ପରେ ମଲା ମଣିଷ ପାଇଁ ଏ ଜୀଅନ୍ତା ଦୁନିଆ ଯାହା ଯାହା କରେ ସେଥିରେ ମଲା ଅମ୍ବାର କଣ କିଛି ହୁଏ ?—ହୁଏ ଏଇ ଜୀଅନ୍ତା ଦୁନିଆର ଜୀବନ୍ତାତ୍ମାର । ଏଇ ଜୀଇଁଲା ମଣିଷ ପାଇଁ, ଜୀଅନ୍ତା ମଣିଷର ଏଇ ସମାଜ ପାଇଁ ମଣିଷ ମଲାମଣିଷ ନାଆଁରେ କେତେ କ'ଣ କରି ନ ଯାଏ ! ଏଇ ସଂସ୍କାର, ଏଇ ଶ୍ରାଦ୍ଧ, ଏଇ କ୍ରିୟା କର୍ମ, ଶ୍ରାଦ୍ଧ ସ୍ନାନ ସବୁ ଜୀଅନ୍ତା ମଣିଷ ପାଇଁ—ଯିଏ ଜୀଇଁଛି ତା'ର ପାଇଁ । ମଲା ମଣିଷ ଯିଏ ମରିଣି ତାର କ'ଣ ହୁଏ ସେଥିରୁ ?

ରବଗ ଆଜ ଦୁଖି ହେଲେ ଧ'ଜଣ—ଗୃହଜଣ ଦରକାର । ଆଜ କିଏ ଯିବ ବୋଲି ଦୁଖି ଭାବୁଛି, ତେଣୁ ସମ ବାବୁ ବାହାର ଆସିଲେ । କଲେଜ ଛୁଟିରେ ଘରକୁ ଆସିଛନ୍ତି । ସେ ଶୁଣିଲେ ଦେବକାକୁ ଉଠେଇବା ପାଇଁ ମଣିଷ ମିଳୁ ନାହାନ୍ତି । ସେଥିପାଇଁ ନିଜେ ବାହାରି ଆସିଲେ । କହିଲେ, "ମୁଁ ତମକୁ ସାହାଯ୍ୟ କରିବି ଦୁଖି ନନା ।"

ହେଉ । ଏ ହେଲେ ତିନ୍ । ଆଉ ଜଣେ ହେଲେ ହେଲା । ସେ ଜଣକ ବି ଶେଷକୁ ଆସି ପହଞ୍ଚିଲା—ବାଉରୀ—ପଞ୍ଚନାସ୍ତକ-ଘର ଗୃଭର ।

"କିରେ, ତୋ ବାବୁଙ୍କୁ ପଚାରିଛୁ ?"

"ବାବୁଙ୍କୁ ସିନା ମୋ ଦେହର ଖଟଣିଟାକୁ ଦରକାର—ମନର ଖଟଣି କି ଓ ଦରକାର ।"

ଦୁଖି ଅଶ୍ଚର୍ଯ୍ୟ ହେଇ ସେଇ ମୂର୍ଖ ମୁଷଣ୍ଡ ବାନ୍ତୁଙ୍ଗାକୁ ଚୁହିଁଲା ।
“ସେ ଯଦ ତୋତେ ଛାଡ଼ି ଦେବେ—”

“ଦେହର ଗାଈଟି କି ଅନ୍ତ ତାହାକୁ ବଢ଼ାଉ । ନହେଲେ ଉପାସ ରହିବ । ରହିଲେ ବା କ’ଣ ହେଲା ! ମନଟା ତ ଆଉ ଉପାସରେ ଛଟପଟ ହେବ ନାହିଁ । ପେଟ ପୁରେଇବା ପାଇଁ ଏ ହୃଦସ୍ପନ୍ଦର ବେକମୋଡ଼ ମାରୁ ଦେବ ନା ! ଉମେ କ’ଣ ନାହିଁ ଦୁଖି ନନା, ଦେବକୀ ନାନୀ ମୋତେ କେତେ ଭଲ ପାଉଥିଲା ।”

ଜୁଅଙ୍କ ଭଳି ବାନ୍ତୁଙ୍ଗା ସତେଇ ହୋଇ କାନ୍ଦିଲା ।

ଗୁରୁବର୍ଦ୍ଧନ ମିଶ୍ର ଦେବକୀର ଶବ ସଂସ୍କାର କଲେ । ବାନ୍ତୁଙ୍ଗା ଆଖିରେ ଆଉ ଲୁହ ନାହିଁ । ସେଇ କାଠ ହାଣିଲା । ମୁହଁରେ ନିଆଁ ଦେଲା । କହିଲା—ମୋ ମା ସେ । କଟିବସି ପୋଡ଼ିଲା—ଜାଳିଲା—ଖୁଣ୍ଟା ଗେଞ୍ଜିଲା । ତା’ ହାତରେ ଯେମିତି ବଜ୍ରର ବଳ । ଆଉ କେତେବେଳେ ହେଲେ ସେ କାନ୍ଦ ନାହିଁ ।

ଏଇ ମଣିଷ । ଏଇମିତି ମଣିଷ । ଯିଏ ଜୁଅଙ୍କ ଭଳି କାନ୍ଦିପାରେ; ଆଉ ଦରକାର ହେଲେ ନିଜକୁ ସମ୍ଭାଳି ନେଇ ବଜ୍ରଙ୍କ ଭଳି ଟାଣ ହୋଇଯାଏ ସେ ବି ଏଇ ମଣିଷ । ତାଙ୍କୁ ଆମେ ମୂର୍ଖ ବୋଲି କହୁଁ ।

ମୂର୍ଖ ବାନ୍ତୁଙ୍ଗା କହୁଥାଏ—“ଦେଖୁଛ ବାବୁ ଦେଖୁଛ—ପଞ୍ଚ ଆତ୍ମା ପଞ୍ଚ ଭୂତରେ ମିଶିଯାଉଛି । ଯିଉଁରୁ ତ ଚମ, ଲୋମ, ଅସ୍ଥି, ନାଡ଼, ମାଂସ । ଏଇ ଯଉଁ ଗଣ୍ଠି ଖଣ୍ଡେଟା ପୋଡ଼ି ହେଉ ନାହିଁ—ସେଇଟା ସବୁ ଶେଷଯାଏ ଜଳିବ—ସମୁଦ୍ରରେ ପୋଡ଼ ହୁଏ ନାହିଁ—ସେଇ ସେ ଯିଉଁର ସ୍ଥାନ । ଗୃହ୍ୟ ଦ୍ୱାର ପଥ ! ଅପତ୍ୟ

ରକ୍ତ, ମଳ, ମୂତ୍ର, ସ୍ୱେଦ, ଲାଳ—ଯାର ସ୍ଥାନ, ମାନେ ଅପର ସ୍ଥାନ ହେଲା ଲିଙ୍ଗଦ୍ୱାର । ଅଗ୍ନିରୁ ଆଳସ୍ୟ, ରାଗ, ନିଦ୍ରା, କ୍ଷୁଧା, ତୃଷା —ନୟନରେ ରହିଥିଲା ଅଗ୍ନି । ଗଲା । ସବୁ ଗଲା । ସବୁ ଯାଉଛି । ମଲା ସାଙ୍ଗେ ସାଙ୍ଗେ ଅଗ୍ନି ଯାଉଛି । ବାୟୁ ବି ଯାଉଛି । ବାୟୁରୁ ପ୍ରାଣ, ଅପାନ, ବ୍ୟାନ, ଉଦାନ ସମାନ—ଏ ସବୁ ହୁଣ୍ଡ ହୋଇଥିଲେ ସେଇ ନାସାରେ । ଦାଣ୍ଡ ଆକାଶରୁ ତ କାମନା, ଭୟ, ଲଜ୍ଜା, ଲୋଭ, ମୋହ ଇତ୍ୟାଦି—ସ୍ଥାନ ମସ୍ତକ ଆଉ କର୍ଣ୍ଣ ଦ୍ୱାର । ପ୍ରାଣ ଗଲା ସାଙ୍ଗେ ସାଙ୍ଗେ ଏ ଶେଷ ତିନି ତତ୍ତ୍ୱ ଅଗ୍ନି ବାୟୁ ଆକାଶ ଶୂନ୍ୟପାଏ ।

କହୁଥାଏ, ଏଣେ ମଝିରେ ମଝିରେ ନିଅ ନୂଆଁଟାକୁ ଧରି ଗୋଟାଏ ନିପୁଣ ମଣ୍ଡା ଚଣ୍ଡିଆ ପରି ଗାଢାରେ ପକାଉଥାଏ; କେତେବେଳେ ନୂଆଁଟାଏ ମାରି ଦେଉଥାଏ ।

ରାମବାବୁ ବାତୁଙ୍ଗାର ବିଦ୍ୟାକୁ ମନେ ମନେ ହସି କହୁଲେ— "ଏ ସବୁ କଉଠିକା ପଠେଇ ବାତୁଙ୍ଗା ।"

"କାହିଁକି—ପୋଥି ଶାସ୍ତ୍ରରେ ସବୁ ଅଛି" ବାତୁଙ୍ଗା ଖୁବ୍ ଦମ୍ଭରେ ଉତ୍ତର ଦେଲା ଏଇ ତ ଭାଗବତରେ କହୁଛି—

ଅସ୍ଥି ପଞ୍ଜର ସ୍ନାୟୁପାଶେ । ସ୍ତମ୍ଭଣୀ ନଖ ଲୋମ କେଶେ ।।
ଶିରା ଶିକୁଳି ଗଣ୍ଠି ପୋଷି । ଚର୍ମ ରୁଧିର ମାଂସ ଲେପି ।।
ଏ କାୟା ଘରେ ବାସ ମୋର—

"କାହାର ? ଏଇ ଜୀବାତ୍ମା—ଜୀବାତ୍ମ । ବୁଝିଲ ? ଶରୀରଟା ହେଲା ତାର ଘର ।

ଏ କାୟା ମଧ୍ୟେ ବାସ ମୋର । (ପୁଣି) ନିରନ୍ତର ବନ୍ଧେ ନବଦ୍ୱାର ।।
ଏହା ମଧ୍ୟରେ ମଳ ମୂତ୍ର । ସମ୍ପୂର୍ଣ୍ଣ କଫ ବାତ ପିତ୍ତ ।।

ଦୁର୍ଦ୍ଦେ କୃମି କ୍ଷଳ ନାଭ । ଅଶେଷ ରୋଗେ ଛନ୍ଦ ବେଢି ॥”
ଏମନ୍ତ ଘରେ ମୋତେ ଶୋଇ । ଯେ ଗୁରୁ ଗଲ ଶିକ୍ଷାଦେଇ ॥”

କିଏ ? ଗୁରୁ କିଏ ? ପରମାତ୍ମା, ପରମାତ୍ମା—ଅନାଦ୍ୟସୃଷ୍ଟ ପରଂବ୍ରହ୍ମ !

“ସେ ଗୁରୁ ବାକ୍ୟ ପରମାଣି । ଏ ଘ—ରେ—ମୃତ୍ତି—ଦୋଷ୍ଟବଣୀ । ହବବେଲ !”

ହରବୋଲ୍ ଦେଇ ବାଳୁଙ୍ଗା ପୁଣି ଗାହାରେ ପକାଏ । ଦୁଖି ସମ ଦୁଃହିଁ ଗାଁବା ହେଉ ଗୃହନ୍ତ । ଏ ନିଶା ଖାଇ ନାହିଁ ତ ଅଛ । ମଣିଷ ନିଶା ନ ଖାଇଲେ କ’ଣ ଏତେ ବଡ଼ ନୃଶଂସ କାମ କରି ପାରିବ ? ବାଳୁଙ୍ଗା ନିଶା ଖାଇଛି । କିନ୍ତୁ ସେ ଗୋଟାଏ ଭଲେ ନିଶା । ସେ ନିଶା ଯେମିତି ସେ ନିଜ ଭିତରେ ସାଇତି ରଖିଛି—ଦୁଃଖ ଯନ୍ତ୍ରଣାରେ ତାକୁ କାଢ଼ି ଦେଇବା ପାଇଁ ।

ରହି ରହି ସେ ପୁଣି ବେଳେବେଳେ କହୁଛି—“ହାୟ ହାୟ ଦେବକୀ ନାମୀ ଗୁଲିଗଲ—ବାଳୁଙ୍ଗାକୁ ଏଠି ରଖି ତମେ ଗୁଲିଗଲ—ହିଁ—ହିଁ—ତମ ବାଳୁଙ୍ଗ—ତମେ ଗୁଲିଗଲ—

ମର୍ତ୍ତ୍ୟମଣ୍ଡଳେ ଦେହବହି । ଦେବତା ହୋଇଲେ ମରଇଁ ।

ଚକଗ୍ର କହେ—“ଅଃ କେତେ ଭଲ ମଣିଷ ନାମୀ ଅମର ବହୁଲ ।”

ବାଳୁଙ୍ଗା ଉତ୍ତର ଦଏ—“ଅଜ କଣ କହିବ ତୋ ପାଇଁ ଦେବକୀ ନାମ—ଏ ଜୀବ ମରଣ ନିକଟେ—ବେଗେ ଶନ୍ତର ଅନ୍ୟ ଘଟେ । ସେ ଯାଇଁ କେଉଁଠି ଜନ୍ମ ହେବଣି ।”

ଚକଗ୍ର କହେ—“ସେ ନିଶ୍ଚେ ସ୍ୱର୍ଗକୁ ଯିବ—ଯେତେ ପର ଉପକାର କରିଛି ।”

ବାଳୁଙ୍ଗା ପୁଣି ପଦ ବୋଲେ—“ସ୍ୱର୍ଗ ନରକ ବେଦବାଣୀ । ଏହା ମୁଁ ଏକ ଧର୍ମ ଜାଣି ।” “ଏଣୁ ମୋ ସୁଖ ଦୁଃଖ ଏକ । ସମେ

ଦେଖଇ ସବଂଲୋକ ।" "ତାର ପୁଣି ସ୍ୱର୍ଗ କଣ ନକ କ'ଣ । ସେ ତ ସମସ୍ତିଙ୍କି ସମାନ ଅଖିରେ ଦେଖୁଥିଲା ।"

ପୁଣି ଶବ୍ଦକି ଉଠି ସେ କହେ—''ହେଉ ହେଉ କଳାଗଞ୍ଜ— କଳାଗଞ୍ଜ—ସାବାସ ! ଓଃ କେଡ଼େ ବଞ୍ଚିଲ ଏ ମହାତ୍ମା ଭଲ ପାଉଛ ମ ! ଅଗ୍ନି ଯେସନେ ସବ ଖାଇ । ଭସ୍ମରେ ଗୁଣ ଦୋଷ ନାହିଁ ।''

ଏଇ ମୂର୍ଖ—ବାତୁଙ୍ଗା ମୂର୍ଖ—ମୂର୍ଖ ବାଲୁଙ୍ଗା !

ଯେତେ ସବୁ ବଡ଼ ମଣିଷ—ଯାହାଙ୍କୁ ବଡ଼ ଲୋକ କହନ୍ତି— ଯିଏ ବହୁତ ପାଠ ଶାଠ ପଢ଼ିଛନ୍ତି—ଯିଏ ନିଜକୁ ସଭ୍ୟ ବୋଲନ୍ତି ସେ କହନ୍ତି ଏଙ୍କୁ—ମୂର୍ଖ । କହନ୍ତି—ଏଇ ମୂର୍ଖ ହାଣ୍ଡୁଆ ବାଣ୍ଡୁଆ ଲୋକଗୁଡ଼ାଙ୍କର ଖୁବ୍ ସ୍ଥୂଳ । ଏମାନଙ୍କର ସୂକ୍ଷ୍ମ ଅନୁଭୂତ ନାହିଁ । ହୃଦୟଟା ଭୋଁତା । ସୁଖ ଦୁଃଖକୁ ବଡ଼ ବଡ଼ିଆ ଯୋଉ ଧବଳ- ମାନେ ସବୁ ଯେତେ ନିହୁ ଭାବରେ ଅନୁଭବ କରନ୍ତି—ଏଙ୍କର ସେଭଳି ଅନୁଭବ କରିବାର ଶକ୍ତି ନାହିଁ ।

ରାମବାବୁ କହିଲେ—ବଡ ସୁଖର ମରଣ ଏ—ସେ କାହାକୁ କହାଇ ଯାଇ ନାହିଁ ।

ଚକଧ୍ୱ କହିଲା—"ଗାଁ ଯାକ ସମସ୍ତେ ଗାଳିଦେଉଛନ୍ତି— ଠାକୁରାଣୀଙ୍କି ପୋଡ଼ିଲେ ଆଉ ଗାଁରେ ରକ୍ଷା ରକ୍ଷଣ ରହିବ ନାହିଁ ।"

ବାଲୁଙ୍ଗା କହିଲା—"ତୋର ଆଉ ମରିବାକୁ ବାକି କିଏ ଅଛୁରେ ? ଗାଁ ଯାକ ମରନ୍ତୁ !"

ଚକଧ୍ୱ କହିଲା—"ଗାଁଟା ଯାକ ମଲେ ମୁଁ କାହାଘରେ ଖଟି ଖାଇବି ?"

ବାଲୁଙ୍ଗା କହିଲା—"ତୁ ଏକା କଣ ଆଉ ବଞ୍ଚି ରହିବୁ କି ?"

ଚକରା କହିଲା—"ନ ବଞ୍ଚିବ କିଆଁ ବଞ୍ଚିଛି ତ ! ବାପ ମଲା, ମା ମଲା, ଭାଇ ମଲା, ମାଇପ ମଲା, ତଥାପି ମୁଁ ମରୁ ନାହିଁ । ମୋ ଜୀବ ଚଢ଼େଇ ଛାଣୁଅ ଜୀବ, ସେ ସହଜରେ ଯିବ ନାହିଁ ।"

ହଁ, ଏଇ ଲୋକଗୁଡ଼ାକ । ଯ୍ୟାଙ୍କର ଯେମିତ ମାୟା ନାହିଁ—ମମତା ନାହିଁ—ତୁଣ୍ଡରେ ବାଟ୍ଲି ବାଜୁନାହିଁ—କେତେ ସହଜରେ ନିର୍ବିକାର ଭାବରେ ଏ କହିପାରନ୍ତି ବାପମଲା, ମା ମଲା, ମାଇପ ମଲା, ଭାଇ ମଲା—ସେ ସବୁଙ୍କ ମରଣରେ ଯ୍ୟାର ଯେମିତ କିଛି ହାନି ଲାଭ ନାହିଁ—ଯ୍ୟାର ଯିମିତ କୋଉଠି କିଛି ହୋଇ ନାହିଁ—କୋଉଠି ଟିକିଏ ଆଘାତ ବି ଲାଗି ନାହିଁ ।

"ତୋର କଷ୍ଟ ହଉ ନାହିଁ ଚକରା, ଏତେ ଗୁଡ଼ାଏ ଲୋକ ସାରିବଂଶଟା ?" ରାମ ପଚାରିଲା ।

"କଷ୍ଟ ? କଷ୍ଟ କରି ଲାଭ କ'ଣ ?" ଚକରା କହିଲା ।

ବାଜୁଙ୍ଗା ତାର ଜବାବ୍ ଦେଲା— କଷ୍ଟ ? କଷ୍ଟ କରିବାକୁ ତର ଦରକାର କିଏ ? କଷ୍ଟ କରିବାଟା କାହାର ଏକଚୁଟିଆ ନୁହେଁ-ବାବୁ । ତମ ବଡ଼ବଡ଼ଆମାନଙ୍କ ବେଳଥାଏ କାନ୍ଦିବାକୁ । ଆମର ବେଳ କାହିଁ ? ଆମକୁ ବେଳ ଦରକାର କିଏ ?

ଦୁର୍ଗି ହସି ହସି କହିଲା—"ତମକୁ ଫୁରୁସତ୍ ଦେଲେ ତମେ କାଳେ କାନ୍ଦିବ ସେଇଥି ଯୋଗୁଁ ତମ ଉପକାରୀ ଲୋକେ ଆମକୁ କାନ୍ଦିବା ପାଇଁ ବେଳ ଦିଅନ୍ତି ନାହିଁ ।

"ହଁ ବାବୁ, ଆମ କାନ୍ଦଣା ଗୁଡ଼ାକ ସେଥିପାଇଁ ସେ କାନ୍ଦନ୍ତି ।

ବାସ୍ତବିକ୍, କାନ୍ଦଣା ବେଶୀ ଏଇ ବଡ଼ ଲୋକଙ୍କର । କହନ୍ତି, ଆମର ଅନୁଭୂତି ସୂକ୍ଷ୍ମ ଆଉ ତୀକ୍ଷ୍ଣ ଜଡ଼ । ଏ ଗର୍ବ କରନ୍ତି ସେ । ଦୁନିଆର କେତେ ଚକରା କାଳି ପରି ମାଇପକୁ ଖାଇ ଅଜ୍ଞ ପ୍ରାଣୀ ଠାଇଁ ହୋଇ ପଡ଼ୁଛନ୍ତି । ସେଥିପାଇଁ ତାଙ୍କ ହୃଦୟଟା ଭୁଲ୍ଲା । ଆଉ

ବଡ଼ ବଡ଼ଅଙ୍କର ଶାଇପ ମଲେ ସେ କାନ୍ଦନ୍ତି, ଝୁରି ହୁଅନ୍ତି, ଫାଟ ରଖି ଗୃହାନ୍ତି, ପଟେ ନୁହେଁ ମାସେ ନୁହେଁ—ବର୍ଷେ ଦ ବର୍ଷ ଏମିତି କଟିଲା ପରେ ପୁଣି ବାହାଚୁରି ହୋଇ ଘର ଦୁଆର କରନ୍ତି ତୋଳି ତାଙ୍କ ହୃଦସ୍ପୃହା ମୃନାଏଁ। କେବା ଜଣର ଲୋକେ ଗୋଟି ଗୋଟି ବଡ଼ ଲୋକଙ୍କର ଛୁଅଦିଲକୁ ଅଗ୍ରମ ଅବସରରେ ରଖି ଦେଲେ ବି ନିଜ କଥା ଭାବି ଦୁଂଷା କରନ୍ତି ନାହିଁ ବୋଲି ତାଙ୍କ ହୃଦ କୁନ୍ତା, ଅଳ ବଡ଼ ଲୋକ ଗୁଡ଼ାକ ଗରିବଙ୍କୁ ଶୋଷି ଶୋଷି ଅଗ୍ରମ ଅବସରେ ଭଦ୍ର ଦେଲେ ହେଲେ ଗରିବଙ୍କ କଥା ଭାବନ୍ତି ନାହିଁ ବୋଲି ତାଙ୍କ ହୃଦ ମୃନାଏଁ। ଗରିବ ହେଲେ ମୂର୍ଖ, ଏ ହେଲେ କୃଷ୍ଣ—ମାର୍ଜିତ।

ତେବେ ଜାତିର ସେବେ କାନ୍ଦନ୍ତି ନାହିଁ। କାହିଁକି କ'ଣ? କାରଣ ସେ ବଡ ଲୋକଙ୍କ ପାଖରେ ହାର ମାନିବାକୁ ଚାହାନ୍ତି ନାହିଁ। ତେମେ ତାଙ୍କ ସବୁ 'ଅରଜନ ଯାକ ଛଡ଼େଇ ନେଇ ତାଙ୍କୁ ଦାରିଦ୍ର ଉପାସୀ କରି ବସେଇ ଦେଇ—ଖାଇବାକୁ ନପାଇ, ପିଇ-ବାକୁ ନପାଇ, ଔଷଧ ଟିକିଏ ପଥି ଟିକିଏ ବି ମୁହଁରେ ଦେବାକୁ ନପାଇ ତାଙ୍କ ଲୋକେ ଗୋଟି ଗୋଟି ହୋଇ ଗଡ଼ି ମରିଗଲେ—ତମରି ପାଇଁ, ତମ ଏଇ ବଡ଼ଲୋକଙ୍କ ପାଇଁ—ତଥାପି ସେ ଟିକିଏ କାନ୍ଦ କାନ୍ଦ ତମ ଆଗରେ ତାଙ୍କର ଦୁର୍ବଳତା ଦେଖେଇବାକୁ ଚାହାନ୍ତି ନାହିଁ—ତମ ପାଖରେ ସେ ହାର ମାନିବାକୁ ଚାହାନ୍ତି ନାହିଁ। ସେ ପୁଞ୍ଜିଣି ତମର ଅସନ୍ତା ଅତ୍ୟାଚାରକୁ ନିରବରେ ସହିବା ପାଇଁ—ପରିବାଳିବା ପାଇଁ ତଆର ହୋଇ ଯାଆନ୍ତି।

ଭବସ୍ତରେ ମାଇପ ମରିଣ। ଶୁଖି ସାରି ସେ ପୁଣି ବାହା ହବ—ତା' ନିଜପାଇଁ ନୁହେଁ—ସାଙ୍ଗ ହେଇ ତମ ଦାଉ ସହିବା ପାଇଁ ସେ ବାହା ହବ—ତମରି ପାଇଁ—ତମକୁ ସେ ଭାର ଦେହର ହାଡ଼ଗୋଡ଼

ମାଉଁସ ଏକଟୁ ବୋଲି ଗ୍ରହଣ ପଥର ଭଳି ସେ ବାନ୍ଧା ହୁଏ—ତାଙ୍କୁ ବଡ଼ଲୋକ କରିବା ପାଇଁ, ଶିକ୍ଷିତ ସଭ୍ୟ କରିବା ପାଇଁ—ସେ ବାନ୍ଧା ହୁଏ—ମୂର୍ଖ ଅମଣିଷଙ୍କ ପରି । ହଁ, ମୂର୍ଖ ଅମଣିଷ—ତାଙ୍କର ମୁହଁରୁ ସେ ସେଇ ପଦ ଶୁଣିବ ବୋଲି ତାର ବାନ୍ଧା ହେବା ।

ସଜା ଦେବକୀର ପାଉଁଶରେ—ଭସ୍ମରେ ଶୁଭ୍ର ସହଜ ଦେହ ଦେଇ ଘରକୁ ଫେରିଲା ଦୁଃଖି । ଜୀବନର ସାଥୀ ସେ । ମନେ ହେଉଥିଲା, ତା ନିର୍ଜନ ବାଟରେ ସେ ଆଉ ଏକା ନୁହେଁ । ହଠାତ୍ ସେ ଧାରଣା ତାର ଦୂର ହୋଇଗଲା । ଦେବକୀ ଚାଲିଗଲା—କେଉଁଠୁ ଆସିଥିଲା, କେଉଁଠିକି ଚାଲିଗଲା ସେ ଜାଣେ ନାହିଁ । ଯୋଟିଏ ଗୋଟିଏ ଜାମ ମାଇଁ ଯେମିତି ଗୋଟିଏ ଗୋଟିଏ ମଣିଷର ଜନ୍ମ । ଦେବକୀ ତାର ଅଜ୍ଞାତ ବଢ଼ାଇ ଚାଲିଗଲା । ଦୁଃଖି ଯେଉଁ ଏକାକୁ ସେଇ ଏକା । ତାର ମନେହେଲା, ତାର ଯେମିତି ହାତ ଆଉ କେହି ନାହିଁ ।

ନା—ନା—ସେ ସାଥୀ ପାଇଛି । ଦେବକୀ ମରିଯାଇ ଅଜା ତାକୁ କେତେସାଥୀ ଦେଇଯାଇଛି—ଏଇ ଗ୍ରାମ—ଚଢ଼େଇ—ବାଳୁଙ୍ଗା । ସେ ସାଥୀ ପାଇଛି । ତାର ଆଉ ଡର କଣ ?

ଏଇ ଗ୍ରାମ ପିଲାଟିକି ଦୁଃଖିକୁ ଖୁବ୍ ଭଲ ଲାଗିଲା । ପାଠ ପଢ଼ିଛି ବି. ଏ. ଯାଏଁ । ମନରେ ଟିକିଏ ବୋଲି ବଡ଼ଲୋକର ଗର୍ବ ନାହିଁ । ଅଛି ପାଠପଢ଼ାର ସାମାନ୍ୟ ଅଭିଜ୍ଞତା । କିନ୍ତୁ ପୋଷାକରେ ବିଶେଷ ବାବୁଆନା ନାହିଁ—ସହଜିନ୍ ଲୁଗାଅଛି । ପୁରୁଣା ମରହଟିଆ

ବୁଢ଼ା ଅଜ ନୂଆ ପାଠୁଆ ଟୋକାଙ୍କ ଭିତରେ ଯେଉଁ ଚ୍ଛେଦଟା, ସେଇ ଚ୍ଛେଦର ସରବର୍ତ୍ତୀ ଅଂଶ ଏଇ ସ୍ୱମ।

ସ୍ୱମ ଭଲ ଛାତ୍ର । ମଧ୍ୟବିତ୍ତ ଶ୍ରେଣୀର ପିଲା । ବାପର ଅଳ୍ପ କିଛୁ ଜମିଦାରୀ । ଟଙ୍କା ହଜାରେ ଯାଏ ମଫସଲ ଜମା । ଜମି ବୋଉଁଏ ପଚଶମାଣ ହେବ । ନିଜଗୃହ କିଛୁ—ବାକି ବାଜ ବଗସ ଦିଆଯାଏ । ବାପ ମାଙ୍କର ଅଶାଥିଲା, ଏବେ ବସ୍ତ୍ରରେ ସ୍ୱମକୁ ଏବେ ପାଠ ପଢ଼େଇବାନ୍ତି—ଭଲ ପଢ଼ୁଛି ବି ସେ—ସ୍କଲରଶିପ ପାଏ—ଗୋଟାଏ କିଛୁ ବଡ଼ ଗୁକିରୀ ପାଇବ । କିନ୍ତୁ ଗୁକିରୀ ହେବ ନାହିଁ—ଖାଲି ମୁରବ ହୋଇ ନାହିଁ ବୋଲି । ବାଧ୍ୟ ହୋଇ ସ୍ୱମ ଓକିଲାତି ପଢ଼ିଲା ।

ସ୍ୱମ ଏବେ ବି ଓକିଲାତି ପଢ଼େ । ତା ସାଙ୍ଗରେ ଏମ୍. ଏ । ଦୁଖି ଅଜ ସେ ଦୁହେଁ ଯାଇ ମିଶି—ଏଇ ଶରଦନ ଗ୍ରୀଷ୍ମ ଛୁଟିରେ ସ୍ୱମ ଘରକୁ ଅସିଥାଏ—ସଞ୍ଜ ହେଲେ ବୁଲି ବାହାରି ଅସନ୍ତି ବଗିଚ୍ଛୁ—ଅମ୍ବ ତୋଟା ଅଡ଼କୁ ।

ଦୁଖି ଦିନେ ପଚ୍ଛରିଲା—"ସ୍ୱମବାବୁ, ପଢ଼ିସାରି କ'ଣ କରିବେ—ଗୁକିରୀ ?"

"ନା, ମୁଁ ଗୁକିରୀ କରିବି ନାହିଁ ।"

"ତେବେ, ଏତେ ଗୁଡ଼ାଏ ପଢ଼ିଲେ ଯେ—"

"ପଢ଼ିବା ଅର୍ଥ କ'ଣ ଗୁକିରୀ କରିବା ? ମୁଁ ଗୁକିରୀ କରିବାକୁ ପାଠ ପଢ଼ୁ ନାହିଁ । ମୋର ଉଦ୍ଦେଶ୍ୟ ଜ୍ଞାନ ଅର୍ଜନ କରିବା ।"

"ଜ୍ଞାନ ଅର୍ଜନ କ'ଣ ଘରେ ପଢ଼ିଲେ ହୁଏ ନାହିଁ ?"

"ନା—ପଢ଼ିବାର ମନୋବୃତ୍ତି, ପଢ଼ାପଢ଼ିର ବାତାବରଣ ଉପରେ ନିର୍ଭର କରେ—ଯାହାଟା ଘରେ ସମ୍ଭବ ହୁଏ ନାହିଁ ।"

ବାସ୍ତବକ୍—ପଢ଼ିବାଣ୍ଟା ଘରେ ବସି ହୁଏ ନାହିଁ । ଦୁଖି କେତେଥର ମନ କରନ୍ତି—ସଂସ୍କୃତର ଯେତେ ପ୍ରଧାନ ପ୍ରଧାନ କାବ୍ୟ ସବୁ ପଢ଼ି ଦବ ଅଛ ତା' ସାଙ୍ଗରେ ସାମାନ୍ୟ ଇଂରାଜୀ ମଧ୍ୟ ପଢ଼ିବାକୁ ଆରମ୍ଭ କରିବ—କିନ୍ତୁ ହୋଇ ପାରେ ନାହିଁ । କ୍ରମେ କ୍ରମେ ବରଂ ସେ ପାଠ ସବୁ ଭୁଲିଯିବାକୁ ବସିଛି । ଯାହା ପଢ଼ିଥିଲା ସେ ବି ଗଲା—ତାକୁ ବି ଖାଇ ନୂଆ କି ବସିଲଣି । କାବ୍ୟ ପଢ଼ି କାବ୍ୟର ରସ ଆସ୍ୱାଦନ କରିବାକୁ ଅବସର ନାହିଁ—ମନୋବୃତ୍ତି ନାହିଁ । ସାକ୍ଷାତ୍ ପ୍ରଚ୍ଛନ୍ନ ବିଶ୍ୱବତ୍ ହୋଇଛି ସେ ।

ମୂର୍ଖ ହୋଇଯାଇଛନ୍ତି ସେ ଏଇ ଗାଁ ଗହଳର ଶହ ଶହ ଲୋକଙ୍କ ପରି । ସେ ଯାହା ଯାହା ପଢ଼ିଥିଲା, ସେ ସବୁକୁ ଯେ ସେ ଆପେ ଆପେ ପାଶୋରି ଯାଉଛନ୍ତି, ତା' ନୁହେଁ—ତାର ମନେହେଲା, ସେ ଯେମିତି ମନକରି, ଇଚ୍ଛାକରି ପାଠଯାକ ଭୁଲି ପକେଇଛନ୍ତି । ଏଇ ଗାଁର ମୂରୁଖ ଲୋକଙ୍କ ସାଙ୍ଗେ ମିଶିବାକୁ, ଏଇ ଗାଁର ସରଳ ଲୋକଙ୍କ ସାଙ୍ଗେ ଏକ ହେବାକୁ ହେଲେ, ତାଙ୍କ ଦୁଃଖ ତାଙ୍କ ବେଦନାକୁ ନିଜ ଛାତି ଭିତରେ ଅନୁଭବ କରିବାକୁ ହେଲେ ଯେମିତି ଭୁଲି ଯିବାକୁ ପଡ଼ିବ ସେ ପାଠସବୁ—ବାଧ୍ୟହୋଇ ଜବରଦସ୍ତି ସେ ପାଠକୁ ଭୁଲିବାକୁ ହବ—ନହେଲେ ଚଳିବ ନାହିଁ ।

ହଁ, ଏଇ ପାଠ ।

ଏଇ ପାଠ ଏ ଦି ସେ ପାଖରେ କୋଟିଏ ପରୁଷା ଖୋଲି ଦେଇଛି—ଯେଉଁ ପରୁଷାର ସେ ପାଖରୁ ଏ ପାଖକୁ ଅଲଗା କରି—ସହର ମଫସଲ—ସେ ପାଖରେ ସହର, ଏ ପାଖରେ ମଫସଲ । ସେ ପାଖର ଲୋକେ ଏ ପାଖକୁ ହାଓ୍ୱା ଖାଇ ଆସନ୍ତି—ମନ ବହଲେଇବାକୁ—ଏ ପାଖର ସୁଖ ଦୁଃଖରେ ସାଥୀ ହେବାକୁ

ନୁହେଁ । ଏ ଗାଁର ଲୋକେ ସେ ଗାଁକୁ ଅନେକ ରଖନ୍ତି, ଏବ କେତେବେଳେ ଚାଲିଯାଏ, ସେ ପେଟକୁ ପେଟ ପୋଷିବା ପାଇଁ । ପେଟରେ ପେଟେ ଦାନା ଭବ ସେ ପେଟ ଅସନ୍ତୁ ନାହିଁ— ସାଙ୍ଗରେ ସେ ସେଇ ଅସନ୍ତୁ—ଦୁଃଖ ଦୈନ୍ୟ, ଜରା ବ୍ୟାଧି, ମିଥ୍ୟା ପ୍ରବଞ୍ଚନା, ଗ୍ଲାନିର ତଞ୍ଚକତା ଆଉ ଭଣ୍ଡାମି ହାଙ୍ଗାମା । ସେ ବୁଝି ପାରନ୍ତି ନାହିଁ ଦାନା ସେ ପେଟରେ ନଥାଏ—ଥାଏ ଏ ପେଟରେ । ସେ ଜାଣି ପାରନ୍ତି ନାହିଁ, କୋଉଁ ବାଟରେ ଏ ପେଟ ଲୋକଙ୍କର ଦାନା ସେ ପେଟ ଖାଇ ଦେଇଯାଉଚି । ଅପଣା ଧନକୁ ପର ହାତରେ ବଢ଼େଇ ଦେଇ ସେ ଯାଆନ୍ତି ତାଙ୍କଠୁଁ ଭିକ ମାଗିବାକୁ —ତାଙ୍କର ଦୁଆରେ ହାତ ପାତି ।

ଶ୍ୟାମ କହେ—"ନା—ନା—ଭୁଲ୍ ବୁଝିଚ, ଗାଁର କ ଦୋଷ ? ଗାଁ ଆମକୁ ଅନେକ ଦେଇଛି—ଗାଁ ଆମକୁ ଦୁନିଆର ସଭ୍ୟତା ସଙ୍ଗରେ ମିଶିବାର ସୁଯୋଗ ଦେଇଚି—ଗାଁ ସଂସାରକୁ ଏକ ଗୋଷ୍ଠିରେ ପରିଣତ କରିଛି—"

ଦୁଖି ପ୍ରତିବାଦ କରେ—"ହିଁ ହିଁ କରିଛି—ଶୁର୍ କରିଛି— ଥୋକାଏ ଗାଁଠୁଆ ଲୋକଙ୍କୁ ଏକ ଗୋଷ୍ଠି ଭିତରେ ରଖି— ସମସ୍ତେ ଏକ ହେବାର ଆଦର୍ଶ ଦେଖାଇ ସବଳକୁ ଦୁର୍ବଳ ଉପରେ ଅତ୍ୟାଚାର କରିବାର ସୁଯୋଗ ଦେବାପାଇଁ ଏକ ଗୋଷ୍ଠିରେ ପରିଣତ କରିଛି ।

ଶ୍ୟାମ କହେ—ଦୁଖି ବାବୁ, ରାଗିବେ ନାହିଁ—ଗୋଟେ କଥା କହିବ ?

ଦୁଖି କହେ—ଶ୍ୟାମ ବାବୁ, ରାଗିବାର କିଛି କାରଣ ନାହିଁ— ରାଗିବି କାହିଁକି ? ଆମେ ଯେଉଁ କଥାବାର୍ତ୍ତା ହେଉଚୁଁ ଏ କେବଳ କଥାର କଥା—କାମର କଥା ଆମେ କେହି କହୁ ନାହୁଁ । ଖାଲି

କଥା କଥାରେ —ଡାକ୍ ବଡଣ୍ଡାରେ ମୁଁ ସରି ଯିବ ନା ? ଏ କଲ ବା ଏ ଯୁକ୍ତି ଏଇ କଥା ଶେଷ ହେବା ସଙ୍ଗେ ସଙ୍ଗେ ସରିଯିବ। ତମେ ଯିବ ତମ କାମ କରିବାକୁ—ମୁଁ ଯିବି ମୋ କାମ କରିବାକୁ। କଥା ସାଙ୍ଗରେ କାମର କିଛି ସମ୍ପର୍କ ନଥିବ । ତେବେ ଏ କଥା କପଟର ସରିବା ଅନ୍ୟଥା ନୁହେଁ କି ?

"ଦୁଣି ବାବୁ, ମୁଁ କିନ୍ତୁ ଯାହା କହେଁ, ତା କରେଁ। ମୁଁ କହୁଛି, ପାଠ ପଢ଼ିବା ଉଚିତ ଏବଂ ପଢ଼ୁଛି ମଧ୍ୟ ।"

"ହଁ ତା' କରୁଥିବେ—ପାଠ ପଢ଼ୁଥିବେ—କିନ୍ତୁ ଯୋଉଥି ପାଇଁ ପାଠ ପଢ଼ୁଛନ୍ତି ବୋଲି କହୁଛନ୍ତି ସେ ସବୁ କିଛି ହେଉଛି କି ନାହିଁ ତାହିଁ କି ସନ୍ଦେହ ହୁଏ । ପାଠ ପଢି ଆମେ କ'ଣ ଛକୁତରେ ଅଗ୍ରେଇ ପାରୁଛୁ—ଦୁନିଆର ସଭ୍ୟତା ସାଙ୍ଗରେ ମିଶିପାରୁଛୁ—ଜମ୍ବା ସଂସାରକୁ ଏକ ଗୋଷ୍ଠିରେ ପରିଣତ କରିପାରୁଛୁଁ ? ମୋର ମନେ ହୁଏ ଆମେ ପାରୁ ନାହୁଁ ।"

"ମୁଁ ଠିକ୍ ସେଇ କଥା କହୁଥିଲି । ଆମେ ପାରୁ ନାହୁଁ କାରଣ ଆମର ପଢ଼ା ଠିକ୍ ଭାବରେ ହେଉ ନାହିଁ—ଆମେ ଗବେଷଣା କରି ପଢୁ ନାହୁଁ—ଉପରେ ଭାସି ଯାଉଛୁ । ସେଥିପାଇଁ ମୁଁ କହୁଥିଲି, ଯିଏ ପ୍ରକୃତ ଦେଶର କର୍ମୀ ହେବାକୁ ଚାହେଁ ତାର ଯଥେଷ୍ଟ Study ବା ଅଧ୍ୟୟନ ଦରକାର । ଆପଣ ପୃଥିବୀର ଅନ୍ୟ କୋଣରେ କ'ଣ ଘଟିଯାଉଛି ସେ ସବୁ ନ ଜାଣିଲେ, ତୁଳନା କରି ନ ଦେଖିଲେ ନିଜର ଅବସ୍ଥା ଠିକ୍ ଠିକ୍ ବୁଝିପାରିବେ ନାହିଁ । କାରଣ ପୃଥିବୀର ଖୁବ୍ ଦୂର ଦେଶ ଗୁଡ଼ିକ ଅଗଷ୍ଟ ଯେତେ ଦୂରରେ ଥିଲେ ଏବେ ସେତେ ଦୂରରେ ନାହାନ୍ତି ତ ଖୁବ୍ ନିକଟତର ହୋଇ ଗଲେଣି—ଖୁବ୍ ଜଡ଼ାଜଡ଼ି ହୋଇ ଗଲେଣି ।

ପ୍ରତ୍ୟେକର ପ୍ରଭାବ ପ୍ରତ୍ୟେକ ଉପରେ ପଡ଼ୁଛି—ସ୍ୱତନ୍ତ୍ର—ଅବ୍ୟାହତ ନାହିଁ ।"

"ହୋଇପାରେ, ମୁଁ ନିଜର ଅବସ୍ଥା ଅନ୍ୟର ଭଲ ଭାବରେ ବୁଝିବ—ଅନ୍ୟର ଅବସ୍ଥାର ଦେଖି ପାରିବ, କିନ୍ତୁ ମୁଁ ନିଜର ଅବସ୍ଥାକୁ ଅଙ୍କ ଯେତିକି ଅଳ୍ପ ଭାବରେ ବୁଝିଛି, ସେତିକି ପାଇଁ ତ ମୁଁ ଦାମ କରିପାର ନାହିଁ—ପାରିବା ଦୂରର କଥା—କରିପାରୁ ବ ନାହିଁ ।"

"ଆପଣ କରିପାରିବେ ନାହିଁ । କାରଣ କୌଣସି ପଦାର୍ଥ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ନହେଲା ଯାଏ ଆପଣ ତାକୁ ଧରି ସଫଳ କାମ ହୋଇ ପାରିବେ କିପରି ? ପୁଣି କୌଣସି ବସ୍ତୁର ପୂର୍ଣ୍ଣ ଜ୍ଞାନ ଲାଭ କରିବାକୁ ହେଲେ, ତାର ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ଜ୍ଞାନ ଏକାନ୍ତ ଆବଶ୍ୟକ । କିନ୍ତୁ ଆପଣ ଯେ କୂପମଣ୍ଡୂକତାକୁ ପସନ୍ଦ କରୁଛନ୍ତି ଦେଖୁଛି ।" ରାମ ହସିଲା ।

ଦୁଃଖି ବି ହସିଲା । ହସି ହସି କହିଲା—"ଅତଏବ ଆକାଶ ମଣ୍ଡୂକଠାରୁ ସ୍ଥିର କୂପମଣ୍ଡୂକ ଭଲ ନୁହେଁ ?"

ଭିକାରୀଟିଏ ଆସି ହାତ ମାଗେ—"ବାବୁ ଗୋଟିଏ ପଇସା !"

ରାମ ହୁଙ୍କାରି କହେ—"ଯାଃ ପଳା—ଭଲମାନଙ୍କୁ ନାହିଁ—ଭିକମାଗି ଖାଉଛୁ ।"

ଭିକାରୀ ଡରେ ଗୁଳିପିଠାକୁ ବଢ଼େ । ରାମ ପଛରୁ ଡାକେ—"ହେ ଭାଇ, ଟିକିଏ ଶୁଣିବ ।"

ଭିକାରୀ ଫେରେ । ଦୁଃଖି ତା ଘରର ହାଲ ଖୋଲ ପଚାରେ । ତା ଦୁଃଖକୁ ସେ ଅନୁଭବ କରିବାକୁ ଚେଷ୍ଟା କରେ । ବୁଝାଇ କହେ—କିଛି କାମ କର—ଖଟି ଖାଅ—ଲଟି ଖାଅ—ମାଟି

ଲାଭ ନାହିଁ । ବହୁସ୍ଥାନ ପଇସେ ଅଧରେ ହୁଏ । ଦେଉ ବଡ଼ା ଲାଭହୁଏ ।

“ଭାବପ୍ରବଣତା—ସମ ଟିପ୍ପଣୀ ଲାଗେ”—“ଦୁର୍ବଳ ଭାବ ପ୍ରବଣତା ।”

“ସମ ବାବୁ,” ଦୁଖି କହେ—“ଆମେ କ’ଣ ଭାବପ୍ରବଣତାର ଭୁଲ୍ ପାଇଁ ଭୋଗୁଥାଇଁ ? ଅମେ ଭୋଗୁଛୁ, ଅମର ପରସ୍ପର ପ୍ରତି ଏଇ ଦୁର୍ବଳ ଭାବପ୍ରବଣତାର ଅଭାବ ପାଇଁ । ମୁଁ ବୁଝୁଛି, କେବଳ ତାହାରେ କିଛି ଲାଭ ନାହିଁ । କିନ୍ତୁ ଅମେ ଯେ ତାହ ଶିଖିନାହୁଁ ଅଜ୍ଞଯାକେ ।”

ସମ ଚୁନିପଡ଼େ । ଦୁଖିର ପଇତାକୁ ଚାହିଁ କହେ—“ଦୁଖି ବାବୁ, ଅପଣଙ୍କର ସେ ପୁରୁଣା ପଣ୍ଡିତିଆ ବୁଦ୍ଧି କେବେ ଯିବ ? ଏ ପଇତାଟା କିଆଁ ପକେଇଚନ୍ତି—ବ୍ରହ୍ମତ୍ୱ ?”

ଦୁଖି ଉତ୍ତର ଦିଏ—“ଏ ଦ’ଖିଅ ସୂତା ପାଇଁ ଏତେ ଆପତ୍ତି ? ଅଜି କିଛି ଅର୍ଥଭା ସୂତାରେ ସେ ଜାତୀୟ ପତାକାଟା ଉଡ଼ୁଛି ସେଠି—ସେଇଟା କି ନହେଲେ କ’ଣ ଚଳନ୍ତା ନାହିଁ ?”

“ଜାତୀୟ ପତାକା—ଅଉ ପଇତା ? ତାହାକୁ ତାହା ସଙ୍ଗେ ତୁଳନା କରୁଚନ୍ତି ଆପଣ ? ପଇତାଟା ଗୋଟାଏ ନୀଚ ସଙ୍କୀର୍ଣ୍ଣତା—ବ୍ରାହ୍ମଣର ଏକଚୁଟିଆ—କିନ୍ତୁ ଜାତୀୟ ପତାକା—ସମଗ୍ର ଜାତିର ପତାକା—ସତ୍ୟ ଅହିଂସାର ପ୍ରତୀକ ।”

“ମୁଁ ବୁଝିଛି । ମୁଁ ଅଜବ ଭଲ କରି ବୁଝିଛି ଯେ, ଯେତେଦିନ ଯାଏଁ ମୁଁ ପଇତାର ସମ୍ମାନ ନ ଦେଇ ଶିଖିଛି, ସେତେଦିନ ଯାଏଁ ଜାତୀୟ ପତାକା ତଳେ ଠିଆ ହେବାର ହକ୍ ମୋର ନାହିଁ । ଏ ପଇତା ମୋର ଯେମିତି ଗୋଟାଏ ବ୍ରତ—ପତାକା

ସେମିତ ଅଛୁ ଏକ ବୃନ୍ତ । ମୁଁ ତାହାଠୁ ଛୁଟି ପାରିବ ନାହିଁ । ଗୋଟିକରୁ ଭ୍ରଷ୍ଟ ହେଲେ ଅନ୍ୟଟିରୁ ଭ୍ରଷ୍ଟ ହେବାର ଭୟ ରହୁଛି ।"

ଶ୍ୟାମ ଆଉ ଦୁଖି । ଦୁଖି ଦେଖିଲା, ଦୁହେଁ କେତେ ତଫାତ୍ । ତଥାପି ଏଇ ବିଭେଦ ମଧ୍ୟରେ—ପାର୍ଥକ୍ୟ ମଧ୍ୟରେ—ଏ ସାର୍ଥକ୍ୟ, ଏ ଛଡ଼ା ଛଡ଼ା ଜନ୍ମ ନୁହେଁ—ତଥାପି ତାର ଭିତରେ ଦୁଇଜଣଙ୍କର ଗୋଟାଏ ଘନିଷ୍ଠତା ଜମି ରହୁଛି—ଠିକ୍ ଅସ୍ୱୀକୃତ ହୋଇ ନ ପାରେ

ଶ୍ୟାମ ଯେତେବେଳେ କହେ—"ଦୁଖି ବାବୁ, ଆପଣଙ୍କର ମୋର କେବେ ବନିବ ନାହିଁ—"

ଦୁଖି ଜବାବ ଦିଏ—"ତଥାପି ଆମେ ଦୁହେଁ ଦୁଇଟି ଅବନା ଅକ୍ଷର ବିଶିଷ୍ଟ ଗୋଟିଏ ଶବ୍ଦ ପରି ଅଲଗା ଅଲଗା ହୋଇ ମଧ୍ୟ ଖୁବ୍ ପାଖରେ ପାଖରେ ନିର୍ମଳ ନିଟୋଳ ଅଉ ସରଳ ହୋଇ ରହିଥିବା ।"

ଶ୍ୟାମର ଛୁଟି ସରିଯାଏ—ଶ୍ୟାମ ଚାଲିଯାଏ ସହରକୁ—ବିଦ୍ୟା ଜନ୍ତୁ ହବା ପାଇଁ । ଦୁଖି ପଡ଼ି ରହେ ତାର ସେଇ ଗାଁରେ । ଯେଉଁଠି କେକୁଳିଆ ପଣ୍ଡା ଡାକ ଦେଇଯାଏ—'ପ୍ରାଣୀମାନେ ଯଦ ପୁଣ୍ୟବନ୍ତ ଥିବ ।'

ଜ୍ୟେଷ୍ଠ ଅଷାଢ଼ରେ ପହିଲ୍ ଅସରାଏ ବରଷା ଆସି ଧୂଳିମାରି ଦେଇଯାଏ—ଧୂଳିରୁ ଉଠେ ଗନ୍ଧ—ମାଟିର ଗନ୍ଧ । ସେଇ ଗନ୍ଧ ପାଇଁ ଗୃହୀ ପାଗ ବୁଝେ ।

ସହରର ଚିନ୍ତା ନାହିଁ—ଦର ନାହିଁ—ଖରା ବର୍ଷା ଶୀତରେ ଏକା ପନ୍ଥ ଚାଲିଛନ୍ତି । କିନ୍ତୁ ଭାଙ୍ଗିଲାଣି ଟଉର ଗାଁର ।

ଲଙ୍ଗଳ ଚଳେଇ, ସେଆର ଭାଟି ଚଷାଭାଇ ଡାକ ଛାଡ଼ିଦିଏ—"ଶ୍ୟାମ ଯେ ଶ୍ୟାମ ହୋ ଟାଉନକୁ ଗଲେ—ଠା—ଭୁଲ ଜଳଅ ଭୁଲ !" କହାଣ, ଦୋଓଡ, ଟେଣ୍ଡେ ସହିଯାଏ । ମଣ୍ଡି ଭୁଲେ ।

ଧାନବୁଣି ହେଲ ଓଗାଳ କରେ । ବରଷା ଅସିଯାଏ । ଶାଗୁଆ ଶାଗୁଆ ଧାନ ଦୁଆ ବାଡ଼ାରେ । ଧାନ ବୁଏ । ଚଷା ପୁଅ ତଥାପି ମନେ **ମନେ ଝୁରୁଥାଏ**—କିଛି ହେଲା ନାହିଁ—କିଛି ହେଲା ନାହିଁ—ବରଷା କାହିଁ—ସବ ଯଦ, ଆଠ ଦୁମ୍ବାଣି ଖୋଳ ଅସର୍, ବଉଣି ଲୁଚି ଲୁଚି ଚଇଷଟି କୁଣ୍ଡାବଂଶ, ଯେବେ ପାଇଁ ଚଷ ମୂଷ ପେଟ ହେବ ପୂର୍ଣ ।

ଦେଖୁ ଦେଖୁଁ ବିହୁଡ଼ା ଜଟିଯାଏ । କିଏ ବୁଏ, କିଏ ବିହୁଡେ । କିଏ ଅଷାଢ଼େ ବୁଏ ଦଲବେ—କିଏ ଶ୍ରାବଣ ବୁଏ ଫଳତେ । ହଳରେ ଗାର କାଟି କାଟି କିଏ କହୁଥାଏ—"ଏ ଭାଇ, ଏ ହଳିଆଟା କହୁଚି ଅଣିଲୁ ରେ—ଏ ତ ଟଳିଆଟାଏ । କଥାରେ ଅଛି ପର—ଖଳିଆ ବୋଲେ ପାଟକାରେ ଦେଖ୍ ମୋର ଗୁଳିକି, ତୁ ମୁଁ ଦହେ ସାଙ୍ଗ ହେଲେ ସାଅନ୍ତ ମରବ ବାଳିକି ।"

ଆର ଜଣକ ଜବାବ୍ ଦିଏ—"ନାଇଁରେ ଭାଇ ମୁଁ ଦେଖିକି ଅଣିଛି—ବଳଦ ଖଲିଆ କାହିଁକି ହବ ? କମିତ କୁଣ୍ଡଳ ଶିଙ୍ଗା ଦେଖୁଚୁ ନା ? କଥାରେ ଅଛି ପର—ଜାଣ ନଜାଣ ହାମ୍ଲା ଆଣ, ଖାଉଆ ଶିଙ୍ଗା ସବୁଠୁଁ ଟାଣ; କୁଣ୍ଡଳ ଶିଙ୍ଗା ଦେଖିବୁ ଯେବେ, ଅଣ୍ଟା'ରୁ ପଇସା କାଢ଼ିବୁ ତେବେ ।" "ମୁଁ କଣ ଚୁଲିଟାରେ ଦ ଦ' ଭୋଡ଼ି ଗଣି ଦେଇଚି ନା ?"

ବସ୍ତି ଖେଳା ଦାତୁଙ୍ଗା କଟା ସରିଯାଏ ।

ତେଣେ ଏକରବେ ଗାଉଁ ମଝିର ରାସ୍ତା ଉପରେ ହଳ ବଳ ଦେଇଯାଏ । ବିହୁଡା ନାହିଁ—ବୁଣା ନାହିଁ—ତଥାପି ଦୋକା-ନରେ ବଜାଳିରେ ପଳି ପଡ଼ିବା ଧାନ ଗୃହଳ ଭରି ଯାଇଛି ।

ଏଣେ ମଫସଲରେ ଭଟଳଣି ପଡ଼ିଯାଏ—କାହିଁ ବରଷା କାହିଁ ? କରକଟି ୟରଙ୍ଗ ଦନ୍ୟାନ୍ତର କାନେ ପାଣି ହେବାର

କଥା—ପୂର୍ଣ ଜୁଲାଇରେ ଅନାବାଏ ପଡ଼ ସିନା ବରଷିବ ଯେବେ ଯାଇ ଧାନ ହେବ । ଭାଦ୍ରୁ ବରଷା ଭାଦ୍ରୁ—ଏ 'ଯେ ମରୁଡ଼ି !

ମରୁଡ଼ି ମରୁଡ଼ି ହୋଇ ହେଟୁ ଖେଟୁ ମାଡ଼ିଆସେ ବନ୍ୟା । ଥଇ କୂଳ ମାନେ ନାହିଁ । ଗାଁ ଗଣ୍ଡା, ବିଲ ବନ, ଦାଣ୍ଡ ଘାଟ ସବୁ ଏକାକାର ହୋଇ ଯାଏ । ଗାଁ ଗହଳରେ ହାହାକାର ଖେଳିଯାଏ । ଲୋକେ ଅନାଇ ଥାନ୍ତି ଦକ୍ଷିଣା ହେଉଥିବେଳେ ପଦେଇବ— ବ୍ରାହ୍ମଣ ବରଷା ବନ୍ଦ—ଦକ୍ଷିଣା ପାଇଲେ ଯାଆନ୍ତି ଛୁଟି । ଦକ୍ଷିଣା କାହିଁ ?

ବନ୍ୟାରେ ସାହାଯ୍ୟ ମିଳେ । ଗାଁ ଯାକ ଲୋକ ଯାଇ ମାଗଣା ରିଲିଫ ଚାଉଳ ଆଣନ୍ତି । କୃତ କୃତ୍ୟ ହୋଇଯାନ୍ତି । ସେ ସାଙ୍ଗର ସେଇ ସହର ପଠେଇ ଦିଏ । ଆପଣାକୁ ଦାତାପଣର ଗୌରବ ଦେବା ପାଇଁ ।

ଗାଁର ଘରେ ଦ୍ୱାର ବନ୍ଦ କରି ଦେବା ପାଇଁ ସହର ସାହାଯ୍ୟ ଦିଏ— ସହରର ସରକାର ସାହାଯ୍ୟ ଦିଅନ୍ତି । ଏ ଗାଁର ଯେମିତି କିଛି ନାହିଁ । ଗାଁଟା ବି ଏତେ ନିର୍ଲଜ୍ଜ—ନାକ ମାଟେ ନାହିଁ ତାକୁ ପର ହାତ ଟେକିବା ଅଇଁଠାରେ ବୋଧହୁଏ—କୃତ କୃତ୍ୟ ହୋଇଯାଏ । ନିଏ ଆପଣା ଦୁର୍ବଳତାକୁ ଆପଣା ଧନ ପର ହାତରେ ଟେକି ଦିଏ ତାର ଆଉ ଅନ୍ୟ ଉପାୟ କଣ—ଏଇ ଅଇଁଠା ଗୁଟିବାଠାକୁ ?

ଶରତ ଆସେ ଶେଫାଳୀ ଫୁଲ୍ଲା ସକାଳ ଆଣି । ଏତେ ପାଣି ଏତେ ବରଷା ଭିତରେ ବି ବିଲରେ ଶୀତଶୀଳ ଲହଡ଼ି ଖେଳାଇ ଦେଉ କଞ୍ଚା ଧାନର ସବୁଜ କେନାରେ । କୁଆଁର ପୁନେଇର ଜହ୍ନ କୁଆଁସଙ୍କ ଗୃହ ବନ୍ଦାଣ ଗାଇ ଗୁଳିଯାଏ—ମୃଦ୍ଧିରେ ସେଇ ଗାଁଟର ଚୋପା ଧରି ।

କୁଆଁର ପୁନେଇ ଜହ୍ନ ଗୋ ! ଫୁଲ ବଉଳବେଣୀ—
କୁଆଁ ଝିଅମାନେ ଯେ ପୁଣି ଖେଳୁଚନ୍ତି
କୁଣ୍ଢିଅ ଶବଦ ଶୁଣ ଗୋ ! ଫୁଲ ବଉଳବେଣୀ ।

ଶାରଦୀୟା ଦୁର୍ଗା ପୂଜାରେ ଢୋଲ ଟମକ ବାଜି ଉଠେ । ସହରରେ ବି ବାଜେ—ଗାଁରେ ବି ବାଜେ । ଗାଁରେ ନବପତ୍ରୀରେ ସାଜି ହୋଇ କଳସ ବସନ୍ତି—ପୂର୍ଣ୍ଣ ଘଟ । ସହରରେ ଶକ୍ତି ମିଳ ସାଜରେ ପ୍ରକାଣ୍ଡ ପ୍ରକାଣ୍ଡ ମୂର୍ତ୍ତି । ସହରର ଐଶ୍ୱର୍ଯ୍ୟମୟୀ ଗାଁରେ ଅତି ଶାନ୍ତ ରୂପେଣ ସଂସ୍ଥିତା ହୁଅନ୍ତି । କେଉଁ ବର୍ଷ କେଉଁଥିରେ ଆସି ଦେବୀ କେଉଥିରେ ଯାଆନ୍ତି—ପାଞ୍ଜି କହିଦିଏ । କେଉଁ ବର୍ଷ ଦୋଳାରେ ତ କେଉଁ ବର୍ଷ ଗଜରେ । କେଉଁ ବର୍ଷ ବର୍ଷା ହୁଏ ତ କେଉଁ ବର୍ଷ ମଡ଼କ । ଯେଉଁ ବର୍ଷ ଠାକୁରାଣୀ ଜଳରେ ଆସି ଜଳରେ ଯାଆନ୍ତି ସେ ବର୍ଷର ଉଲଟା ବି ଅଗ ବର୍ଷର ମନ୍ଦ କଷ୍ଟରେ କଟିପି ଯାଇଥାଏ । ସୁଖ ବୋଲି ଗୋଟାଏ ଜିନିଷ ଏ ଗାଁରୁ କଏ ଯିମିତି ଛଡ଼େଇ ନେଇ ଯାଇଛି ।

ଶୀତ ଆସେ । କାର୍ତ୍ତିକ ମାସ । ଘରେ ଘରେ ହବିଷ । ସଞ୍ଜ ହେଲେ ଆକାଶରେ ଜଳେ ଆକାଶ ଦୀପ । ସକାଳୁ ପ୍ରଭୁ ଠାକୁରଙ୍କର ମଙ୍ଗଳ ଆଳତୀ—ନାମ ସଂକୀର୍ତ୍ତନ—ପ୍ରଭାତୀ । ତୁଳସୀ ମୂଳରେ ସବୁ ମନର ନମୁନା—ମୁରୁଜ । ଭୁଟ କଟେଇବାର ଅସି ଗାଇ ଦେଉଥାଏ—'ରାମ କହେ ମନ ରାମ୍ ସରେ—ରଘୁନାଥ ବିନା ଦୁଃଖ କେବେ ହରେ ।' ପଞ୍ଚୁକର ପୁଣ୍ୟ ଯାକ ସବୁ ଯେମିତି ଏ ଗାଁରେ । ସହରର ଶାନ୍ତି ନାହିଁ—ଦମ ନାହିଁ—ଏ ଜୀବନ-ପରେ ଅଉ ଜୀବନ ଅଛି କି ନାହିଁ । ସେ ପୁର ପାଇଁ ମଣିଷର କିଛି ସଞ୍ଚୟ କରିବା ଦରକାର ପଡ଼େ କି ନାହିଁ ! ମର୍ତ୍ତ୍ୟ ଏଇ ଗାଁଟା

ଖାଲ୍ ଏ ଦୁନିଆରେ ସର୍ବସ୍ୱ ହରେଇ ଗୃହ୍‌ବସିଥାଏ ସେ ଦୁନିଆରେ ସୁଖ ପାଇବା ଆଶାରେ—ଅନ୍ତକାଳେ ବୈକୁଣ୍ଠରେ ବସିବାର ଆଶାରେ—କାର୍ତ୍ତିକ ପୁରାଣ ଶୁଣି।

ଗୃହ୍ ଗୃହ୍ ପୁଣି ମାର୍ଗଶିର ମାସ ଆସି ପଡ଼େ—ସବୁମାସ-ମାନଙ୍କରେ ମାର୍ଗଶିର ସାର—ମାସ ମଧ୍ୟରେ ମାର୍ଗଶିର। ଧାନ ଅମଳ ହୁଏ। ଲକ୍ଷ୍ମୀ ହସି ଉଠନ୍ତି। ଘରେ ଘରେ ଗୁରୁବାର ସେହ ଓଷା। ଧାନ ମାଣିକା ବସେ। ଲିପା ଘର ଦୁଆରରେ ଲକ୍ଷ୍ମୀପାଦ ଚୁଟି ପଡେ। କାନ୍ଥରେ କାଡ଼ରେ ଝୋଟି-ଚିତା। ଘରେ ଲକ୍ଷ୍ମୀ। ମାଣ ଉପରେ ଲେଖା ମୁହୁଣ୍ଡାଟିଏ। ମାଣ ଭିତରେ ଶୁକୁଧାନ। ମାଣ ଉପରେ ଛନୋଟି ଗୁଆ। ତା ଉପରେ ଶୁକ୍ଳଧାନର ମେଣ୍ଡା। ମା ଲକ୍ଷ୍ମୀ ଡାକେ କହନ୍ତି—'ଏକାଘର କରିବ ସହସ୍ର ଘର ଭଙ୍ଗି—ସହସ୍ର ଘର କରିବ ଏକଘର ଭାଙ୍ଗି'। ଅଜ ଯାଏଁ ଯେମିତି ସେ ଲକ୍ଷ୍ମୀ କେବଳ ସହସ୍ର ଘର ଭଙ୍ଗଇ ଆସିଚନ୍ତି ଏକଘର କରିବା ପାଇଁ। ଶାସ୍ତ୍ରରେ ଥିବା ଆଉ କଥାଟା ହେବ କେବେ ? କେବେ ଏଇ ଶୋଷକ ଗୋଷ୍ଠିର ଘର ଗୋଟି ଗୋଟି କ ଭାଙ୍ଗି ସହସ୍ର ଶୋଷିତଙ୍କ ଘର ଉଆସ ହେବ କିଏ ଜାଣେ। କିନ୍ତୁ ପୂଜା ସେ ପାଉଚନ୍ତି—ଧନୀ ଗରିବ, ବ୍ରାହ୍ମଣ ଚଣ୍ଡାଳ ସମସ୍ତଙ୍କଠାରୁ।

ଲକ୍ଷ୍ମୀ ପୂଜା ନୁହେଁ—ନାରୀ ଜାତିର ପୂଜା—ମାତୃ ଜାତିର ପୂଜା—ଗୃହଲକ୍ଷ୍ମୀର ପୂଜା। ବଳରାମ ସେଥିନ କହିଥିଲେ—'ଭାବଯା ଅଟଇ ସିନା ପାଦର ପାଣ୍ଡୋଇ।' ତାକୁ ପିଙ୍ଗିଦେଇ ହେବ ? ନୂଆ ପୁଣି ଜଣି ଆଣି ହେବ। ଚଣ୍ଡୀଲୁଣୀ ଲକ୍ଷ୍ମୀଙ୍କୁ ଘରୁ କାଢି ଦିଅଗଲା। ଲକ୍ଷ୍ମୀ ସେଇଦି କହିଥିଲେ—"ଜଗନ୍ନାଥ ମହାପ୍ରଭୁ ଯେବେ ନ ଖୋଜିବେ—ନାରୀଙ୍କୁ ପୁରୁଷମାନେ ଆଉ ନ ଲୋଡ଼ିବେ।

ମୋତେ ଦେଖି ହୁଅ ଯେବେ ନ ଭଜିବେ ନର । କଳିଯୁଗେ ନାରୀଙ୍କୁ ଯେ ନ ଖୋଜିବେ ନର ।"

ଲକ୍ଷ୍ମୀଙ୍କ ଜେଦ ହେଲା । ବଳରାମଙ୍କ ଜେଦ ଭାଙ୍ଗିଲା । ଶେଷକୁ ସେ ନିଜ ମୁଣ୍ଡରେ ଭାର ବୋହି ଲକ୍ଷ୍ମୀଙ୍କ ସବୁ ସ୍ୱାଧୀନତା ଦେଇ କହି ଦେଲେ—"ଆମ୍ଭେ ଦୋଷ କଲୁ ବୋଲି କହ ତାଙ୍କ ପାଇଁ । ଯହିଁ ଇଚ୍ଛା ତହିଁ ଯାଅ ଆମ୍ଭ ମନା ନାହିଁ ।"

ଏଇ ମା, ଏଇ ମାତୃଜାତି, ସେ କେବେ ସ୍ୱାର୍ଥ ନେଇ ନିଜପାଇଁ ଖୋଜି ନ ଥିଲା । ସେ ସ୍ୱାଧୀନତା ଖୋଜୁଥିଲା, ସେହି ଦଳିତ ଅତ୍ୟାଚରିତ ଜାତିକୁ ଟେକି ଧରିବା ପାଇଁ । ସେ ଚାହୁଁଥିଲେ ମା ଆଗରେ ସମସ୍ତେ ସମାନ—ଉଚ୍ଚ ନୀଚ କେହି ନାହିଁ । ସେଥିପାଇଁ ସେ ଶେଷରେ ଜଗନ୍ନାଥଙ୍କଠୁ ସତ୍ୟ କରାଇ ନେଲେ—"ଚଣ୍ଡାଳକୁ ବ୍ରାହ୍ମଣ ଯାକ ନୀଆ ଖୋଇ ହେବେ—ହାଣ୍ଡି ଛୁଇଁ ବ୍ରାହ୍ମଣ ଯେ ଛୁଆଁଇ ନାଇବେ ।"

ଆଜି ସେଇ ଲକ୍ଷ୍ମୀଙ୍କର ପୂଜା ଚାଲିଛି । ସେ ଖାଲି ଏଇ ଧାନ ମାଣରେ । କିନ୍ତୁ ଏଇ ଗାଁର ଘରେ ଘରେ ଯେଉଁ ଲକ୍ଷ୍ମୀର ପ୍ରତିମୂର୍ତ୍ତି ତାର ପୂଜା କାହିଁ ? ରତମାର ପୂଜା କାହିଁ ? ଦେବକୀର ପୂଜା କାହିଁ ?

ଆଜି ସେଇ ଲକ୍ଷ୍ମୀଙ୍କର ପୂଜା ଚାଲିଛି । କିନ୍ତୁ କାହିଁ, ବ୍ରାହ୍ମଣ ଚଣ୍ଡାଳ ଏକ ହୋଇଛନ୍ତି କେଉଁଠି ! ଲକ୍ଷ୍ମୀ ବଡ ଦେଉଳକୁ ଯାଇ ଶ୍ରୀୟା ଚଣ୍ଡାଳୁଣୀକି ଅଲୋଲାଗି ହାତ ଦେଇଛନ୍ତି କେଉଁଠି ? ତଥାପି ଏ ଲକ୍ଷ୍ମୀ ପୂଜା ।

ସହରରେ କିନ୍ତୁ ଏଇ ମାଣ ପୂଜା ବି ନାହିଁ । ଭାଙ୍ଗରେ ନା ହେଉ ଭାବରେ ବି ହୁଏ ନାହିଁ । ସେଠି ଲକ୍ଷ୍ମୀ ମଣିଷର—ପୁରୁଷର ଭୋଗ୍ୟ—ଦାସୀ । ସହରର ଏଇ ଢେପଦୋ ଭିତରେ ମଧ୍ୟ କି ଜଘନ୍ୟ ପରାଧୀନତା ! ନାରୀ ପୁରୁଷର ଦାସୀ ନୁହେଁ—ପୁରୁଷଙ୍କ ସଂସାର ଦାସୀ । ଆଜ ସେଇ ଦାସତ୍ୱକୁ ନାରୀ ତାର ନିଜ ଅଙ୍ଗର ଭୂଷଣ କରି—ଆଭରଣ କରି ଗୌରବ ଏନେ କରୁଛି । ଲକ୍ଷ୍ମୀ ଏଠେ ଗୃହିଣୀ ହେବାକୁ ଯାଉନ୍ତି ନାହିଁ—ଯିଏ ଡାକେ ଅଛି, ଯେ ଉଚିତ୍‌କୁ ନାହିଁ, ତାଙ୍କୁ 'ସ୍ୱପ୍ନ' ଦେବାକୁ ଚାହାନ୍ତି ନାହିଁ—ଲକ୍ଷ୍ମୀ ଏଠି ନିର୍ଦ୍ଦିଷ୍ଟ ଶେଷରେ ବୁଦ୍ଧି ଜଗତର ଠିଆହେଇ ଶୋଷଣକୁ ଅସ୍ୱୀକାର କରି ମହାକାଳୀର ନୃତ୍ୟ କରନ୍ତି । ଏଠେ ନିଜେ ନୀଚ ହୀନ ହୋଇ ଲକ୍ଷ୍ମୀ ଆଣେଇ ନିବେଷ ଭୂଷାରେ ସଜାଇ ଜଡ଼ ବୋଲି ପ୍ରମାଣ କରିବାକୁ ଚାହାନ୍ତି—ଦେବୀ ହେବାକୁ ଚାହାନ୍ତି ।

ସବୁ ଅଭାବ—ସବୁ ଅଭିଯୋଗ—ସବୁ ଦୁଃଖ ସବୁ ଦୈନ୍ୟ ସତ୍ତ୍ୱେ ସେଇ ଗାଁ—ସେ ଲକ୍ଷ୍ମୀଠାକୁରାଣୀର ମାଣବସା ଗାଁ ଅମର ହେଉ ଭଲ—ଶହେଗୁଣେ ଭଲ ।

ସେଇ ଗାଁ ଉପରେ ପୁଷମାସର ଖରା ପୁସ୍ ପୁସ୍ କରି ଉଡ଼ିଯାଏ—ଧନୁ ମୁଆଁର ଲିଆ ପରି । ସେଇ ଗାଁର ମାଘମାସରେ ବାଘ ଶୀତ ଅସି ଅଭିବରେ ପୋଡ଼ି ମରେ । ସେଇ ଗାଁ ଫଗୁଣ ଫଗୁ ଖେଳରେ ଅସ୍ଥିର ହୋଇ କ୍ଷଣକ ପାଇଁ ଭିତରର ସବୁ ଦୁଃଖକୁ ନାଲି ନାଲି ଅବିରରେ ଉଡ଼େଇ ଦିଏ । ଚୈତ୍ରର ଚଇତାଳି ପବନରେ ଚଇତ ଘୋଡ଼ାର ଛୁଟ ପଣତ ଉଡ଼—ଚଇତ୍ରସ୍ୱା ବହେସ୍ୱାଣୀଙ୍କ କଳା ଗୁଡ଼ୁକାଡ ଧଳା ଗୁଡ଼ୁକାଡ ଗୀତରେ ତାଳ ଦେଇ ଦେଇ ନାଚେ ।

ଏଇ ଗାଁ—ଏଇ ଗାଁ—ଏଇ ଗାଁ କେଡ଼େ ସୁନ୍ଦର—କେଡ଼େ ମିଠା। ସତେ ଏଇ ଗାଁର ପ୍ରତି ଧୂଳିବାଲିରେ ଯେମିତି କେତେ ଗୀତ ଲେଖା ହୋଇଛି। ତାକୁ ପଢ଼ିବ କିଏ ? ତାହାର ଧୈର୍ଯ୍ୟ ଅଛି ?

---